

ବରଗଡ଼ଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ହସ୍ତରେ ଶିଳ୍ପ ପ୍ରଦର୍ଶନୀ ଉଦ୍‌ଘାଟନ କରି ପ୍ରଦର୍ଶନୀ ବୁଲି ଦେଖୁଛନ୍ତି । ମନ୍ତ୍ରୀ ସଇଦ୍ ମୁସ୍ତାଫିଜ୍ ଅହମ୍ମଦ୍ ଓ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ ଉପସ୍ଥିତ ଅଛନ୍ତି ।



ଭଞ୍ଜ କଳା ମଣ୍ଡପଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ତାଲିମପ୍ରାପ୍ତ ମହିଳା ସ୍ୱାସ୍ଥ୍ୟ ପରିଚାରିକାମାନଙ୍କ ରଜତଜୟନ୍ତୀ ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି ।

# ଉତ୍କଳ ପ୍ରସଙ୍ଗ

୪୯ ଭାଗ ୬ଷ୍ଠ ସଂଖ୍ୟା ପୌଷ ୧୯୧୪ ଶକାବ୍ଦ ଜାନୁୟାରୀ ୧୯୯୩

## ସମ୍ପାଦକ ମଣ୍ଡଳୀ



ପ୍ରକାଶନ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

ମୁଦ୍ରଣ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦
(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦·୦୦
ପ୍ରତି ଖଣ୍ଡ : ଟ ୨·୦୦

# ସୂଚୀ


| | | |
|---|---|---|
| ମହାଭାରତୀୟତା : ସ୍ୱପ୍ନ ଓ ବାସ୍ତବତା | ୧ | ଡଃ ପ୍ରସନ୍ନ କୁମାର ପାଢ଼ଶାଣୀ |
| ଗାନ୍ଧୀର ଦେଶ ଭାରତ | ୪ | ମୁସ୍ତାଫିଜ୍ ଅହମଦ୍ |
| ବିଶ୍ୱ ଆଇନାରେ ଗାନ୍ଧିଜୀ | ୬ | ରାମ ପ୍ରସାଦ ପୁରୋହିତ |
| ରେଶମ ଶ୍ରେଷ୍ଠର ଭୂମିକା | ୮ | ଭାସ୍କର ଶୃଙ୍ଗାରି |
| ମୟୂରଭଞ୍ଜ ଛଉ | ୧୦ | ଜାନକୀ ବଲ୍ଲଭ ଦାଶ |
| ଦ୍ୱିତୀୟ ଜାଲିଆନାୱାଲାବାଗର କାହାଣୀ | ୧୨ | ପ୍ରଫେସର ଜଗନ୍ନାଥ ପଟ୍ଟନାୟକ |
| ଆସ ପ୍ରତିଜ୍ଞାର ଦିନ | ୧୪ | ଶ୍ରୀ ଭଗବାନ ପାତ୍ରୀ |
| ଅନ୍ୱେଷଣ ଓ ଅଭିପ୍ସା | ୧୫ | ଡଃ ନରେନ୍ଦ୍ର ପ୍ରସାଦ ଦାସ |
| ମହିଳା ବିକାଶ ପାଇଁ ଅନନ୍ୟ ଯୋଜନା | ୧୭ | ଶ୍ରୀ ରବୀନ୍ଦ୍ର କୁମାର ଜେନା |
| ଭାରତ ଛାଡ଼ ଆନ୍ଦୋଳନ ଓ ପାହାଡ଼ର ପ୍ରତିଧ୍ୱନି | ୧୯ | ଶ୍ରୀ ବିଶ୍ୱନାଥ ପଟ୍ଟନାୟକ |
| ଇଣ୍ଡୋନେସିଆରେ ଓଡ଼ିଆ ସଂସ୍କୃତି | ୨୨ | ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି |
| କନିକା ଆନ୍ଦୋଳନର ଅଗ୍ରସାରଥୀ କୃଷକ ନେତା ଚନ୍ଦ୍ରଧର | ୨୪ | ଇଞ୍ଜିନିୟର ଅରୁଣ କୁମାର ପଣ୍ଡା |
| ପିଲାମାନଙ୍କ ବ୍ରୋଙ୍କାଇଟିସ୍ ରୋଗରେ ହୋମିଓ ଚିକିତ୍ସା | ୨୬ | ଡାକ୍ତର ଚତୁର୍ଭୁଜ ନାୟକ |
| ବୈଦିକ ଯୁଗରେ ନାରୀ ଶିକ୍ଷା ଓ ସ୍ୱାଧୀନତା | ୨୮ | ଶ୍ରୀମତୀ ମିନତି ଷଡ଼ଙ୍ଗୀ |
| ଚିଲିକା | ୩୪ | ଶ୍ରୀ କମଳାକାନ୍ତ ପଣ୍ଡା |
| ଚେତନାର ତ୍ରିବେଣୀ | ୩୫ | ଶୁଭଶ୍ରୀ ତ୍ରିପାଠୀ |
| ଭାଗାନୁଗା ପ୍ରେମଭକ୍ତି ଉପାସକ ଅଭିମନ୍ୟୁ | ୩୭ | ଶ୍ରୀ ଚିତ୍ତରଞ୍ଜନ ଦାଶ |
| ଜାତି ଇତିହାସ ଜାତିର ନିଝର | ୪୦ | ଡକ୍ଟର ଦୁର୍ଗାଚରଣ ମହାନ୍ତି |
| ପରିବ୍ୟାପ୍ତି | ୪୨ | ଡଃ ଉପେନ୍ଦ୍ର ପ୍ରସାଦ ନାୟକ |
| ସେ କେବେ ମରି ନାହିଁ | ୪୪ | ଶ୍ରୀ ବ୍ରଜସୁନ୍ଦର ମହାପାତ୍ର |
| କୋରାପୁଟ ଜିଲ୍ଲାରେ ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ | ୪୫ | ଡଃ ଦଣ୍ଡପାଣି ବେହେରା |
| ଶାସ୍ତ୍ରୀରୁ ଲାଲ ବାହାଦୁର | ୪୭ | |
| ସାର୍ଥକ ସ୍ୱପ୍ନ | ୫୧ | ମମତା ପାତ୍ର |
| ସମ୍ବାଦ ପରିକ୍ରମା | ୫୩ | .. |
| ପାଠକଙ୍କ କଲମରୁ | ୫୭ | .. |
| ସଂସ୍କାରବାଦୀ କବି ଫକୀର ମୋହନ | ୫୯ | .. |
| ସ୍ୱତନ୍ତ୍ର ପ୍ରଦେଶ ଗଠନରେ ଶଶିଭୂଷଣ | ୬୨ | ଅଧ୍ୟାପକ ପ୍ରତାପ ଚନ୍ଦ୍ର ସେନାପତି |
| ଓଡ଼ିଆ ଆନ୍ଦୋଳନର ସାରଥୀ ଶଶିଭୂଷଣ ରଥ | ୬୪ | ଶିବ ପ୍ରସାଦ ତ୍ରିପାଠୀ |
| ଭୁବନୀୟ ପ୍ରତିଭା ଶଶିଭୂଷଣ | ୬୬ | ଡଃ ସୂର୍ଯ୍ୟନାରାୟଣ ଦାସ |
| ଗୀ ଗୀତ | ୬୮ | ପଣ୍ଡିତ ଚନ୍ଦ୍ରଶେଖର ମହାପାତ୍ର |
| | | ରାଜୁ ବଡ଼ାଇ |

# ଜାତୀୟ ସଙ୍ଗୀତ

"ଜନ–ଗଣ–ମନ–ଅଧିନାୟକ ଜୟ ହେ
ଭାରତ–ଭାଗ୍ୟ–ବିଧାତା
ପଞ୍ଜାବ–ସିନ୍ଧୁ–ଗୁଜୁରାଟ–ମରାଠା
ଦ୍ରାବିଡ଼–ଉତ୍କଳ–ବଙ୍ଗ
ବିନ୍ଧ୍ୟ–ହିମାଚଳ–ଯମୁନା–ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶୀଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ–ମଙ୍ଗଳଦାୟକ ଜୟ ହେ,
ଭାରତ–ଭାଗ୍ୟ–ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।"

## ଭାରତର ସଂଶୋଧିତ ପ୍ରସ୍ତାବନା

ଭାରତୀୟ ସମ୍ବିଧାନର ପ୍ରସ୍ତାବନା (PREAMBLE) ବା ଉପକ୍ରମଣିକା ୪୨ତମ ସମ୍ବିଧାନ ସଂଶୋଧନ ବିଲ୍ ଅନୁଯାୟୀ ୧୯୭୬ ଡିସେମ୍ବର ୧୮ ତାରିଖରୁ ସଂଶୋଧିତ ହୋଇ କାର୍ଯ୍ୟକାରୀ ହେଉଛି ।

ତାହା ହେଲା:-

"ଆମେ ଭାରତର ଜନସାଧାରଣ ଭାରତକୁ ଗୋଟିଏ ସାର୍ବଭୌମ, ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ରୂପେ ଗଠନ କରିବା ନିମିତ୍ତ ଏବଂ ଏ ଦେଶର ସମସ୍ତ ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ, ଚିନ୍ତା ଅଭିବ୍ୟକ୍ତି, ବିଶ୍ୱାସ, ଧର୍ମ ଓ ଉପାସନାର ସ୍ୱାଧୀନତା, ସାମାଜିକ ପ୍ରତିଷ୍ଠା ଓ ସୁଯୋଗ ଦିଗରେ ସମତା ହାସଲ କରିବା ତଥା ବ୍ୟକ୍ତି ବିଶେଷର ମର୍ଯ୍ୟାଦା ଓ ଜାତିର ଏକତା ଏବଂ ଅଖଣ୍ଡତା ପାଇଁ ନିଶ୍ଚିତ ବ୍ୟବସ୍ଥା କରି ସେମାନଙ୍କ ମଧ୍ୟରେ ଭ୍ରାତୃ ଭାବର ବିକାଶ ସାଧନ ନିମନ୍ତେ ଦୃଢ଼ ସଂକଳ୍ପ ହୋଇ ଆମ୍ଭମାନଙ୍କର ଏହି ସମ୍ବିଧାନ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ମାସର ଷଡ଼ବିଂଶ ଦିବସରେ ଏତଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକୃତ, ଅଧିନିୟମିତ ଓ ଆତ୍ମାର୍ପିତ କରିଛୁ ।"



# ସାଧାରଣତନ୍ତ୍ର ଦିବସ ଉପଲକ୍ଷେ
# ଓଡ଼ିଶାର ରାଜ୍ୟପାଳ
# ଶ୍ରୀଯୁକ୍ତ ଯଜ୍ଞଦତ୍ତ ଶର୍ମାଙ୍କ
# ବାର୍ତ୍ତା

୪୪ତମ ସାଧାରଣତନ୍ତ୍ର ଦିବସର ଆନନ୍ଦମୁଖର ଅବସରରେ ମୁଁ ଓଡ଼ିଶାବାସୀଙ୍କୁ ମୋର ସାଦର ଅଭିନନ୍ଦନ ଜ୍ଞାପନ କରୁଛି ।

ଆନନ୍ଦିତ ହେବା ତଥା ଜାତି ଉଦ୍ଦେଶ୍ୟରେ ନିଜକୁ ପୁନଃ ଉତ୍ସର୍ଗୀକୃତ କରିବାର ଏହା ଏକ ପୁଣ୍ୟ ଅବସର । ବିଭିନ୍ନ ଘାତ ପ୍ରତିଘାତ ମଧ୍ୟରେ ଏକ ସାର୍ବଭୌମ, ସମାଜବାଦୀ, ଧର୍ମ ନିରପେକ୍ଷ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ଆମର ଶକ୍ତି ବୃଦ୍ଧି ତଥା ବିଭିନ୍ନ କ୍ଷେତ୍ରରେ ଆମର ପ୍ରଗତି ଏବଂ ସାଫଲ୍ୟ ଯୋଗୁଁ ଆମେ ଆଜି ଗର୍ବିତ । ଗଣତାନ୍ତ୍ରିକ ପଦ୍ଧତି ଏଇ ମହାନ୍ ରାଷ୍ଟ୍ରରେ ନିଜର ଭିତ୍ତି ଆଜି ସୁଦୃଢ଼ କରିପାରିଛି; କିନ୍ତୁ ଭବିଷ୍ୟତ ବଂଶଧରମାନଙ୍କର ନିରାପତ୍ତା ଓ ସୁରକ୍ଷା ପାଇଁ ନିଃସ୍ୱାର୍ଥପର ସେବାରେ ନିଜକୁ ଉତ୍ସର୍ଗୀକୃତ କରିବା ଏବଂ ଭାରତର ସମ୍ବିଧାନ ପ୍ରତି ପୂର୍ଣ୍ଣ ଆନୁଗତ୍ୟ ସ୍ୱୀକାର କରିବା ନିମନ୍ତେ ଆଜି ଆମକୁ ପୁନଃ ସଂକଳ୍ପବଦ୍ଧ ହେବାକୁ ପଡ଼ିବ ।

ବର୍ଷ ବର୍ଷ ଧରି ଓଡ଼ିଶାର ଶ୍ରଦ୍ଧା ଓ ବନ୍ଧୁତ୍ୱପୂର୍ଣ୍ଣ ସାମାଜିକ ସମ୍ପର୍କ ମୋତେ ବିଶେଷ ଭାବେ ଅଭିଭୂତ କରିଛି । ସବୁ ପରିସ୍ଥିତିରେ ମୋ ରାଜ୍ୟବାସୀ ପରିପକ୍ୱତା ଓ ସଂଯମ ପ୍ରକାଶ କରିଛନ୍ତି । ଏହି ମହନୀୟ ଗୁଣ ପାଇଁ ଆପଣମାନେ ଗର୍ବର ଅଧିକାରୀ । ଆମେ ଆମର ପରମ୍ପରା ଅର୍ଥାତ୍ ଧର୍ମାଶୋକଙ୍କର ପରମ୍ପରା ପ୍ରତି ସର୍ବଦା ନିଷ୍ଠାବାନ୍ ରହି ଆସିଛେ । ଶାନ୍ତି ଏବଂ କରୁଣା, ସେବା ଏବଂ ତ୍ୟାଗ ଆମ ଜୀବନର ଗତି ପଥକୁ ଆଲୋକିତ କରି ଆମର ପଥ ପ୍ରଦର୍ଶକ ହୋଇ ରହି ଆସିଛି । ଏଇ ଚିରନ୍ତନ ମୂଲ୍ୟବୋଧ ପ୍ରତି ସବୁଠାରୁ କଷ୍ଟକର ମୁହୂର୍ତ୍ତରେ ମଧ୍ୟ ଆମର ନିଷ୍ଠା ଅତୁଟ ରହିଛି ।

ଆମ ରାଜ୍ୟ ପ୍ରଚୁର ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ହୋଇଥିଲେ ମଧ୍ୟ ଆମେ ଅର୍ଥନୈତିକ କ୍ଷେତ୍ରରେ ଅନଗ୍ରସର ହୋଇ ରହିଥିବା ବାସ୍ତବରେ ଭାଗ୍ୟର ଏକ ବିଡ଼ମ୍ବନା । ବିଗତ ୩ ବର୍ଷ ମଧ୍ୟରେ ରାଜ୍ୟ ସରକାର ବିଭିନ୍ନ କ୍ଷେତ୍ରରେ ରାଜ୍ୟର ଅର୍ଥନୈତିକ ମାନଦଣ୍ଡର ସମନ୍ୱିତ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା ପାଇଁ ନୀତିଗତ ନିଷ୍ପତ୍ତି ଏବଂ ଫଳପ୍ରଦ ପଦକ୍ଷେପ ଗ୍ରହଣ କରିଛନ୍ତି । ମୁଁ ଦୃଢ଼ ନିଶ୍ଚିତ ଯେ, ଏହି ସବୁ ପଦକ୍ଷେପର ସୁଫଳ ଶୀଘ୍ର ଉପଲବ୍ଧ ହେବ ।

ଆମ ଯୋଜନାରେ କୃଷି ଉତ୍ପାଦନ ବୃଦ୍ଧି ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯିବା ବାସ୍ତବରେ ଆନନ୍ଦର ବିଷୟ । ଜଳସେଚନ ସୁବିଧାର ସବିଶେଷ ସମ୍ପ୍ରସାରଣ ମାଧ୍ୟମରେ ହିଁ ଏହି ଲକ୍ଷ୍ୟ ହାସଲ ସମ୍ଭବପର ହେବ । ତେଣୁ, ସରକାର ଭୂପୃଷ୍ଠ ଜଳ ଉତ୍ସର ବିକାଶ, ଅତିରିକ୍ତ ସେଚ କ୍ଷମତା ସୃଷ୍ଟି ତଥା ବର୍ତ୍ତମାନର ଜଳସେଚନ ସୁବିଧାର ସର୍ବାଧିକ ଉପଯୋଗ କରିବା ନିମନ୍ତେ ଉଦ୍ୟମ ଅବ୍ୟାହତ ରଖିଛନ୍ତି ।

ଦ୍ରୁତ ଶିଳ୍ପ ବିକାଶ ଓ ଅଭିବୃଦ୍ଧି ନିମନ୍ତେ ବର୍ତ୍ତମାନ ଏକ ନୂତନ ଅନୁକୂଳ ବାତାବରଣ ସୃଷ୍ଟି କରାଯାଇଛି । ଦୁଇଟି ନୂତନ ଇସ୍ପାତ୍ କାରଖାନା, ଗୋଟିଏ ପେଟ୍ରୋକେମିକାଲସ୍ ଶିଳ୍ପ ଏବଂ ପଶ୍ଚିମ ଓ ଦକ୍ଷିଣାଞ୍ଚଳରେ ୩ଟି ଆଲୁମିନିୟମ୍ ଶିଳ୍ପ ପ୍ରତିଷ୍ଠା ପାଇଁ ପଦକ୍ଷେପ ଗ୍ରହଣ କରାଯାଇଛି । ପର୍ଯ୍ୟାପ୍ତ ଏବଂ ସ୍ଥାୟୀ ବିଦ୍ୟୁତ୍ ଶକ୍ତି ଯୋଗାଣ ଉପରେ ହିଁ ଆଧୁନିକ ବୈଷୟିକ କୌଶଳର ବିକାଶ ନିର୍ଭରଶୀଳ । ତେଣୁ ବିଦ୍ୟୁତ୍ ଉଦ୍ୟୋଗ କ୍ଷେତ୍ରରେ ବୈଦେଶିକ ଅର୍ଥ ବିନିଯୋଗ ପ୍ରୋତ୍ସାହିତ କରାଯିବା ଏକ ଯଥାର୍ଥ ପଦକ୍ଷେପ ।

ସରକାର ବିବିଧ କ୍ଷେତ୍ରରେ ଉଲ୍ଲେଖନୀୟ ସାଫଲ୍ୟ ହାସଲ କରିଛନ୍ତି। ସେଥି ମଧ୍ୟରୁ ଏଠାରେ କେତେକ ସଫଳତା ଉଲ୍ଲେଖ କରିବା ସମୀଚୀନ ହେବ। ରାଜ୍ୟର ୬ଟି ଜିଲ୍ଲାରେ ଆରମ୍ଭ କରାଯାଇଥିବା ସାକ୍ଷରତା କାର୍ଯ୍ୟକ୍ରମ ଅଭୂତପୂର୍ବ ସାଫଲ୍ୟ ହାସଲ କରିଛି। ୨୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ସେବା ନିମନ୍ତେ ଏକ ବିଶେଷ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରାଯାଉଛି। ସାମାଜିକ ନିରାପତ୍ତା ଯୋଜନାକୁ ଅଧିକ ଶକ୍ତିମନ୍ତ କରିବା ଉଦ୍ଦେଶ୍ୟରେ ବୃଦ୍ଧ, ବିକଳାଙ୍ଗ ଏବଂ ବିଧବାମାନଙ୍କ ନିମନ୍ତେ ପେନ୍‌ସନ ଯୋଜନାକୁ ସମ୍ପ୍ରସାରିତ କରି ଏହି ସ୍ତରର ସମସ୍ତ ବ୍ୟକ୍ତିଙ୍କୁ ସହାୟତା ଯୋଗାଇ ଦିଆଯାଉଛି। ଏହି ସବୁ ପେନ୍‌ସନର ଆର୍ଥିକ ପରିମାଣ ମଧ୍ୟ ବୃଦ୍ଧି କରାଯାଇଛି। ତଫସିଲଭୁକ୍ତ ଜାତି/ଉପଜାତି ଲୋକଙ୍କର ସାମାଜିକ ତଥା ଅର୍ଥନୈତିକ ଅବସ୍ଥାର ଉନ୍ନୟନ ଏବଂ ସେମାନଙ୍କୁ ସାମାଜିକ ବୈଷମ୍ୟ ଓ ଅର୍ଥନୈତିକ ଶୋଷଣରୁ ରକ୍ଷା କରିବା ପାଇଁ ନିଷ୍ଠାପର ଉଦ୍ୟମ ଅବ୍ୟାହତ ରହିଛି। ଏମାନଙ୍କ ନିମନ୍ତେ କାର୍ଯ୍ୟକାରୀ ହେଉଥିବା କଲ୍ୟାଣ ଯୋଜନାର ସୁପରିଚାଳନା ନିମନ୍ତେ ଆଦିବାସୀ ଓ ହରିଜନ କଲ୍ୟାଣ ନିମନ୍ତେ ଦୁଇଟି ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରାଯାଇଛି। ଦରିଦ୍ର ଲୋକମାନଙ୍କ ନିମନ୍ତେ "କଳିଙ୍ଗ କୁଟୀର ଯୋଜନା" ନାମରେ ଏକ ନୂତନ ଗୃହ ନିର୍ମାଣ ଯୋଜନା ବର୍ତ୍ତମାନ ରାଜ୍ୟରେ କାର୍ଯ୍ୟକାରୀ କରାଯାଉଛି।

ମହିଳାମାନଙ୍କୁ ନ୍ୟାୟସଙ୍ଗତ ମର୍ଯ୍ୟାଦା ଦେବା ତଥା ସେମାନଙ୍କୁ ପ୍ରଶାସନିକ ପ୍ରକ୍ରିୟାରେ ଅଂଶ ଗ୍ରହଣ ସୁଯୋଗ ପ୍ରଦାନ ଉଦ୍ଦେଶ୍ୟରେ ପଞ୍ଚାୟତ ସମିତି, ଗ୍ରାମ ପଞ୍ଚାୟତ ଏବଂ ପୌର ସଂସ୍ଥାମାନଙ୍କରେ ସେମାନଙ୍କ ପାଇଁ ଆସନ ସଂରକ୍ଷିତ କରାଯାଇଛି। ସରକାରୀ ଚାକିରିରେ ଶତକଡ଼ା ୩୦ ଭାଗ ସ୍ଥାନ ମହିଳାମାନଙ୍କ ପାଇଁ ସଂରକ୍ଷିତ ରଖାଯାଉଛି। ନାରୀମାନଙ୍କ ପାଇଁ ଏକ ରାଜ୍ୟ କମିଶନ୍ ମଧ୍ୟ ପ୍ରତିଷ୍ଠିତ ହୋଇଛି।

ଓଡ଼ିଶାକୁ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ପାଇଁ ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ନୂତନ କାର୍ଯ୍ୟକ୍ରମରେ ଲୋକମାନଙ୍କ ଆଶା ଓ ଆକାଙ୍କ୍ଷା ପ୍ରତିଫଳିତ ହୋଇଛି। ବର୍ତ୍ତମାନ ଆମର ଲକ୍ଷ୍ୟ ଏବଂ ଦିଗ୍‌ଦର୍ଶନ ଅତି ସୁସ୍ପଷ୍ଟ। ପୂର୍ବରୁ ମୁଁ କହି ଆସିଛି ଯେ ଜନସାଧାରଣଙ୍କର ପୂର୍ଣ୍ଣ ସହଯୋଗ ବିନା ସରକାରଙ୍କର କୌଣସି ଉଦ୍ୟମ ସାର୍ଥକ ହେବା ସମ୍ଭବପର ନୁହେଁ। ଏଥିଲାଗି ଶୃଙ୍ଖଳା, କଠୋର ପରିଶ୍ରମ, ତ୍ୟାଗ ଓ ବିଧାନ ସମ୍ମତ ଜୀବନ ନିର୍ବାହ ଆବଶ୍ୟକ। ଏହାଦ୍ୱାରା ସମାଜର -ସବୁ ଶ୍ରେଣୀର ଲୋକେ ଲାଭବାନ୍ ହେବେ ଏବଂ ସମୃଦ୍ଧି ପଥରେ ଆଗେଇ ପାରିବେ।

ସାଧାରଣତନ୍ତ୍ର ଦିବସର ପବିତ୍ର ଅବସରରେ ରାଜ୍ୟବାସୀଙ୍କ ଉନ୍ନତତର ତଥା ଉଜ୍ଜ୍ୱଳତର ଭବିଷ୍ୟତ ପାଇଁ ଜାତିର ସ୍ୱାଧୀନତା ଓ ସଂହତିକୁ ସୁରକ୍ଷିତ ଓ ସୁଦୃଢ଼ କରିବା ପାଇଁ ଏବଂ ଯେ କୌଣସି ପରିସ୍ଥିତିରେ ସାମ୍ପ୍ରଦାୟିକ ସଦ୍‌ଭାବର ସୁରକ୍ଷା ପାଇଁ ଆମେ ପୁଣି ଥରେ ସଂକଳ୍ପବଦ୍ଧ ହେବା ଆବଶ୍ୟକ।

ମୁଁ ଆପଣ ସମସ୍ତଙ୍କ ନିମନ୍ତେ ଶାନ୍ତି, ସମୃଦ୍ଧି, ସୁଖ ଓ ସନ୍ତୁଷ୍ଟି କାମନା କରୁଛି।

ଜୟହିନ୍ଦ୍।

(ଶ୍ରୀ ଯଜ୍ଞଦତ୍ତ ଶର୍ମା)

# ସାଧାରଣତନ୍ତ୍ର ଦିବସ ଉପଲକ୍ଷେ
## ଓଡ଼ିଶାର ମୁଖ୍ୟମନ୍ତ୍ରୀ
# ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ
# ବାର୍ତ୍ତା



ପବିତ୍ର ସାଧାରଣତନ୍ତ୍ର ଦିବସ ପାଳନର ଶୁଭ ଅବସରରେ ରାଜ୍ୟବାସୀ ଭାଇଭଉଣୀଙ୍କୁ ମୋର ଆନ୍ତରିକ ଶ୍ରଦ୍ଧା, ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସାଧାରଣତନ୍ତ୍ର ଦିବସ ଆମ ସମସ୍ତଙ୍କ ପାଇଁ ଗର୍ବର ଦିନ; ଗୌରବର ଦିନ । ଆଜିକୁ ୪୩ ବର୍ଷ ପୂର୍ବେ ଏହି ଦିନରେ ଆମ ଦେଶର ସମ୍ବିଧାନ ଗୃହୀତ ହୋଇଥିଲା । ସମ୍ବିଧାନର ନୀତି ନିୟମରେ ଆମର ଅଗଣିତ ଦେଶବାସୀଙ୍କ ଆଶା ଆକାଂକ୍ଷା ପ୍ରତିଫଳିତ ହୋଇଛି । ଏହାକୁ ସମ୍ମାନ କରିବା ଓ ରକ୍ଷା କରିବା ପ୍ରତ୍ୟେକ ଭାରତୀୟର ଜାତୀୟ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟକୁ ନିଷ୍ଠାପର ଭାବରେ ପାଳନ କରିବା ପାଇଁ ଦେଶବାସୀ ପୁଣି ଥରେ ସଙ୍କଳ୍ପ ନେବା ଉଚିତ ।

ନିକଟ ଅତୀତରେ ଦେଶର ଅନେକ ସ୍ଥାନରେ ସାମ୍ପ୍ରଦାୟିକ ସଦ୍‌ଭାବ ପ୍ରତି ବିପଦ ସୃଷ୍ଟି ହୋଇଛି । ଏହାଦ୍ୱାରା ଆମ ଦେଶର ଏକତା ଓ ସଂହତି କ୍ଷୁଣ୍ଣ ହେବା ସଙ୍ଗେ ସଙ୍ଗେ ଦେଶ ଦୁର୍ବଳ ହୋଇପଡ଼ୁଛି । ଆନ୍ତର୍ଜାତିକ ସ୍ତରରେ ଭାରତର ସମ୍ମାନ ଓ ଆଭିଜାତ୍ୟ ଉପରେ ଆଞ୍ଚ ଆସୁଛି । ଆମେ ଏଭଳି ପରିସ୍ଥିତି ଉପୁଜିବା ପାଇଁ ଆଦୌ ପ୍ରଶ୍ରୟ ଦେବା ନାହିଁ । ସବୁ ଧର୍ମ ମତ ପ୍ରତି ସମ୍ମାନ, ଆଦର ଓ ସହନଶୀଳତା ଆମ ସଭ୍ୟତା ଓ ସଂସ୍କୃତିର ମୂଳ ଭିତ୍ତି । ଏ କଥା ଆମକୁ ସବୁବେଳେ ମନେ ରଖିବାକୁ ହେବ । ଦେଶର ଅନେକ ସ୍ଥାନରେ ସାମ୍ପ୍ରଦାୟିକତା ଉଗ୍ର ରୂପ ନେଇଥିଲେ ହେଁ ଜଗନ୍ନାଥଙ୍କ ଦେଶ ଓଡ଼ିଶାରେ ଏହାର ପ୍ରଭାବ ଆଦୌ ପଡ଼ି ନାହିଁ ଓ ପଡ଼ିବ ନାହିଁ । ଏଥିପାଇଁ ମୁଁ ମୋ ରାଜ୍ୟର ଜନସାଧାରଣଙ୍କୁ ଧନ୍ୟବାଦ ଦେବାକୁ ଚାହେଁ ।

ଏହି ଅବସରରେ ରାଜ୍ୟର ଉନ୍ନୟନ ମୂଳକ କାର୍ଯ୍ୟକ୍ରମ ସମ୍ପର୍କରେ କେଇ ପଦ କଥା କହିବି । ଆମ ରାଜ୍ୟର ଅବସ୍ଥା ବଦଳାଇବା ପାଇଁ ଯେଉଁ କେତୋଟି ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠା ଉପରେ ମୁଁ ଜୋର୍ ଦେଇଥିଲି, ସେ ସବୁ କାର୍ଯ୍ୟକ୍ରମ ଠିକ୍ ଠିକ୍ ଆଗେଇ ଚାଲିଛି । ୩୦ ଲକ୍ଷ ଟନ୍ ଉତ୍ପାଦନକ୍ଷମ ଦ୍ୱିତୀୟ ଇସ୍ପାତ କାରଖାନା ପାଇଁ ପୁଞ୍ଜି ଯୋଗାଡ଼ ନେଇ ବିଭିନ୍ନ ଅର୍ଥ ଲଗାଣକାରୀ ସଂସ୍ଥାମାନଙ୍କ ସହ କଥାବାର୍ତ୍ତା ହୋଇଛି । ମୁଁ ନିଜେ ଏ ଭିତରେ ଜର୍ମାନୀ ଯାଇ ଇସ୍ପାତ କାରଖାନା ବସାଇବା ନେଇ ଅତ୍ୟାଧୁନିକ କାରିଗରୀ କୌଶଳ ସମ୍ପର୍କରେ ଆଲୋଚନା କରିଛି । ଭାରତ ସରକାର ଓ ପ୍ରଧାନମନ୍ତ୍ରୀ ଏହି କାରଖାନା ପ୍ରତିଷ୍ଠା ଦିଗରେ ସବୁ ପ୍ରକାର ସାହାଯ୍ୟ ଓ ସହଯୋଗ କରିବେ ବୋଲି ଦୃଢ଼ ପ୍ରତିଶ୍ରୁତି ଦେଇଛନ୍ତି । ଏଇ ମାସରେ ୫ ଲକ୍ଷ ଟନ୍ ଇସ୍ପାତ ଉତ୍ପାଦନ କଳାଭଳି ଆଉ ଏକ ଇସ୍ପାତ କାରଖାନାର କାମ ମେସ୍କୋ କମ୍ପାନୀ ଦ୍ୱାରା ଚୀନ୍‌ର ଏକ ପ୍ରମୁଖ ଇସ୍ପାତ କମ୍ପାନୀର ସହଯୋଗରେ ଆରମ୍ଭ କରାଯାଇଛି । ଏଥିରୁ ଦୁଇ ବର୍ଷ ଭିତରେ ଉତ୍ପାଦନ ଆରମ୍ଭ ହେବ । ସେହି ସ୍ଥାନରେ ୫ ଲକ୍ଷ ଓ ୧୦ ଲକ୍ଷ ଟନ୍ ବିଶିଷ୍ଟ ଆଉ ଦୁଇଟି ଇସ୍ପାତ୍ କାରଖାନାର କାର୍ଯ୍ୟ ଆସନ୍ତା ୬ ମାସ ମଧ୍ୟରେ ଆରମ୍ଭ କରିବାକୁ ପ୍ରସ୍ତୁତି ଆରମ୍ଭ ହେଲାଣି । ଏହି କାରଖାନାମାନ ପ୍ରତିଷ୍ଠିତ ହେଲେ ଦୈତାରୀ ଅଞ୍ଚଳ ସାରା ଦେଶର ଅତ୍ୟାଧୁନିକ ଇସ୍ପାତ୍ ନଗରୀରେ ପରିଣତ ହେବ ।

ଲଣ୍ଡନ୍‌ର ହିନ୍ଦୁଜା ଗୋଷ୍ଠୀର ଭାରତୀୟ କମ୍ପାନୀ ଓ ଆବୁଧାବି କମ୍ପାନୀର ସହଯୋଗରେ ୩,୩୦୦ କୋଟି ଟଙ୍କା ଖର୍ଚ୍ଚରେ ୬୦ ଲକ୍ଷ ଟନ୍ କ୍ଷମତା ବିଶିଷ୍ଟ ତୈଳ ବିଶୋଧନାଗାର ପ୍ରତିଷ୍ଠା ପାଇଁ କାର୍ଯ୍ୟକ୍ରମ ଚୂଡ଼ାନ୍ତ ହୋଇଯାଇଛି । ଦୈତାରୀ ଓ ବାଂଶପାଣି ରେଳପଥ ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ପାଇଁ ଚଳିତ ବର୍ଷ ୧୦ କୋଟି ଟଙ୍କା ଦେବା ପାଇଁ ମୋ ପ୍ରସ୍ତାବକୁ ଯୋଜନା କମିଶନ ମଞ୍ଜୁର କରିଛନ୍ତି ।

ଏ ସବୁ ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠାନ ସାଙ୍ଗକୁ ଆମର କୃଷି, ପଶୁ ପାଳନ, ମାଛ ଚାଷ, କ୍ଷୁଦ୍ର ଶିଳ୍ପ, କୁଟୀର ଶିଳ୍ପ, ହସ୍ତତନ୍ତ ଓ ବୟନ ଶିଳ୍ପ ଇତ୍ୟାଦିର ଅଗ୍ରଗତି ଉପରେ ପୂର୍ଣ୍ଣ ଭାବରେ ଗୁରୁତ୍ୱ ଦିଆଯାଉଛି । ଆମ ରାଜ୍ୟର ଅଗଣିତ ଚାଷୀ, ମଜୁରିଆ, ବୁଣାକାର ଓ କାରିଗର ଭାଇମାନେ ଏହା ଉପରେ ନିର୍ଭର କରୁଥିବାରୁ ଏ ସବୁର ଉନ୍ନତି ଦ୍ୱାରା ସେମାନଙ୍କର ଉନ୍ନତି ସମ୍ଭବ ହେବ । ଆମର ଅଗଣିତ ଆଦିବାସୀ ଓ ହରିଜନ ଭାଇମାନଙ୍କର ସାମାଜିକ ଉନ୍ନତି ପାଇଁ ସ୍ୱତନ୍ତ୍ର ଧ୍ୟାନ ଦିଆଯାଉଛି । ଏଥିପାଇଁ ଆଦିବାସୀ ମଙ୍ଗଳ ଓ ହରିଜନ ମଙ୍ଗଳ ନାମରେ ଦୁଇଟି ଅଲଗା ବିଭାଗ ସୃଷ୍ଟି କରାଯାଇଛି । ମହିଳାମାନଙ୍କୁ ଯୁଗ ଯୁଗର ଶୃଙ୍ଖଳରୁ ମୁକ୍ତ କରି ସେମାନଙ୍କୁ ସାମାଜିକ ପ୍ରତିଷ୍ଠା ଦେବା ପାଇଁ ମୋ ସରକାର ଯୁଗାନ୍ତକାରୀ ନିଷ୍ପତ୍ତିମାନ ଗ୍ରହଣ କରିଛି । ପଞ୍ଚାୟତିରାଜ ଓ ନଗରପାଳିକାରେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ଭାବେ ସ୍ଥାନ ସଂରକ୍ଷଣ କରାଯାଇଛି । ଚାକିରି କ୍ଷେତ୍ରରେ ସ୍ୱତନ୍ତ୍ର ସୁଯୋଗ୍ ଦେବା ପାଇଁ ସ୍ଥାନ ସଂରକ୍ଷଣ ସାଙ୍ଗକୁ ସେମାନଙ୍କ ପାଇଁ ବୟସ ସୀମା କୋହଳ କରାଯାଇଛି । ନାରୀ ନିର୍ଯ୍ୟାତନା ରୋକିବା ପାଇଁ ମହିଳା କମିଶନ ଗଠନ କରାଯାଇଛି ଏବଂ ତାଙ୍କର ସମୂହ ବିକାଶ ପାଇଁ ମହିଳା ବିକାଶ ନିଗମ ପ୍ରତିଷ୍ଠା କରାଯାଇଛି ।

ଏ ସବୁ କାର୍ଯ୍ୟକ୍ରମକୁ ସଫଳ କରି ଓଡ଼ିଶାକୁ ସାରା ଭାରତବର୍ଷରେ ତା'ର ନ୍ୟାଯ୍ୟ ସ୍ଥାନ ଦେବା ପାଇଁ ମୋ ରାଜ୍ୟର ସବୁ ଭାଇଭଉଣୀଙ୍କୁ ଏକାଠି ମିଳିମିଶି କାମ କରିବାକୁ ପଡ଼ିବ । ଆମ ଭିତରେ ଥିବା ସବୁ ଛୋଟ ଛୋଟ ମତଭେଦକୁ ଫିଙ୍ଗି ଦେଇ ରାଜ୍ୟର ସମୂହ ଉନ୍ନତି ପାଇଁ ଏକ ହୋଇ କାମ କରିବାକୁ ଆଜିର ଏ ଶୁଭ ଅବସରରେ ମୁଁ ରାଜ୍ୟବାସୀ ଭାଇ ଭଉଣୀ, ମୋର ପୁଅ ଝିଅ ଓ ନାତି ନାତୁଣୀ ସମସ୍ତଙ୍କୁ ପୁଣି ଥରେ ଆହ୍ୱାନ କରୁଛି ।

**ଜୟହିନ୍ଦ୍ ।**

ସାଧାରଣତନ୍ତ୍ର ଦିବସ ଉପଲକ୍ଷେ



## ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ

# ଶ୍ରୀଯୁକ୍ତ ବୈରାଗୀ ଜେନାଙ୍କ

# ବାର୍ତ୍ତା

ପବିତ୍ର ସାଧାରଣତନ୍ତ୍ର ଦିବସ ଉପଲକ୍ଷେ ଓଡ଼ିଶାର ଭାଇ ଭଉଣୀମାନଙ୍କୁ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ଓ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

ବିଦେଶୀ ଶାସନର ବନ୍ଧନରୁ ଆମ ଦେଶ ମୁକ୍ତ ହେବା ପରେ ଦେଶରେ ଏକ ସାର୍ବଭୌମ, ଗଣତନ୍ତ୍ର ଶାସନ ପ୍ରତିଷ୍ଠା ପାଇଁ ୧୯୫୦ ମସିହାର ଏହି ପବିତ୍ର ଦିବସରେ ଆମର ସମ୍ବିଧାନ ପ୍ରବର୍ତ୍ତନ କରାଯାଇଥିଲା । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମାନ ଅଧିକାର ଏବଂ ସବୁ ଧର୍ମକୁ ସମ୍ମାନ ଦେଇ ପ୍ରଣୟନ କରାଯାଇଥିବା ଆମ ସମ୍ବିଧାନର ମୂଳ ଲକ୍ଷ୍ୟ ଥିଲା "ଜାତୀୟ ସଂହତି" ।

ସେହି ଜାତୀୟ ସଂହତି ଆଜି ବିପନ୍ନ । ଆମର ମୂଳ ଲକ୍ଷ୍ୟକୁ ଭୁଲିଯାଇ କରି ଧର୍ମ ନାମରେ ଭାଇ ଭାଇ ଭିତରେ ବିଭେଦ ସୃଷ୍ଟି କରିବା ପାଇଁ କିଛି ଲୋକ ଲାଗି ପଡ଼ିଛନ୍ତି । ଅହିଂସାର ବୀଜ ବପନ ହୋଇଥିବା ପୁଣ୍ୟଭୂମି ଭାରତବର୍ଷରେ ଆଜି ସେମାନେ ହିଂସାର ଆଶ୍ରୟ ନେଇ ଅଶାନ୍ତ ବାତାବରଣ ସୃଷ୍ଟି କରିବାରେ ଲାଗିଛନ୍ତି । ଏହି ଅଶାନ୍ତ ବାତାବରଣକୁ ଦୂରୀଭୂତ କଲେ ହିଁ ଆମେ ଆମ ଦେଶକୁ ପ୍ରଗତି ପଥରେ ଆଗେଇ ନେଇପାରିବା । ଦେଶର ପ୍ରଗତି ପଥରେ ପ୍ରତିବନ୍ଧକ ହେଉଥିବା ଏହି ବିଭେଦକାରୀ ଗୋଷ୍ଠୀକୁ ଦୃଢ଼ ହସ୍ତରେ ପ୍ରଥମେ ଦମନ କରିବାକୁ ହେବ । ଭାରତର ନାଗରିକ ହିସାବରେ ଏହା ପ୍ରତ୍ୟେକ ଭାରତୀୟଙ୍କ କର୍ତ୍ତବ୍ୟ ।

ଦେଶର ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ସେହି ବିଭେଦକାରୀ ସାମ୍ପ୍ରଦାୟିକ ଶକ୍ତିକୁ ଦୃଢ଼ ହସ୍ତରେ ଦମନ କରି ଜାତୀୟ ସଂହତିର ଦୃଢ଼ୀକରଣ ପାଇଁ ଜାତୀୟ ପତାକା ତଳେ ସମସ୍ତେ ଏକାଠି ବଜ୍ର ଶପଥ ନେବା – ଏହାହିଁ ଆଜିର ଏହି ପବିତ୍ର ସାଧାରଣତନ୍ତ୍ର ଦିବସର ଆହ୍ୱାନ ।

# ସମ୍ପାଦକୀୟ

## ଆମ ଭାରତ ମହାନ୍

ପୁଣ୍ୟଭୂମି ଭାରତରେ ଗଣତନ୍ତ୍ର ଶାସନର ପ୍ରତିଷ୍ଠା ପାଇଁ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଆମ ଦେଶର ସମ୍ବିଧାନ ପ୍ରବର୍ତ୍ତନ କରାଯାଇଥିଲା । ସେହି ସ୍ମୃତିକୁ ନେଇ ପ୍ରତିବର୍ଷ ଜାନୁଆରୀ ୨୬ ତାରିଖଟିକୁ ସାଧାରଣତନ୍ତ୍ର ଦିବସ ରୂପେ ପାଳନ କରିଥାଉ । ଏହି ଜାତୀୟ ଉତ୍ସବ ପାଳନ ଅବସରରେ ଆମ ଦେଶର ସ୍ୱାଧୀନତା ସଂଗ୍ରାମରେ ଆତ୍ମବଳୀ ଦେଇଥିବା ପୂର୍ବ ପୁରୁଷମାନଙ୍କ ସ୍ମୃତିଚାରଣ କରି ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସଙ୍ଗେ ସଙ୍ଗେ ଆତ୍ମ ସମୀକ୍ଷା କରିବା ସୁଯୋଗ ମଧ୍ୟ ନେଇଥାଉ ।

ଆଜି ସେହି ଆତ୍ମ ସମୀକ୍ଷାର ଦିନ । ବାରମ୍ବାର ଲୁଣ୍ଠିତ ଓ ଅତ୍ୟାଚରିତ ହେବା ପରେ ସ୍ୱାଧୀନତା ହାସଲ କରିଥିବା ଭାରତବର୍ଷର ଏକମାତ୍ର ସମ୍ବଳ ରହିଛି, ତା'ର ପ୍ରାକୃତିକ ସମ୍ପଦ, ଜନଶକ୍ତି ଓ ପ୍ରାକୃତିକ ସମ୍ପଦର ସଦ୍ ବିନିଯୋଗ କରି ଆମର କେତେ ପରିମାଣରେ ପ୍ରଗତି ସମ୍ଭବ ହୋଇପାରିଛି ତାହା ଆଜି ସମୀକ୍ଷା କରିବା କଥା ।

ପ୍ରଗତିର ସମୀକ୍ଷା ପାଇଁ ଆମ ରାଜ୍ୟ ଓଡ଼ିଶା ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ ସ୍ୱାଧୀନତା ପ୍ରାପ୍ତି ସମୟରେ ଆମର ଯାହା ପ୍ରାକୃତିକ ସମ୍ପଦ ଥିଲା ଆଜି ତାହା ବହୁ ପରିମାଣରେ ହ୍ରାସ ପାଇଛି । ସୁରକ୍ଷା ଅଭାବରୁ ଜଙ୍ଗଲ ସମ୍ପଦ ଆଜି ପ୍ରାୟତଃ ଶେଷ ହେବାକୁ ବସିଲାଣି । ସେଥିପାଇଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଦୃଢ଼ ସଙ୍କଳ୍ପ ନେଇ ଗୃହ ନିର୍ମାଣ ଇତ୍ୟାଦି କାର୍ଯ୍ୟରେ ଜଙ୍ଗଲ ସମ୍ପଦ ଯେପରି ନଷ୍ଟ ନ ହେବ, ସେଥି ପାଇଁ କଠୋର ନିର୍ଦ୍ଦେଶ ଦେଇଛନ୍ତି । ନୂତନ ଜଙ୍ଗଲ ସୃଷ୍ଟି ପାଇଁ ପର୍ଯ୍ୟାପ୍ତ ପରିମାଣ ଅର୍ଥ ବିନିଯୋଗର ବ୍ୟବସ୍ଥା ସହ ବହୁ ପଦକ୍ଷେପ ନେଇଛନ୍ତି । ଏହି ସମ୍ପଦ ଉପରେ ନିର୍ଭର କରି ଜୀବନଯାପନ କରୁଥିବା ଜଙ୍ଗଲ ଶ୍ରମିକମାନଙ୍କ ଜୀବନ ଧାରଣ ସମସ୍ୟା ପ୍ରତି ମଧ୍ୟ ଧ୍ୟାନ ଦେବାକୁ ହେବ । ସେଥିପାଇଁ କେନ୍ଦୁ ପତ୍ର, ଶାଳ ମଞ୍ଜି ଇତ୍ୟାଦିର ସରକାରୀ କ୍ରୟ ମୂଲ୍ୟକୁ ବୃଦ୍ଧି କରି ଜଙ୍ଗଲ ଶ୍ରମିକମାନଙ୍କୁ ଉପଯୁକ୍ତ ମୂଲ୍ୟ ଦେବାର ବ୍ୟବସ୍ଥା କରିଛନ୍ତି ।

ଖଣିଜ ସମ୍ପଦର ଉପଯୁକ୍ତ ବିନିଯୋଗ ପାଇଁ ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠା ହେବା ଆବଶ୍ୟକ । ଏହି ଦୃଷ୍ଟିରୁ ବିଜୁ ବାବୁ ଓଡ଼ିଶାକୁ ଏକ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ କରିବା ପାଇଁ ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ନେବା ପରଠାରୁ ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଏଥିପାଇଁ କେନ୍ଦ୍ରରୁ ଆବଶ୍ୟକୀୟ ଆର୍ଥିକ ସାହାଯ୍ୟ ନ ମିଳିଲେ ମଧ୍ୟ ବିଦେଶୀ ପ୍ରତିଷ୍ଠାନମାନଙ୍କ ଉପରେ ବିଜୁ ବାବୁ ବ୍ୟକ୍ତିଗତ ପ୍ରଭାବ ପକାଇ କାରଖାନାମାନ ପ୍ରତିଷ୍ଠା କରିବା କ୍ଷେତ୍ରରେ ସଫଳ ହେବାରେ ଲାଗିଛନ୍ତି । ଅତ୍ୟନ୍ତ ସୌଭାଗ୍ୟର କଥା, ବିଜୁ ବାବୁଙ୍କ ନିଷ୍ଠାପର ଉଦ୍ୟମ ଫଳରେ ଯାଜପୁର ରୋଡ୍ ଓ ଦୁବୁରି ମଧ୍ୟରେ ଓଡ଼ିଶାର ତୃତୀୟ ଇସ୍ପାତ୍ କାରଖାନାର ନିର୍ମାଣ କାର୍ଯ୍ୟ ଏହି ମାସ ୧୫ ତାରିଖରେ

ଆରମ୍ଭ ହୋଇଯାଇଛି । ବିଜୁ ବାବୁଙ୍କ ଏ ସବୁ ପଦକ୍ଷେପ ଓଡ଼ିଶାକୁ ପ୍ରଗତିର ଦ୍ୱାର ଦେଶରେ ପହଞ୍ଚାଇ ଦେଇପାରିଛି ଏହା ନିଃସନ୍ଦେହ । ତଥାପି ଆମକୁ ଆହୁରି ଅନେକ ପଥ ଅତିକ୍ରମ କରିବାକୁ ହେବ । କୋଟି କୋଟି ଲୋକଙ୍କୁ ଗୋଟିଏ ମମତା ରଜ୍ଜୁରେ ବାନ୍ଧି ରଖି ପ୍ରଗତିର ରଥଚକ୍ରକୁ ଆଗେଇ ନେବାକୁ ବିଜୁ ବାବୁ ଉଦ୍ୟମରତ ଥିଲାବେଳେ ସୁରଟ ଏବଂ ଅନ୍ୟାନ୍ୟ ସ୍ଥାନର କଳ କାରଖାନାମାନଙ୍କରେ କାମ କରୁଥିବା ଅନେକ ଓଡ଼ିଆ ଶ୍ରମିକ ଅଯୋଧ୍ୟା ବିବାଦ ଯୋଗୁଁ ଗତ ଡିସେମ୍ବର ମାସରେ ଓଡ଼ିଶା ଫେରି ଆସିଛନ୍ତି । ଏହା ଓଡ଼ିଶା ପାଇଁ ଆଉ ଏକ ବୋଝ । ଦେଶର ପ୍ରଗତିରେ ଏହା ଆଉ ଏକ ପ୍ରତିବନ୍ଧକ । ସୁଖର କଥା, ସେମାନଙ୍କର ପୁନଃ ଥଇଥାନ ଏବଂ ନିରାପତ୍ତା ସମ୍ପର୍କରେ ବିଜୁ ବାବୁ ଗୁଜୁରାଟ ମୁଖ୍ୟମନ୍ତ୍ରୀଙ୍କ ସହ ଆଲୋଚନା କରି ସଫଳ ହୋଇଛନ୍ତି । ସେମାନେ ପୁଣି ସେହି କାରଖାନାମାନଙ୍କରେ ଯୋଗ ଦେବେ ।

ସଂସ୍କୃତିର ଗନ୍ତାଘର ରୂପେ ଖ୍ୟାତି ଲାଭ କରିଥିବା ପୁଣ୍ୟଭୂମି ଭାରତରେ ଆଜି ଅପସଂସ୍କୃତିର ପଦଧ୍ୱନି କାହିଁକି ? ଅହିଂସାର ବାଣୀ ପ୍ରଚାର କରି, ଅହିଂସା ମନ୍ତ୍ର ହିଁ ଅମୋଘ ଅସ୍ତ୍ର ବୋଲି ପ୍ରମାଣିତ କରି ସମଗ୍ର ବିଶ୍ୱକୁ ଅହିଂସାର ମାର୍ଗ ଦର୍ଶନ କରିଥିବା ଭାରତରେ ଆଜି ହିଂସାର ଲୁଚକାଳି ଖେଳ କାହିଁକି ??

ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସଭିଏଁ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ଏବଂ ସେଥିପାଇଁ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତଙ୍କ ପାଇଁ ସମାନ ଅଧିକାର ଏବଂ ସବୁ ଧର୍ମକୁ ସମ୍ମାନ ଦେଇ ଆମର ସମ୍ବିଧାନ ପ୍ରଣୟନ କରାଯାଇଛି । ସମ୍ବିଧାନର ମୂଳ ଲକ୍ଷ୍ୟଠାରୁ ଦୂରେଇ ଯାଇ ଧର୍ମର ଦୁହାଇ ଦେଇ ଧର୍ମ-ଧର୍ମ ଭିତରେ ବିଭେଦ ସୃଷ୍ଟି କଲେ ତାହା ଜାତୀୟ ସଂହତିକୁ ବିପନ୍ନ କରିବ । ପ୍ରଗତି ପରିବର୍ତ୍ତେ ଦେଶକୁ ଧ୍ୱଂସ ମୁଖକୁ ନେଇଯିବ । ଭାରତୀୟ ସଂସ୍କୃତି କହେ — ମଣିଷ ପଣିଆ ହିଁ ପ୍ରକୃତ ଧର୍ମ । ଏହା ସର୍ବ ଧର୍ମ ସମ୍ମତ । ଧର୍ମ ନିରପେକ୍ଷ ରାଷ୍ଟ୍ର ଭାରତବର୍ଷରେ ସବୁ ଧର୍ମକୁ ସମସ୍ତଙ୍କର ସମ୍ମାନ ରହିଛି । ଏଥିରେ କେହି ଦ୍ୱିମତ ହେବାର ନୁହେଁ । ଧର୍ମ ଭିନ୍ନଭିନ୍ନ ହେଲେ ହେଁ ଦେଶ ଗୋଟିଏ । ଆମେ ସମସ୍ତେ ଭାରତବାସୀ । ସବୁ ଧର୍ମ ପାଇଁ ଦେଶ ମହାନ୍ । ଆମ ସମସ୍ତଙ୍କ ପାଇଁ "ଆମ ଭାରତ ମହାନ୍" ।

ଆଜିର ଏହି ପବିତ୍ର ଦିବସରେ ଆମେ ସମସ୍ତେ ଗୋଟିଏ କଣ୍ଠରେ ସେହି ସଙ୍କଳ୍ପ ନେବା—

ଆମେ ମହାନ୍,
ଆମେ ଭାରତ ପାଇଁ ମହାନ୍,
ଆମ ଭାରତ ମହାନ୍ ।



# ମହାଭାରତୀୟତା : ସ୍ୱପ୍ନ ଓ ବାସ୍ତବତା

• ଡଃ ପ୍ରସନ୍ନ କୁମାର ପାଟଶାଣୀ

ଏକ ମହାନ୍ ରାଷ୍ଟ୍ରକୁ ଦିଗ୍‌ଦର୍ଶନ ଦେବା ପାଇଁ ଏକ ମହାନ୍ ନେତୃତ୍ୱ ଆବଶ୍ୟକ । ବିଜ୍ଞତା, ଉଦାରତା, ବିଚକ୍ଷଣତା ଓ ଧୈର୍ଯ୍ୟ ବିନା ଏହା ସମ୍ଭବପର ନୁହେଁ । ସ୍ୱାଧୀନତାର ଦୀର୍ଘ ଚାରି ଦଶନ୍ଧିରୁ ଅଧିକ ବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ଆମେ ଆମର ଭବିଷ୍ୟତ ନେଇ ଅସହାୟ ମନେ କରୁଛେ । ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ବଢ଼ି ବଢ଼ି ଚାଲିଛି । ସମସ୍ୟାମାନ ବହୁଗୁଣିତ ହେଉଛନ୍ତି । ସ୍ୱାଧୀନତାର ବହୁବର୍ଷ ପରେ ଦେଶରେ ଏକ ସଫଳ ଓ ବଳିଷ୍ଠ ନେତୃତ୍ୱର ଅନେକ ସମୟରେ ଅଭାବ ପରିଲକ୍ଷିତ ହୋଇଛି । ଏହାର ଅର୍ଥ ନୁହେଁ ଯେ, ସେପରି ନେତୃତ୍ୱ ଦେବାପାଇଁ ବ୍ୟକ୍ତିତ୍ୱ ଦେଶରେ ନଥିଲେ କିମ୍ବା ନାହାନ୍ତି । ବୋଧହୁଏ ଏପରି ନେତୃତ୍ୱକୁ ଖୋଜି ବାହାର କରିବାରେ ଆମର ରାଜନୀତିକ ବ୍ୟବସ୍ଥା ବେଳେ ବେଳେ ସଫଳ ହୋଇନାହିଁ କିମ୍ବା ଏପରି ହୋଇପାରେ ଯେ, ସେହି ଯୋଗ୍ୟ ବ୍ୟକ୍ତିମାନେ ନେତା ରୂପେ ନିର୍ବାଚିତ ହେଲେ ମଧ୍ୟ ଦୁର୍ବଳ ଓ ପରସ୍ପର ବିବଦମାନ ଦଳୀୟ ବ୍ୟବସ୍ଥା ଦ୍ୱାରା ବିଶେଷ ସଫଳତା ହାସଲ କରି ପାରିନାହାନ୍ତି । ଯାହାହେଲେ ମଧ୍ୟ ଏକ ଉପଯୁକ୍ତ ନେତୃତ୍ୱ ସମୁନ୍ନତିର ଚାବିକାଠି । ମଣିଷ ନିଜ ପାଇଁ ଅପର୍ଯ୍ୟାପ୍ତ ସମସ୍ୟା ସୃଷ୍ଟି କରିଛି । ସେ ସବୁ ସମାଧାନ କରିବାର ବୋଝ ତାକୁ ହିଁ ବହନ କରିବାକୁ ହେବ । ଏକ ସମଦର୍ଶୀ ବୁଦ୍ଧି ଓ ସନ୍ତୁଳିତ ବ୍ୟକ୍ତିତ୍ୱ ହିଁ ଯଥାର୍ଥ ନେତୃତ୍ୱର ପରିଚାୟକ ।

ଯେଉଁ ହତାଶା ଆମ୍ଭେମାନେ ଅନୁଭବ କରୁଛେ ସେଥିରେ ଏକାନ୍ତ ନୂତନତ୍ୱ କିଛି ନାହିଁ । ଶହ ଶହ ବର୍ଷର ବହିଃ ଆକ୍ରମଣ, ବିଦେଶୀ ଶାସନ ଓ ବିପର୍ଯ୍ୟୟ ହେତୁ ଆମକୁ ହତାଶାର ସମ୍ମୁଖୀନ ହେବାକୁ ହୋଇଛି । କିନ୍ତୁ ଆମେ ସେ ସବୁକୁ ଅତିକ୍ରାନ୍ତ କରିଛେ । ବସ୍ତୁତଃ ଶ୍ରେୟଃ ସାଧନ ଅତ୍ୟନ୍ତ ବିଘ୍ନବହୁଳ 'ଶ୍ରେୟାଂସି ବହୁବିଘ୍ନାନି' । ସତ୍ୟ ଅତ୍ୟନ୍ତ କଠୋର । ବିଭିନ୍ନ ଘାତ ପ୍ରତିଘାତ ମଧ୍ୟରେ ମାନବାତ୍ମାର ବିକାଶ ପ୍ରକୃତି ଉପରେ ତାର ବିଜୟ । ଏହି ବିଜୟ ପାଇଁ ଆବଶ୍ୟକ ପ୍ରୟତ୍ନ ଓ ବିଜ୍ଞତା । ସ୍ତୂପିକୃତ ସମସ୍ୟାମାନଙ୍କୁ କବଳିତ କରିବାକୁ ହେବ । ମହେଶ୍ୱରଙ୍କ ପରି ଗରଳ ଭକ୍ଷଣ କରିବାକୁ ହେବ, ଏହା ହିଁ ପ୍ରତ୍ୟେକ ବ୍ୟକ୍ତି ଓ ଜାତି ସମ୍ମୁଖରେ ଆହ୍ୱାନ ।

ମହାଭାରତରେ ରାଜଧର୍ମାନୁଶାସନ ପର୍ବରେ ଶ୍ରୀକୃଷ୍ଣ–ନାରଦ–ସମ୍ବାଦ ବର୍ଣ୍ଣିତ ହୋଇଛି । ଅନ୍ତର୍ଦ୍ୱନ୍ଦ୍ୱ ଓ ହତାଶା ଯେ କେବଳ ଆମ୍ଭମାନଙ୍କ ସମ୍ମୁଖରେ ଦେଖାଦେଇଛି ତାହା ନୁହେଁ । ଭଗବାନ ଶ୍ରୀକୃଷ୍ଣଙ୍କ ଆଗରେ ମଧ୍ୟ ତାହା ଦେଖା ଦେଇଥିଲା ବୋଲି ବ୍ୟାସଦେବ ବର୍ଣ୍ଣନା କରିଛନ୍ତି । ଦିନେ ମହର୍ଷି ନାରଦ ଦ୍ୱାରାବତୀରେ ରାଜତ୍ୱ କରୁଥିବା ଶ୍ରୀକୃଷ୍ଣଙ୍କ ପାଖକୁ ଆସିଥିଲେ । ବାର୍ତ୍ତାଳାପ ପ୍ରସଙ୍ଗରେ କୃଷ୍ଣ ନାରଦଙ୍କୁ ସ୍ୱକୀୟ ଅବସ୍ଥା କହିଥିଲେ–'ବଳଂ ସଙ୍କର୍ଷଣେ ନିତ୍ୟଂ ସୌକୁମାର୍ଯ୍ୟ ପୁନର୍ଗଦେ ।

'ରୂପେଣ ମତ୍ତଃ ପ୍ରଦ୍ୟୁମ୍ନଃ ସୋଽସହାୟୋଽସ୍ମି ନାରଦ' ।

'ହେ ନାରଦ, ବଳରାମଙ୍କଠାରେ ବଳ ରହିଛି, କନିଷ୍ଠ ଭ୍ରାତା ଗଦଙ୍କଠାରେ ସୁକୁମାରତା ରହିଛି, ରୂପ ହେତୁ ପ୍ରଦ୍ୟୁମ୍ନ ମତ୍ତ ହୋଇଛି, ମୁଁ କିନ୍ତୁ ଅତ୍ୟନ୍ତ ଅସହାୟ ଅଟେ । ନିଜର କିଂକର୍ତ୍ତବ୍ୟବିମୂଢ଼ତା ବର୍ଣ୍ଣନା କରି ଶ୍ରୀକୃଷ୍ଣ କହିଲେ ଯେ ସେ ଦୁଇ ବିବାଦଗ୍ରସ୍ତ ପୁତ୍ରଙ୍କ ମାତା ପରି ଅବସ୍ଥାରେ ଅଛନ୍ତି । ଯେପରି ଦୁଇଟି ବିବାଦମାନ ପୁତ୍ରଙ୍କ ମାତା ଜଣଙ୍କର ବିଜୟ ଅନ୍ୟର ଅପରାଜୟ (ପରାଜିତ ନହେବା) ଇଚ୍ଛାକରେ ସେ ସେହିପରି ଇଚ୍ଛାକରୁଛନ୍ତି । ଶ୍ରୀକୃଷ୍ଣ ନାରଦଙ୍କୁ କହିଛନ୍ତି ଯେ, ଯିଏ ବନ୍ଧୁ ନୁହେଁ ସେ ଗୁପ୍ତ ମନ୍ତ୍ରଣା ଶୁଣିବା ପାଇଁ ସମର୍ଥ ନୁହେଁ । ବନ୍ଧୁ ହେଲେ ମଧ୍ୟ ଅଜ୍ଞ ବ୍ୟକ୍ତି ଅନୁପଯୁକ୍ତ ଅଟେ । ବିଜ୍ଞ ବ୍ୟକ୍ତି ଆତ୍ମବାନ୍ (ସଂଯତ) ନହେଲେ ମଧ୍ୟ ମନ୍ତ୍ରଣାର ଯୋଗ୍ୟ ନୁହେଁ । ଯେହେତୁ ନାରଦ ବନ୍ଧୁ, ବିଜ୍ଞ ଓ ସଂଯମୀ ଅଟନ୍ତି ତେଣୁ କୃଷ୍ଣ ତାଙ୍କୁ ସେହି ଦୟନୀୟ ଅବସ୍ଥାରୁ ମୁକ୍ତିର ଉପାୟ ପଚାରିଛନ୍ତି । ଉତ୍ତରରେ ନାରଦ କହିଛନ୍ତି–

"ନାମହାପୁରୁଷଃ କଶ୍ଚିନ୍ନାନାତ୍ମା ନାସହାୟବାନ ।
ମହତୀଂ ଧୁରମାଧତ୍ତେ ତାମୁଦ୍ୟମ୍ୟୋରସା ବହ ।

ସର୍ବ ଏବ ଗୁରୁଂ ଭାରମନଡ୍‌ବାନ୍ ବହତେ ସମେ ।
ଦୁର୍ଗେ ପ୍ରତୀତଃ ସୁଗବଃ ଭାରଂ ବହତି ଦୁର୍ବହମ" ।

ଅର୍ଥାତ୍–ଯେଉଁ ବ୍ୟକ୍ତି ମହାପୁରୁଷ ନୁହେଁ, ଯେ ଆତ୍ମବାନ୍ ନୁହେଁ, ଯେଉଁ ବ୍ୟକ୍ତି ସହାୟଯୁକ୍ତ ନୁହେଁ ସେ ମହାନ୍ ଭାର ବହନ କରିପାରିବ ନାହିଁ । କିନ୍ତୁ ତୁମେ ଏହାକୁ ଉପଯୁକ୍ତ ଭାବରେ ବହନ କର । ସମସ୍ତ ବଳଦ ସମାନ ଭୂମିରେ ଭାର ବହନ କରିପାଇ ପାରନ୍ତି । କିନ୍ତୁ ଉତ୍ତମୋତ୍ତମ ବଳଦ (ସୁଗବ) ନ ହେଲେ ଦୁର୍ଗମ ସ୍ଥାନରେ ଭାର ବହନ କରିବା ସମ୍ଭବ ନୁହେଁ । ସମସ୍ୟା ବହୁଳ ଦେଶର ଗୁରୁଭାରକୁ ବହନ କରିବା ପ୍ରତ୍ୟେକ ନେତୃତ୍ୱ ପ୍ରତି ଏକ ଆହ୍ୱାନ ।

ମହାଭାରତର ଏକ ପ୍ରସିଦ୍ଧ ଶ୍ଳୋକରେ ରାଜାଙ୍କୁ ଏକ ମହାନ୍ ଦେବତା ରୂପେ ଚିତ୍ରିତ କରାଯାଇଛି । କୁହାଯାଇଛି ଯେ, ନୀଚ ହେଲେ ମଧ୍ୟ ରାଜାଙ୍କୁ ଅବମାନନା କରିବା ଉଚିତ ନୁହେଁ, ଯେହେତୁ ସେ ଜଣେ ମହାନ୍ ଦେବତା ଯିଏ କି ମନୁଷ୍ୟ ରୂପରେ ରହିଛନ୍ତି ।–

"ନୀଚୈରପି ନାବମନ୍ତବ୍ୟୋ ମନୁଷ୍ୟ ଇତି ଭୂମିପଃ ।
ମହତୀ ଦେବତା ହ୍ୟେଷା ନର ରୂପେଣ ତିଷ୍ଠତି ॥"

ଏହି ଶ୍ଳୋକର ଅର୍ଥକୁ ସାଧାରଣତଃ ଅନେକ ସମାଲୋଚକ ଠିକ୍ ଭାବରେ ବୁଝି ପାରନ୍ତି ନାହିଁ । ତେଣୁ ସେମାନେ ମନେକରନ୍ତି ଯେ ଏହା ରାଜତନ୍ତ୍ରର ଈଶ୍ୱର–କାରଣତାବାଦ [divine origin theory of kingship] । ବସ୍ତୁତଃ ଏହାର ଅର୍ଥ ତାହା ନୁହେଁ । ଏହି ଶ୍ଳୋକରେ ରାଜାଙ୍କୁ ଏକ ଈଶ୍ୱର ସୃଷ୍ଟ

ଅଭ୍ରାନ୍ତ [infallible] ଅତିମାନବ ଭାବରେ ଚିହ୍ନିତ କରାଯାଇ ନାହିଁ। ଅପରନ୍ତୁ ଏକ ଉପକରଣ ମାଧ୍ୟମରେ ରାଜା ଥବା ଶାସକର ମହନୀୟତା ଓ ଦାୟିତ୍ୱ ସୂଚିତ କରାଯାଇଛି। ଙ୍କ ସମ୍ମାନବୋଧ ବିନା ଶାସନ-ବ୍ୟବସ୍ଥା ସଫଳ ନୁହେଁ। ତନ୍ତ୍ର ଶାସନ ବ୍ୟବସ୍ଥାରେ ଥିବା ବ୍ୟକ୍ତି ସମ୍ମାନୀୟ ଅଟନ୍ତି। ଏହି ଲୋକର ଉପଦେଶ ହେଲା ଶାସକ ବ୍ୟକ୍ତି ନିଜର ମହତ୍ତ୍ୱ ଓ ର୍ଯ୍ୟ ପରାୟଣତା ଦ୍ୱାରା ହିଁ ସ୍ୱକୀୟ ପଦବୀର ଯଥାର୍ଥତା ପ୍ରତିପାଦନ କରନ୍ତି। ସମ୍ମାନ ଜ୍ଞାନ ଓ ଦାୟିତ୍ୱବୋଧ ଉଭୟ ପରସ୍ପର ପରିପୂରକ। ରାଜା ବା ଶାସକ କାହିଁକି ସମ୍ମାନର ଅଧିକାରୀ ତାହା ବୁଝାଇବାକୁ ଯାଇ ମହାଭାରତକାର ଏକ ସୁନ୍ଦର ଶ୍ଳୋକର ଅବତାରଣା କରିଛନ୍ତି- "ଯସ୍ୟାଭାବେନ ଭୂତାନାମ୍ ଅଭବଃ ସ୍ୟାତ ସମନ୍ତତଃ।

ଭାବେ ଚ ଭାବୋ ନିତ୍ୟଂସ୍ୟାତ୍
କସ୍ତଂ ନ ପ୍ରତିପୂଜୟେତ୍ ॥"

ଅର୍ଥାତ୍ "ଯାହାର ଅଭାବ ହେଲେ ଲୋକମାନେ ଅରାଜକତା ହେତୁ ବିନାଶ ହୁଅନ୍ତି, ଯିଏ ରହିଲେ ହିଁ ଲୋକମାନଙ୍କର ଅବସ୍ଥିତି ସମ୍ଭବପର, କିଏ ଏପରି ବ୍ୟକ୍ତିଙ୍କୁ ପୂଜା ନ କରିବ ?" ଏହାର ଅର୍ଥ ହେଲା ଏହି ଯେ ଉପଯୁକ୍ତ ଶାସକ ନ ଥିଲେ ଦେଶରେ ଯାବତୀୟ ବିଶୃଙ୍ଖଳା ପରିଦୃଷ୍ଟ ହୁଏ। ତେଣୁ ପରସ୍ପର ବିବଦମାନ ଜନତା ବିଳୟ ପ୍ରାପ୍ତ ହୁଅନ୍ତି। ତେଣୁ ଯାହା ହେତୁ ଲୋକମାନଙ୍କର ଅବସ୍ଥିତି ସମ୍ଭବପର ସେ ନିଶ୍ଚିତ ଭାବରେ ସମସ୍ତଙ୍କର ସମ୍ମାନୀୟ ଅଟନ୍ତି।

ଏହିପରି ଏକ ଯଥାର୍ଥ ରାଜା ବା ଶାସକ ପଞ୍ଚବିଧ ଦେବତା ରୂପେ କଳ୍ପିତ ହୋଇଛନ୍ତି। ସ୍ୱକୀୟ କର୍ମ ଅନୁସାରେ ସେ ଅଗ୍ନି, ଆଦିତ୍ୟ, ମୃତ୍ୟୁ, କୁବେର ଓ ଯମଙ୍କ ସହ ତୁଳିତ ହୋଇଛନ୍ତି। ଯେତେବେଳେ ସେ ପାପିଷ୍ଠ ଓ ଦେଶର ଅମଙ୍ଗଳକାରୀମାନଙ୍କୁ ଉଗ୍ରତେଜ ଦ୍ୱାରା ଦଗ୍ଧୀଭୂତ କରନ୍ତି, ସେତେବେଳେ ସେ ଅଗ୍ନିତୁଲ୍ୟ ଅଟନ୍ତି। ଯେତେବେଳେ ସ୍ୱକୀୟ ଚର (ଗୁପ୍ତଚରମାନଙ୍କ) ଦ୍ୱାରା ସମଗ୍ର ଦେଶକୁ ଅବଲୋକନ କରି ସମସ୍ତଙ୍କର ମଙ୍ଗଳ ସମ୍ପାଦନ କରନ୍ତି, ସେତେବେଳେ ସେ ଆଦିତ୍ୟ ତୁଲ୍ୟ ଅଟନ୍ତି। ଯେତେବେଳେ ଶୁଚିହୀନ ଓ ଅଶୁଦ୍ଧ ଆଚରଣଯୁକ୍ତ ବ୍ୟକ୍ତିଙ୍କୁ ସେ ବିନାଶ କରନ୍ତି, ସେତେବେଳେ ସେ ମୃତ୍ୟୁ ଅଟନ୍ତି। ଯେତେବେଳେ ସେ ରାଷ୍ଟ୍ରର ଉପକାରୀ ବ୍ୟକ୍ତିମାନଙ୍କୁ ଓ ଜନସାଧାରଣଙ୍କୁ ଅଭିଳଷିତ ବସ୍ତୁ ଓ ଧନାଦି ଦ୍ୱାରା ତୁଷ୍ଟ କରନ୍ତି ତଥା ଅପକାରୀ ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କର ଧନକୁ ନେଇଯାଆନ୍ତି ସେତେବେଳେ ସେ କୁବେର ତୁଲ୍ୟ। ଯେତେବେଳେ ନୀତିହୀନ ଦଣ୍ଡନୀୟ ବ୍ୟକ୍ତିମାନଙ୍କୁ ତୀକ୍ଷ୍ଣ ଦଣ୍ଡ ପ୍ରଦାନ ଦ୍ୱାରା ସଂଯତ ବା ନିୟନ୍ତ୍ରିତ କରନ୍ତି, ସେତେବେଳେ ସେ ଯମ ରୂପେ ପରିଗଣିତ ହୁଅନ୍ତି।

ଏହିପରି ପଞ୍ଚବିଧ ଦେବତାଙ୍କର କର୍ମ ସମ୍ପାଦନ କରିବା ଦ୍ୱାରା ରାଜା ଅଥବା ଶାସକମୁଖ୍ୟ ମହାନ ଦେବତା ଭାବରେ କଳ୍ପିତ ହୋଇଛନ୍ତି। ତାହାର କାର୍ଯ୍ୟ ହେଲା ସନ୍ତାନକୁ ପାଳନ ଓ ଶିକ୍ଷିତ କରିବା, ତାଙ୍କ ସଂରକ୍ଷଣ ଓ ଭରଣ କରିବା। ପ୍ରଜାମାନଙ୍କୁ ଉପଯୁକ୍ତ ଶିକ୍ଷିତ କରିବା, ରକ୍ଷଣ କରିବା ଓ ଭରଣ କରିବା ହେତୁ ଶାସକ ବା ରାଜା ପିତାତୁଲ୍ୟ ଅଟନ୍ତି ବୋଲି ଶାସ୍ତ୍ରମାନଙ୍କରେ କୁହାଯାଇଛି। ମହାକବି କାଳିଦାସ ମହାରାଜା ଦିଲ୍ଲୀପଙ୍କୁ ଏକ ମହାନ୍ ବୃକ୍ଷ ଭାବରେ ବର୍ଣ୍ଣନା କରିଛନ୍ତି। ଯେପରି ବୃକ୍ଷ ସ୍ୱୟଂ ନିଜେ ଗ୍ରୀଷ୍ମ ତାପକୁ ସହ୍ୟ କରି ନିଜ ମୂଳରେ ଆଶ୍ରୟ ନେଇଥିବା ବ୍ୟକ୍ତିର ତାପକୁ ହରଣ କରେ, ସେହିପରି ଉପଯୁକ୍ତ ଶାସକ ସ୍ୱୟଂ କଷ୍ଟକରି ପ୍ରଜାମାନଙ୍କର ସନ୍ତାପକୁ ହରଣ କରନ୍ତି। ଏହା ହିଁ ଭାରତୀୟ ରାଜନୀତିକ ଚେତନାର ମୌଳିକ ନୀତି। ଯେଉଁ ମହାନ୍ ଜନନାୟକମାନେ ଭାରତର ମୁକ୍ତି ସଂଗ୍ରାମ ପାଇଁ ନିଜକୁ ଉତ୍ସର୍ଗ କରିଥିଲେ ସେମାନେ ଏହି ମହାଭାରତୀୟ ଆଦର୍ଶ ଦ୍ୱାରା ହିଁ ଉଦ୍‌ବୁଦ୍ଧ ହୋଇଥିଲେ।

ଆମ ଆଗରେ ଅନନ୍ତ ସମ୍ଭାବନା ରହିଛି। କିନ୍ତୁ ତାହାର ରୂପାୟନ ପାଇଁ ଦକ୍ଷତା ଆବଶ୍ୟକ। କ୍ଷମତା ଦକ୍ଷତାକୁ ପ୍ରତିହତ କଲେ ଆମେ ନିଶ୍ଚିତ ପରାଜିତ ହେବା ଓ ବିପର୍ଯ୍ୟୟର ସମ୍ମୁଖୀନ ହେବା। ଆମର ଦୁର୍ଦ୍ଦଶା ପାଇଁ ଆମେ ବର୍ତ୍ତମାନ ବ୍ରିଟିଶ ଶାସକମାନଙ୍କୁ ଦାୟୀ କରିପାରିବା ନାହିଁ। ଆମକୁ ସେଥିପାଇଁ ଦାୟୀ ହେବାକୁ ହେବ। ସମସ୍ତ ପରାଜୟ ଅଥବା ବିପର୍ଯ୍ୟୟ ପାଇଁ ଅନ୍ୟ ଉପରେ ଦାୟିତ୍ୱ ଆରୋପ କରିବା ଏକ ଆତ୍ମପ୍ରବଞ୍ଚନା। ଆମକୁ ଆମର ଦୋଷ ଦୁର୍ବଳତା ବିଷୟରେ ସଚେତନ ହେବାକୁ ହେବ। ଠିକ୍ ଏହି କଥା କହିଥିଲେ ମହାନ୍ ରାଷ୍ଟ୍ରନୀତିଜ୍ଞ ଓ ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନ୍- "Our opportunities are great but let me warn you that when power outstrips ability, we will fall on evil days. We should develop competence and ability which would help us to utilise the opportunities which are now open to us. From tomorrow morning (15th August 1947) from midnight to day–we cannot throw the blame on the Britishers. We have to assumme the responsibility ourselves for what we do)"

ପ୍ରାଚୀନ ଭାରତର ରାଜନୀତିକ ଆକାଶରେ ଆଚାର୍ଯ୍ୟ ବିଷ୍ଣୁଗୁପ୍ତ (ଚାଣକ୍ୟ) ଏକ ଦେଦୀପ୍ୟମାନ ଜ୍ୟୋତିଷ୍କ ତୁଲ୍ୟ। ଆମେ ଚାଣକ୍ୟଙ୍କର ମତ ସହିତ ସମ୍ପୂର୍ଣ୍ଣ ସହମତ ହୋଇ ନ ପାରୁ, କିନ୍ତୁ ତାଙ୍କର ବ୍ୟକ୍ତିଗତ ଚରିତ୍ର ଆଚରଣର କେତେକ ଦିଗ ପ୍ରତ୍ୟେକ ଶାସକବର୍ଗ ପାଇଁ ପ୍ରଣିଧାନଯୋଗ୍ୟ 'ମୁଦ୍ରାରାକ୍ଷସ' ନାମକ ଗ୍ରନ୍ଥରୁ ତାଙ୍କ ବିଷୟରେ ଆମେ କିଛି ବିବରଣୀ ପାଇଥାଉ। ପାଟଳୀପୁତ୍ରର ପ୍ରାନ୍ତଦେଶରେ ଏକ ଛୋଟ କୁଡ଼ିଆରେ ରହୁଥିବା ଚାଣକ୍ୟଙ୍କ ପାଖକୁ ମହାରାଜ ଚନ୍ଦ୍ରଗୁପ୍ତଙ୍କର ବାର୍ତ୍ତା ନେଇ ଆସିଥିବା ଜନୈକ କର୍ମଚାରୀ ମୁଖରେ ଏହା ବର୍ଣ୍ଣିତ ହୋଇଛି। ଚାଣକ୍ୟଙ୍କର ଭଙ୍ଗା କୁଡ଼ିଆ ଘରକୁ ଦେଖି ସେ ବିସ୍ମୟ ପ୍ରକାଶ କରି କହିଛନ୍ତି- ରାଜରାଜାଧିରାଜ ଚନ୍ଦ୍ରଗୁପ୍ତଙ୍କର ମନ୍ତ୍ରୀଙ୍କର ଏହା ହିଁ ବିଭବ। ଯଥାର୍ଥରେ ଏହି ପ୍ରକାର ଲୋକ ହିଁ ଅତ୍ୟନ୍ତ ପ୍ରତାପଶାଳୀ ମହାରାଜାଙ୍କୁ ଦାସୀପୁତ୍ର (ବୃଷଳ) ବୋଲି ସମ୍ବୋଧନ କରିପାରନ୍ତି। ଏହା କହିବା ବାହୁଲ୍ୟ ଯେ, ଚନ୍ଦ୍ରଗୁପ୍ତଙ୍କୁ ଚାଣକ୍ୟ

ବେଳେବେଳେ ଦାସୀପୁତ୍ର ସମ୍ବୋଧନ କରୁଥିଲେ ବୋଲି ଉଲ୍ଲିଖିତ ହୋଇଛି । ଗୁଣକ୍ୟଙ୍କ ବିଷୟରେ ରାଜକର୍ମଶ୍ୱରୀ ଏକ ଶ୍ଳୋକ ଆବୃତ୍ତି କରିଛନ୍ତି ଯାହାର ଅର୍ଥ ହେଲା ଏହିପରି–'ସତ୍ୟବାଦୀ ଓ କୃତୀ ଲୋକମାନେ ମଧ୍ୟ ବେଳେବେଳେ ପ୍ରଭାବଶାଳୀ (ରାଜା ପ୍ରଭୃତି) ବ୍ୟକ୍ତିଙ୍କୁ **ସେମାନଙ୍କଠାରେ** ନଥିବା ଗୁଣରେ ସ୍ତୁତି କରନ୍ତି, ନିର୍ବସ୍ତ୍ରକୁ ଦସ୍ତାଲ୍ ଭାବରେ ଇତ୍ୟାଦି । ଏହା ହେଉଛି ତୃଷ୍ଣାର **ପରିଣାମ** । ଯାହାର ତୃଷ୍ଣା ନାହିଁ, ଯେଉଁ ବ୍ୟକ୍ତି କାମନା ରହିତ, ତା'ପାଇଁ ଏହିପରି ପ୍ରଭୁମାନେ ତୃଣ ପରି ତିରସ୍କାରର ବିଷୟ ଅଟନ୍ତି । ତୃଷ୍ଣା ହିଁ ଦୁର୍ବଳତା । ଏହାହିଁ ସମସ୍ତ କାର୍ପଣ୍ୟର ମୂଳ । ତୃଷ୍ଣାରହିତ ବ୍ୟକ୍ତି ହିଁ ନିର୍ଭୀକ ଭାବରେ ସତ୍ୟର ଅନୁସରଣ କରିପାରେ । ସମ୍ପ୍ରତି ଦେଶର ନେତୃବର୍ଗ ଏହି ଆଦର୍ଶରେ ଅନୁପ୍ରାଣିତ ହେବା ଏକାନ୍ତ ଆବଶ୍ୟକ ।

---

ମନ୍ତ୍ରୀ, ଅଭିଯୋଗ ଓ
ପେନ୍‌ସନ ବିଭାଗ, ଓଡ଼ିଶା ।



ବାରିପଦାଠାରେ ମନ୍ତ୍ରୀ ସୟଦ୍ ମୁସ୍ତାଫିଜ୍ ଅହମଦ୍‌ଙ୍କ ଦ୍ୱାରା ସାକ୍ଷରତା ସମ୍ପର୍କୀୟ ପ୍ରଥମ ଭିଡିଓ ଚିତ୍ର କ୍ୟାସେଟ୍ ଉଦ୍‌ଘାଟନ ।

# ଗାନ୍ଧୀର ଦେଶ ଭାରତ

• ମୁସ୍ତାଫିଜ୍ ଅହମ୍ମଦ

ଭାରତ ମହାତ୍ମା ଗାନ୍ଧୀଙ୍କର ଦେଶ। ଏହାର ଐତିହ୍ୟ ଓ ପରମ୍ପରା ରକ୍ଷା ପାଇଁ ଦେଶର ଜନଗଣ ମନପ୍ରାଣ ଦେଇ ସାମ୍ରାଜ୍ୟବାଦ ମଧ୍ୟରେ ଉଦ୍ୟମ କରିଥିଲେ। ଦୀର୍ଘ ୪୭ ବର୍ଷ ହେଲା ସେହି ଅର୍ଦ୍ଧ ଲଙ୍ଗଳା ଫକୀର ଆଦର୍ଶରେ। ଜାତିର ପିତାଙ୍କର ଅହିଂସା ଆନ୍ଦୋଳନ ଫଳରେ ଆମେ ଯେଉଁ ସ୍ୱାଧୀନତା ହାସଲ କରିଛୁ, ତାହା କେତେଦୂର ସଫଳ ହୋଇଛି, ଆଜିର ଜୟନ୍ତୀ ଅବସରରେ ତା'ର ସମୀକ୍ଷା ଅପରିହାର୍ଯ୍ୟ।

ଗାନ୍ଧୀଜୀଙ୍କ ପ୍ରିୟ ଭଜନ– "ଈଶ୍ୱର ଆଲ୍ଲା ତେରେ ନାମ, ସବକୋ ସନ୍ମତି ଦେ ଭଗବାନ" ଆଜି ବି ସମସ୍ତଙ୍କ ମାନସପଟରେ ପ୍ରତିଫଳିତ କରୁଛି ଏବଂ କରୁଥିବ ମଧ୍ୟ। ସମାଜରୁ ଜାତିଭେଦ ଦୂର କରିବା ପାଇଁ ଗାନ୍ଧୀଙ୍କର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସଦିଛା ଓ ଚେଷ୍ଟା, ଭାରତ ସମ୍ବିଧାନରେ ଏକ ବିଶିଷ୍ଟ ଅଙ୍ଗ ରୂପେ ପରିଗଣିତ ହୋଇଥିଲେ ହେଁ ସେହିସବୁ ଦଳିତ ନିଷ୍ପେଷିତ ମାନବର ସମୂହ କଲ୍ୟାଣ ପାଇଁ ଗ୍ରହଣ ନେଇଥିବା କାର୍ଯ୍ୟକ୍ରମ ସମ୍ପୂର୍ଣ୍ଣ ସଫଳ ହୋଇନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ।

ଏକ ସୁସ୍ଥ ସମାଜ ଗଠନ ପାଇଁ ନାରୀ ସମାଜକୁ ଆମେ ଉଚିତ ସମ୍ମାନ ଓ ସ୍ଥାନ ଦେଇଛୁ କି ? ଦେଶର ଅବହେଳିତ ଶିଶୁମାନଙ୍କ ସମସ୍ୟା ଦୂର କରିବାରେ ଆମେ କେତେଦୂର ଆନ୍ତରିକତା ପ୍ରଦର୍ଶନ କରିଛୁ ତାହା ଆଜିର ଦିବସରେ ପର୍ଯ୍ୟାଲୋଚନା କରିବା ଆବଶ୍ୟକ। ନିଶାମୁକ୍ତ ସମାଜ ପାଇଁ ଗାନ୍ଧିଜୀଙ୍କ ଅହରହ ଉଦ୍ୟମ, ସଂକଳ୍ପକୁ ଆମେ କେତେଦୂର କାର୍ଯ୍ୟକାରୀ କରି ପାରିଛେ ? ବାପୁଜୀଙ୍କର ଗ୍ରାମ୍ୟ ସ୍ୱରାଜ୍ୟ କଳ୍ପନା ଓ ଗ୍ରାମର ଉନ୍ନତି ଲକ୍ଷ୍ୟକୁ ଆମେ ଆଜି ଧ୍ୱଂସ କରିଛୁ। ଗ୍ରାମଛାଡ଼ି ଗ୍ରାମବାସୀମାନେ ସହରାଭିମୁଖୀ ହୋଇ ସହରାଞ୍ଚଳରେ କୀଟପତଙ୍ଗ ଭଳି କଷ୍ଟ ଅନୁଭବ କରୁଛନ୍ତି। ସେ ଆହ୍ୱାନ ଦେଇଥିଲେ ଯେ ବିଭିନ୍ନ ସମସ୍ୟାର ସମାଧାନ ଓ ସମାଜର ସାମାଜିକ ତଥା ଅର୍ଥନୈତିକ ପ୍ରଗତିକୁ ତ୍ୱରାନ୍ୱିତ କରିବା ଦିଗରେ ଦେଶବାସୀ ନିଜକୁ ଉତ୍ସର୍ଗୀକୃତ କରନ୍ତୁ।

ପ୍ରାକ୍ ବୈଦିକ ଯୁଗରୁ ଭାରତବର୍ଷ ନିଜର ମହାନ୍ ସଂସ୍କୃତି, ଐତିହ୍ୟ ଓ ପରମ୍ପରା ପାଇଁ ସମଗ୍ର ବିଶ୍ୱରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିପାରିଛି। ଭ୍ରାତୃଭାବ ଏବଂ ମୈତ୍ରୀ ଆମ ପାଇଁ ନୂଆ ନୁହେଁ। ସମଗ୍ର ବିଶ୍ୱକୁ ଆମର ମୁନିଋଷିମାନେ ଏକ କୁଟୁମ୍ବ ରୂପେ ବିଚାର କରିଥିଲେ, ଆମେ ନିଜର ସୁଖ କାମନା ନ କରି 'ସର୍ବେ ଭବନ୍ତୁ ସୁଖୀନଃ ସର୍ବେ ସନ୍ତୁ ନିରାମୟା' ଏହି କାମନା କରୁଥିଲେ। ପରିବାର ପାଇଁ ନିଜର, ଗ୍ରାମ ପାଇଁ ପରିବାରର, ରାଜ୍ୟ ପାଇଁ ଗ୍ରାମର, ଦେଶ ପାଇଁ ରାଜ୍ୟର ଓ ବିଶ୍ୱ ପାଇଁ ଦେଶର ସ୍ୱାର୍ଥ ତ୍ୟାଗ କରିବା ଗାନ୍ଧିଜୀଙ୍କ ଚିନ୍ତାଧାରାର ମହନୀୟତାର ପ୍ରତୀକ।

ଏହି ମହାନ ଦେଶରେ ସର୍ବ ଧର୍ମ ସମନ୍ୱୟର ଚିନ୍ତାଧାରା ଅତି ପ୍ରାଚୀନ। ଆମେ ଅନ୍ୟ ରାଷ୍ଟ୍ର ପରି କେବେ ହେଲେ କଟ୍ଟରବାଦୀ କିମ୍ବା ଆତଙ୍କବାଦୀ ହୋଇ ରହିନାହୁଁ। ଦୀର୍ଘକାଳଧରି ସବୁ ଧର୍ମ ପ୍ରତି ଆମେ ସହନଶୀଳତା ପ୍ରକାଶ କରିଆସିଛୁ। କେବଳ ସେଥିପାଇଁ ଜୈନଧର୍ମ, ବୌଦ୍ଧଧର୍ମ ଓ ଶିଖଧର୍ମ ଏହି ଦେଶରେ ଜନ୍ମଲାଭ କରି ସମ୍ପ୍ରସାରିତ ହୋଇଛି। ମୁସଲମାନ ଓ ଖ୍ରୀଷ୍ଟଧର୍ମକୁ ମଧ୍ୟ ଏ ଦେଶରେ ଯଥୋପଯୋଗୀ ସମ୍ମାନ ଦିଆଯାଇଛି। ସବୁ ଧର୍ମାବଲମ୍ବୀମାନଙ୍କୁ ଏହି ଦେଶ ନିଜ କୋଳକୁ ନେଇଛି। କିନ୍ତୁ ପ୍ରାଚୀନ ସନାତନ ଧର୍ମର ମହନୀୟତା ଏହା ଫଳରେ କିଞ୍ଚିତ ମଧ୍ୟ ହ୍ରାସ ହୋଇନାହିଁ। ହିନ୍ଦୁ ଧର୍ମରେ ବୁଦ୍ଧଦେବଙ୍କୁ ନବମ ଅବତାର ରୂପେ ଗ୍ରହଣ କରାଯାଇଛି। ପୀର ପିଠରେ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ଲୋକେ ଏକାଠି ପ୍ରାର୍ଥନା କରନ୍ତି। ଏପରି କି ବୈଦିକ ବ୍ରାହ୍ମଣ ପରିବାରରେ ମଧ୍ୟ ପାଲା ପ୍ରଜାରେ ପୀରଙ୍କ ପୂଜା କରାଯାଏ। ଗ୍ରନ୍ଥସାହେବରେ ବିଭିନ୍ନ ହିନ୍ଦୁ ଭଜନ ସ୍ଥାନ ପାଇଅଛି। ଶିଖମାନଙ୍କର ନବମ ଗୁରୁ, ଗୁରୁଗୋବିନ୍ଦ ସିଂହ ହିନ୍ଦୁମାନଙ୍କର ସୁରକ୍ଷା ନିମନ୍ତେ ହିଁ ଶିଖ ସମ୍ପ୍ରଦାୟକୁ ଏକ ଯୋଦ୍ଧା ଜାତିରେ ପରିଣତ କରିଥିଲେ। ଭକ୍ତ ସାଲବେଗ ମୁସଲମାନ ହୋଇ ମଧ୍ୟ ଜଣେ ଶ୍ରେଷ୍ଠ ବୈଷ୍ଣବ ଥିଲେ। ଆଗ୍ରସ୍ଥାଳ ବ୍ରାହ୍ମଣ ଏକାଠି ହୋଇ ମହାପ୍ରସାଦ ସେବନ କରନ୍ତି। ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବଧର୍ମ ସମନ୍ୱୟତାର ଶ୍ରେଷ୍ଠ ପ୍ରତୀକ।

ଉତ୍କଳମଣିଙ୍କ ଭାଷାରେ

"ନିଜ ସ୍ୱାର୍ଥ ପାଇଁ ଜାତ ନୁହେଁ ହିନ୍ଦୁ,
ପର ସ୍ୱାର୍ଥ ପାଇଁ ପ୍ରତି ରକ୍ତ ବିନ୍ଦୁ॥"

ଏହି ମହାନ୍ ଆଦର୍ଶ ସମଗ୍ର ବିଶ୍ୱରେ ଅଦ୍ୱିତୀୟ। ଆମେ ବାସ୍ତବରେ ଭାଗ୍ୟବାନ୍ ଯେ ଏପରି ମହାନ୍ ଦେଶରେ ଆମର ଜନ୍ମ ଓ ଏହା ହିଁ ଆମର ଜାତିର ଜନକ ମହାତ୍ମା ଗାନ୍ଧୀଙ୍କର ଦେଶବାସୀଙ୍କ ପ୍ରତି ଆହ୍ୱାନ।

ଶାନ୍ତି ଓ ଅହିଂସା ଭାରତୀୟ ଧର୍ମ, ସଂସ୍କୃତି ସହ ଓତପ୍ରୋତଭାବେ ଜଡ଼ିତ। ଦୟା ଓ କ୍ଷମାକୁ ବୈଦିକ ଯୁଗରୁ ହିଁ ଶୀର୍ଷ ସ୍ଥାନ ଦିଆଯାଇଛି। ଜୈନଧର୍ମ ଓ ବୌଦ୍ଧଧର୍ମରେ ଅହିଂସାକୁ ପରମ ମନ୍ତ୍ରରୂପେ ଗ୍ରହଣ କରାଯାଇଛି। ଜାତିର ଜନକ ବାପୁଜୀ, ସତ୍ୟ ଓ ଅହିଂସାକୁ ସ୍ୱାଧୀନତା ସଂଗ୍ରାମରେ ଶ୍ରେଷ୍ଠ ଅସ୍ତ୍ର ରୂପେ ବ୍ୟବହାର କରି ଆଜିର ହିଂସ୍ର ବାତାବରଣ ମଧ୍ୟରେ ଶକ୍ତିଶାଳୀ ବ୍ରିଟିଶ ସାମ୍ରାଜ୍ୟବାଦର ବିଲୋପ କରିଥିଲେ।

ଅତି ଦୁଃଖର ବିଷୟ ଆମେ ଆଜି ନିଜର ଗୌରବମୟ ଐତିହ୍ୟ ଓ ପରମ୍ପରାକୁ ଭୁଲିଯାଉଛୁ। ଆମେ ଆଜି ଆମର ମହାନ୍ ସଂସ୍କୃତି ଓ ଆଦର୍ଶକୁ ବିସ୍ମୃତି ଗର୍ଭକୁ ଠେଲି ଦେଉଛୁ। ଯେଉଁ ଦେଶରେ ବେଦ, ଉପନିଷଦ ଓ ଗୀତା ରଚିତ ହୋଇଥିଲା, ଯେଉଁ ରାଷ୍ଟ୍ର ମାନବସମାଜର ସମୃଦ୍ଧି ଓ ଶାନ୍ତି ପାଇଁ ସମଗ୍ର ବିଶ୍ୱକୁ ଦିଗ୍‌ଦର୍ଶନ ଦେଇଥିଲା, ଆଜି କାହିଁ ସେ ଆଦର୍ଶ ? ଚିକାଗୋର

ବିଶ୍ୱ ଧର୍ମ ସଭାରେ ସନାତନ ଧର୍ମର ମାନବିକ ଦୃଷ୍ଟିକୋଣକୁ ଉତ୍‌ଥାପନ କରି ଏହାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ସ୍ୱାମୀ ବିବେକାନନ୍ଦ ଯେଉଁ ଅମରବାଣୀ ପ୍ରଚାର କରିଥିଲେ, ଆଜି କାହିଁ ସେ ସ୍ୱର । ପୃଥିବୀର ଅନ୍ୟ ଦେଶର ଲୋକମାନେ ଭାରତୀୟ ଆଦର୍ଶମୟ ପରମ୍ପରାକୁ ଆଦରି ନେଉଥିବାବେଳେ ଆମେ ଆଜି ଯେପରି ନିଜକୁ ମଧ୍ୟ ଭୁଲିଯାଉଛୁ ।

ଆଜି ପଞ୍ଜାବ, ଜାମ୍ମୁ, କାଶ୍ମୀର, ଆସାମ, ନାଗାଲାଣ୍ଡ ଓ ମେଘାଳୟ ପ୍ରଭୃତି ରାଜ୍ୟରେ ନିର୍ବିକାର ଭାବରେ ଭାଇ ଭାଇକୁ ହତ୍ୟା କରୁଛି । ଧର୍ମ ଧର୍ମ ମଧ୍ୟରେ, ଜାତି ଜାତି ମଧ୍ୟରେ ପ୍ରଦେଶ ଓ ପ୍ରଦେଶ ମଧ୍ୟରେ ବିଦ୍ୱେଷର ବିଷ ମଞ୍ଜି ବୁଣାଯାଉଛି । ଆଜି ଯୁବ ସମାଜକୁ ପଥଭ୍ରଷ୍ଟ କରିବା ପାଇଁ ଯେଉଁ ଉଦ୍ୟମ ହେଉଛି ତାହାଦ୍ୱାରା ଆମେ ଏହି ଦେଶର, ଐତିହ୍ୟ, ବାପୁଜୀଙ୍କର ଆଦର୍ଶ ଏବଂ ଦେଶର ଭବିଷ୍ୟତକୁ ଭୁଲିଯାଉ ନାହୁଁ କି ?

---

ମନ୍ତ୍ରୀ, ବସ୍ତ୍ର ଶିଳ୍ପ, ଓଡ଼ିଶା ।




କୋରକୋରାଠାରେ ନବ ନିର୍ମିତ ସହାୟକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର ଉଦ୍‌ଘାଟନ କରୁଛନ୍ତି ।

# ବିଶ୍ୱ ଆଇନାରେ ଗାନ୍ଧିଜୀ

• ରାମ ପ୍ରସାଦ ପୁରୋହିତ

ଭୌତିକବାଦୀ ଦୁନିଆଁରେ ଆଧ୍ୟାତ୍ମିକ ଶକ୍ତିର ଯେ ଯଥେଷ୍ଟ ସ୍ଥାନ ରହିଛି, ଏ କଥା ଅସ୍ୱୀକାର କରାଯାଇ ନ ପାରେ । ଯେଉଁଠି ମନୁଷ୍ୟ ମଧ୍ୟରେ ଭେଦଭାବ ସୃଷ୍ଟି ହୋଇଛି, ମନୁଷ୍ୟ ଯନ୍ତ୍ରଣାରେ ଚିତ୍କାର କରିଛି ସେଇଠି ଗାନ୍ଧିମାର୍ଗ ଏକ ବିଶ୍ୱାସ ତଥା ଆଶ୍ୱାସନା ଆଣିବାରେ କିଛିଟା ସଫଳତା ହାସଲ କରିଛି । ଆମେରିକାର ମାର୍ଟିନ୍ ଲୁଥର କିଙ୍ଗ ଜୁନିୟର, ଆଫ୍ରିକାରେ ବିଶପ ଟୁଟୁ, ପୂର୍ବ ଏସିଆରେ କମ୍ୟୁନିଷ୍ଟ ନେତା ହୋ ଚି ମିନ୍ ଗାନ୍ଧିବାଦୀ ଚିନ୍ତାଧାରାର ବ୍ୟାବହାରିକ ରୂପ ପ୍ରଦାନ କରିଛନ୍ତି ।

ହୋ ଚି ମିନଙ୍କ ଭାରତ ଗସ୍ତ ସମୟରେ ଭାରତର ସାମ୍ବାଦିକମାନେ ତାଙ୍କୁ ପ୍ରଶ୍ନ କରିଥିଲେ– 'ଭିଏତନାମରେ ତାଙ୍କର ଭୂମିକା ଓ ଭାରତରେ ଗାନ୍ଧିଜୀଙ୍କ ଭୂମିକାରେ କି ପ୍ରଭେଦ ରହିଛି ?

ଉତ୍ତରରେ ହୋ ଚି ମିନ କହିଥିଲେ– 'ଏ ପ୍ରଶ୍ନହିଁ ଭୁଲ, ଏବଂ ଏ ଉଭୟଙ୍କ ମଧ୍ୟରେ ତୁଳନା କରିବା ମୂର୍ଖତା ହେବ । ଅବଶ୍ୟ ଏ କଥା ସ୍ପଷ୍ଟ ଯେ ମୁଁ ବା ମୋଭଳି ଅନ୍ୟମାନେ କ୍ରାନ୍ତିକାରୀ ହୋଇ ପାରନ୍ତି, କିନ୍ତୁ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବରେ ସେମାନେ ସମସ୍ତେ ହେଉଛନ୍ତି ଗାନ୍ଧିଜୀଙ୍କ ଶିଷ୍ୟ । ଏଥିରୁ କମ ବା ବେଶି ହୋଇ ନ ପାରେ ।

ଗାନ୍ଧିଜୀ ସତ୍ୟ, ଅହିଂସାର ଦୀକ୍ଷା ବିଦେଶ ଭୂମିରେ ହିଁ ଗ୍ରହଣ କରିଥିଲେ । ଦୁନିଆଁରେ ଯେଉଁଠି ମାନବିକତା ପ୍ରତି ଅତ୍ୟାଚାର କରାଯାଉଛି ସେଇଠି ଗାନ୍ଧିଙ୍କୁ ସ୍ମରଣ କରାଯାଉଛି । ଅତ୍ୟାଚାରୀର ହୃଦୟ ପରିବର୍ତ୍ତନ କରି ସଂଗ୍ରାମ କରିବାକୁ ଗାନ୍ଧିଜୀହିଁ ଶିଖାଇଥିଲେ । ଯେଉଁଠି ଏହାର ପ୍ରୟୋଗ ହୋଇଛି ସେଇଠି ସଫଳତା ମିଳିଛି ।

ଗାନ୍ଧିଜୀ ଜଣେ ଓକିଲ ଭାବରେ ଦକ୍ଷିଣ ଆଫ୍ରିକା ଯାଇଥିଲେ । ସେଠାରେ କଳା ଲୋକଙ୍କ ପ୍ରତି ଗୋରା ଲୋକଙ୍କର ଘୃଣା ଓ ଅତ୍ୟାଚାର ଦେଖି ଏହାର ବିରୋଧରେ ସେ ସଂଗ୍ରାମ କରିଥିଲେ । ସେଇଠି ତାଙ୍କର ୨୧ ବର୍ଷ କଟି ଯାଇଥିଲା । ସେଇଠି ତାଙ୍କର ବିରୋଧୀମାନଙ୍କର ହୃଦୟ ପରିବର୍ତ୍ତନ କରିବାରେ ସେ ସଫଳ ହୋଇଥିଲେ । ଜେନେରାଲ ସ୍ମଟ୍ସ ଯାହା ସହିତ ତାଙ୍କର ସଂଘର୍ଷ ହୋଇଥିଲା ସେ ଗାନ୍ଧିଜୀଙ୍କର ବନ୍ଧୁ ହୋଇଗଲେ ।

ମାର୍ଟିନ ଲୁଥର କିଙ୍ଗ୍ ଜୁନିୟର ଆମେରିକାରେ କୃଷ୍ଣକାୟଙ୍କ ଉପରେ ଗୋରା ଲୋକଙ୍କର ଅତ୍ୟାଚାର ବିରୋଧରେ ଆନ୍ଦୋଳନ କରିବାରୁ ତାଙ୍କୁ ହତ୍ୟା କରାଗଲା । ସେ ମହାତ୍ମା ଗାନ୍ଧୀଙ୍କର ପ୍ରକୃତ ଓ ପ୍ରିୟ ଶିଷ୍ୟ ଥିଲେ । ଏହି କଳା-ନେତା ଗାନ୍ଧୀଙ୍କୁ କେବେ ଦେଖି ନ ଥିଲେ, ଗାନ୍ଧିଙ୍କ ସହ ଚିଠିପତ୍ରର ଆଦାନ ପ୍ରଦାନ ମଧ୍ୟ କରି ନ ଥିଲେ । ତଥାପି ଶେଷ ପର୍ଯ୍ୟନ୍ତ ଅହିଂସା ଉପରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତାଙ୍କ ମୃତ୍ୟୁର ଦଶଦିନ ପୂର୍ବରୁ ନ୍ୟୁୟର୍କରେ ନିଗ୍ରୋମାନଙ୍କର ଏକ ସଭାରେ ସେ କହିଥିଲେ – 'ଅହିଂସା ଆମର ସବୁଠୁ ଶକ୍ତିଶାଳୀ ଶସ୍ତ୍ର । ନିଜ ଦେଶକୁ ଗୋରାମାନଙ୍କ କବଳରୁ ମୁକ୍ତ କରିବା ପାଇଁ ଗାନ୍ଧିଜୀ ଏହି ଶସ୍ତ୍ର ବ୍ୟବହାର କରିଥିଲେ । ଗାନ୍ଧିଜୀଙ୍କର ଏହି ଅହିଂସା ଶସ୍ତ୍ର ଆଜି ସଂସାରରେ ସମସ୍ତ ଅତ୍ୟାଚାରିତ, ଶୋଷିତମାନଙ୍କର ଶସ୍ତ୍ର ହୋଇଛି ।'

ମାର୍ଟିନ ଲୁଥର କିଙ୍ଗ ସତ୍ୟାଗ୍ରହର ଉପଯୋଗ ମଧ୍ୟ ସଫଳତାର ସହ କରିଥିଲେ । ଭିଏତନାମରେ ଆମେରିକାର ନୀତି ବିରୁଦ୍ଧରେ ଯାଉ ହଜାର ହଜାର ଅମେରିକୀୟ ସତ୍ୟାଗ୍ରହ ଆନ୍ଦୋଳନ କରିଥିଲେ । ଏବେ ଅଣୁ ବୋମା ନିରୋଧ ପାଇଁ ଓ ଶାନ୍ତି ପାଇଁ ଆମେରିକାରେ ଉପବାସ ଅସ୍ତ୍ର ମଧ୍ୟ ପ୍ରୟୋଗ କରାଯାଉଛି । ମ୍ୟାସାଚୁସେଟ୍ସ କଲେଜରେ ଗାନ୍ଧିଜୀଙ୍କ ଚିତ୍ର ସହ ସାଧାରଣ ସ୍ଥାନରେ ତିନିଦିନ ପର୍ଯ୍ୟନ୍ତ ଅନଶନ କରାଯାଇଥିଲା । ପ୍ରିନ୍ସଟନ ବିଶ୍ୱବିଦ୍ୟାଳୟର ୨୫୦ ଜଣ ବିଦ୍ୟାର୍ଥୀ ଫେବ୍ରୁୟାରୀ ୧୯୬୮ରେ ଶାନ୍ତି ସ୍ଥାପନ ପାଇଁ ଅନଶନର ଆଶ୍ରୟ ନେଇଥିଲେ । ହାର୍ଭାର୍ଡ ବିଶ୍ୱବିଦ୍ୟାଳୟ ତଥା ଅନ୍ୟାନ୍ୟ କଲେଜମାନଙ୍କରେ ମଧ୍ୟ ଅନଶନ କରାଯାଇଥିଲା । ପୋଲାଣ୍ଡରେ ଶ୍ରମିକନେତା ଏବଂ ନୋବେଲ ଶାନ୍ତି ପୁରସ୍କାର ବିଜେତା ଲେଚ ଓ୍ୱାଲେସା କମ୍ୟୁନିଷ୍ଟ ଶାସନ ବିରୋଧରେ ଏବଂ ଶ୍ରମିକମାନଙ୍କର ଅଧିକାର ହାସଲ ପାଇଁ ଗାନ୍ଧିବାଦୀ ମାର୍ଗରେ ସଂଗ୍ରାମ କରିଥିଲେ । ଆମେରିକା ଓ ରୁଷିଆରେ ଆଣବିକ କେନ୍ଦ୍ର ସବୁକୁ ଧ୍ୱଂସ କରିଦେବା ପାଇଁ ସତ୍ୟାଗ୍ରହ, ଧାରଣା ଓ ଅନଶନର ପ୍ରୟୋଗ କରାଯାଇଥିଲା । ଏ ସମସ୍ତ ଆନ୍ଦୋଳନକାରୀ ଗାନ୍ଧିଜୀଙ୍କର ହିଁ ଉଦାହରଣ ଦେଉଥିଲେ ।

କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ପାଇଁ ଗବେଷଣା କରୁଥିବା ବିଶପ ଜେ.କେ. ମ୍ୟାଥ୍ୟୁଜ ମହାତ୍ମାଗାନ୍ଧୀଙ୍କ ସମ୍ପର୍କରେ ତାଙ୍କର ସନ୍ଦର୍ଭରେ ଲେଖିଥିଲେ – 'ଗାନ୍ଧିଜୀ ଜଣେ ଓକିଲ ଭାବରେ ଦକ୍ଷିଣ ଆଫ୍ରିକା ଯାଇଥିଲେ । ସେ ପ୍ରଥମ ଶ୍ରେଣୀର ଟିକଟ ନେଇ ଟ୍ରେନରେ ପ୍ରଥମ ଶ୍ରେଣୀରେ ଯାତ୍ରୀ କରୁଥିଲେ । ଗୋରା ଲୋକଟିଏ ସେ ଡବାକୁ ଆସିଲା ଏବଂ କଳାଲୋକଟିଏ ସହ ଏକା ସାଙ୍ଗରେ ଯାତ୍ରୀକରିବାକୁ ଅସ୍ୱୀକାର କଲା । ଗାର୍ଡକୁ ଡକାଗଲା । ସେ ଗାନ୍ଧିଙ୍କୁ ଟ୍ରେନରୁ ଓହ୍ଲାଇ ଦେଲା ତା' ପର ଟ୍ରେନର ଅପେକ୍ଷାରେ ଗାନ୍ଧିଜୀ ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ପ୍ଲାଟଫର୍ମ ଉପରେ ଘୂରି ବୁଲୁଥିଲେ । ଏମିତି ଭାବରେ ବୁଲୁବୁଲୁ ସେ ଅହିଂସା ଓ ଅସହଯୋଗର ସନ୍ଧାନ ପାଇଲେ । ଏହାକୁ ସହଜ ଭାଷାରେ କହିଲେ ଏମିତି ହେବ – ମୁଁ ତୁମକୁ ଘୃଣା କରିବି ନାହିଁ, କିନ୍ତୁ ତୁମର ଭୁଲ ଆଦେଶକୁ ପାଳନ ମଧ୍ୟ କରିବି ନାହିଁ । ଯାହା ଇଚ୍ଛା ତୁମେ କରିପାର । ମୁଁ ମୋ ନିଜ ଭିତରେ ଏମିତି ଶକ୍ତି ସଞ୍ଚାର କରିବି ଯାହା ଫଳରେ ତୁମର ଦୌରାତ୍ମ୍ୟ ସହ୍ୟ କରିବି । ମୋର ଆତ୍ମଶକ୍ତି ତୁମର ଶାରୀରିକ ଶକ୍ତିର ସାମନା କରି ପାରିବ । ତୁମକୁ ପ୍ରେମ ଦ୍ୱାରା ପରାଜିତ କରିବି ।"

ଗାନ୍ଧିଜୀଙ୍କ ଏହି ଘଟଣାରୁ ପ୍ରେରଣା ଲାଭ କରି ଆମେରିକାରେ ହଜାର ହଜାର ଯୁବକ ଭିଏତନାମ ଯୁଦ୍ଧକୁ ନ ଯାଇ ଜେଲବରଣ କରିବା ଶ୍ରେୟସ୍କର ମନେ କରିଥିଲେ । ଆମେରିକାର ବାୟୁସେନାର ଜଣେ କ୍ୟାପ୍‌ଟେନ ଭିଏତନାମ ଯୁଦ୍ଧ ପାଇଁ ପାଇଲଟମାନଙ୍କୁ ପ୍ରଶିକ୍ଷଣ ଦେବାକୁ ମନା କରିଦେଲେ । ତାଙ୍କ ନାମରେ ମକଦ୍ଦମା ଚାଲିଲା ଏବଂ ସୈନିକ ଅଦାଲତରେ ସେ ଗାନ୍ଧିଜୀଙ୍କ ଉକ୍ତ ବିଚାରବଳ ଯୋଗୁଁ ରକ୍ଷା ପାଇଥିଲା । ଅବଶ୍ୟ ତାଙ୍କୁ ଏକ ବର୍ଷ ଜେଲଦଣ୍ଡ ହେଲା ଏବଂ ସେ ବିନା ପ୍ରତିବାଦରେ ଏହି ଦଣ୍ଡ ସ୍ୱୀକାର କରିଥିଲେ ।

ଗାନ୍ଧିଜୀଙ୍କୁ ରେଲଡବାରୁ ଓହ୍ଲାଇଦେବାର ପରିଣତି ସ୍ୱରୂପ ଏସିଆ ଓ ଆଫ୍ରିକାରୁ ଗୋରାମାନଙ୍କୁ ବିଦାୟ ନେବାକୁ ପଡ଼ିଲା । ପ୍ରଥମେ ଭାରତ ସ୍ୱାଧୀନତା ପାଇଲା । ତାପରେ ତାପରେ ବର୍ମା, ଶ୍ରୀଲଙ୍କା, ଇଣ୍ଡୋନେସିଆ ଓ ଇଣ୍ଡୋ–ଚୀନ ସ୍ୱାଧୀନତା ପାଇଲେ । ଏହି କ୍ରମରେ ଆଫ୍ରିକାର ୩୭ଟି ଦେଶ ଗୋରା ଲୋକଙ୍କ କବଳରୁ ମୁକ୍ତ ହେଲେ ।

ଗାନ୍ଧିଜୀ ଏଭଳି ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବରେ ସମଗ୍ର ବିଶ୍ୱକୁ ପ୍ରଭାବିତ କରିଛନ୍ତି । ଉଲ୍ଲିଖିତ ଦେଶମାନଙ୍କର ସ୍ୱାଧୀନତା ସଂଗ୍ରାମରେ ଗାନ୍ଧୀବାଦର ସ୍ପଷ୍ଟ ଚିହ୍ନ ଦେଖିବାକୁ ମିଳିଥାଏ । ଏହାର କାରଣ ଗାନ୍ଧିଜୀଙ୍କ ବୌଦ୍ଧିକ ସ୍ୱରୂପ । ଗାନ୍ଧିଜୀ ଟଲଷ୍ଟୟଙ୍କ ନିକଟରୁ ବହୁତ କିଛି ଶିକ୍ଷା ଲାଭ କରିଛନ୍ତି, ପ୍ଲେଟୋ ଓ ରସ୍କିନ୍‌ଙ୍କୁ ଭଲଭାବରେ ପଢ଼ିଛନ୍ତି, ଥୋରୋଙ୍କ ନିକଟରୁ ସେ ପ୍ରେରଣାଲାଭ କରିଛନ୍ତି । ମାଜିନୀଙ୍କ ଗାନ୍ଧିଜୀ ଥିଲେ ଜଣେ ବଡ଼ ପ୍ରଶଂସକ । ଗାନ୍ଧିଜୀଙ୍କ ବିଚାରଧାରାରେ ଆମେ ୟୁରୋପ ଓ ଆମେରିକାର ଅନେକ ବିଚାର ଓ ଦର୍ଶନର ସମାହାର ଦେଖିବାକୁ ପାଉ ।

ରୋମାଁ ରୋଲାଁ ଗାନ୍ଧିଜୀଙ୍କର ସତ୍ୟାଗ୍ରହ ସମ୍ପର୍କୀୟ ବିଚାରଧାରା ଉପରେ କହନ୍ତି – 'ଗାନ୍ଧିଜୀ ଆଫ୍ରିକାରେ ଥିବା ସମୟରେ ହିଁ ସେ ସତ୍ୟାଗ୍ରହ ଶବ୍ଦର ଆବିଷ୍କାର କରିଥିଲେ । ନିଜର କର୍ମ–ସାଧନା ସହ ନିଷ୍କ୍ରିୟ ପ୍ରତିରୋଧ ଭିନ୍ନତା ବା ପାର୍ଥକ୍ୟକୁ ସ୍ପଷ୍ଟ କରିଦେବା ଏହି 'ସତ୍ୟାଗ୍ରହ'ର ଉଦ୍ଦେଶ୍ୟ ; କାରଣ ୟୁରୋପୀୟମାନେ ଗାନ୍ଧିଜୀଙ୍କ ଆନ୍ଦୋଳନକୁ ନିଷ୍କ୍ରିୟ ପ୍ରତିରୋଧ ବୋଲି ମନେ କରୁଥିଲେ । କିନ୍ତୁ ଏହା ନିତାନ୍ତ ଏକ ଭୁଲ ଧାରଣା । ନିଷ୍କ୍ରିୟତା ପ୍ରତି ଏହି ସାହସୀ ଯୋଦ୍ଧାଙ୍କ ମନରେ ଯେତିକି ଘୃଣା ଥିଲା, ବୋଧହୁଏ ପୃଥିବୀର ଅନ୍ୟ କୋଣସି ବ୍ୟକ୍ତିଙ୍କ ମନରେ ନଥିବ । ତାଙ୍କର ଆନ୍ଦୋଳନର ସାରତତ୍ତ୍ୱ ହେଉଛି, 'ସକ୍ରିୟ ପ୍ରତିରୋଧ' ଏବଂ ତତ୍ତ୍ୱ ତାଙ୍କ ପ୍ରେମ, ବିଶ୍ୱାସ ଓ ଆତ୍ମତ୍ୟାଗର ସମ୍ମେଳନରେ 'ସତ୍ୟାଗ୍ରହ'ର ସଂଜ୍ଞା ଧାରଣ କରିଥିଲା ।

ଗାନ୍ଧିଜୀ ନିଜର ବିଚାରଧାରାର ପ୍ରଚାର ପାଇଁ ବା ଅନୁଗାମୀ ଶିଷ୍ୟ ତିଆରି ପାଇଁ ବିଦେଶ ଯାଇ ନଥିଲେ । ଥରେ ଫାଦର ଷ୍ଟେନଲି ଜୋନ୍‌ସ ଗାନ୍ଧିଜୀଙ୍କୁ ଆମେରିକା ଓ ୟୁରୋପ ଭ୍ରମଣକରି ଯୁଦ୍ଧର ବିଭୀଷିକାରୁ ମାନବଜାତିକୁ ରକ୍ଷା କରିବା ପାଇଁ ଅନୁରୋଧ ଜଣାଇ ଥିଲେ । ଏ ଅନୁରୋଧ କଥା ଶୁଣି ସେ କିଛି ସମୟ ଚୁପ ରହିଲେ । ତା'ପରେ ତାଙ୍କ ଆଖିରେ ଲୁହ ଦେଖାଦେଲା । ସେ କହିଲେ ଯେ, ସେ ଏପର୍ଯ୍ୟନ୍ତ ଭାରତରେ ଅହିଂସାର ଶକ୍ତି ପ୍ରଦର୍ଶନ କରି ପାରିନାହାନ୍ତି ଏବଂ ଏପରି ପରିସ୍ଥିତିରେ ସେ କେଉଁ ମୁହଁରେ ବିଦେଶ ଯିବେ ।

ଗାନ୍ଧିଜୀ ୧୯୪୭ରେ କଂଗ୍ରେସର ୱାର୍ଦ୍ଧା ଅଧିବେଶନରେ ଯାହାକହିଥିଲେ ଆଜିବି ତାହା ପ୍ରାସଙ୍ଗିକ ମନେହୁଏ । ଗାନ୍ଧିଜୀ କହିଲେ "ମୋ ପାଇଁ ଅହିଂସା ଏକ ଧର୍ମ । ମୋ ଜୀବନରେ ଅହିଂସା ହିଁ ସବୁ କିଛି । କିନ୍ତୁ ମୁଁ ହିନ୍ଦୁସ୍ଥାନ ବା କୌଣସି ବ୍ୟକ୍ତିଙ୍କ ସମ୍ମୁଖରେ ଏହାକୁ କେବେହେଲେ ଧର୍ମର ସ୍ୱରୂପ ଦେବାର ଚେଷ୍ଟା କରିନାହିଁ । ମୁଁ ଏହାକୁ କଂଗ୍ରେସ ସମ୍ମୁଖରେ ରାଜନୀତିକ ଦର୍ଶନ ଭାବରେ ଉପସ୍ଥାପନ କରିଛି ଏବଂ ଏହାକୁ ରାଜନୀତିକ ସମସ୍ୟାର ସମାଧାନ ପାଇଁ ଉପଯୋଗ କରାଯାଇ ପାରେ । ଏହା ଏକ ନୂଆ ପଦ୍ଧତି ହୋଇଥାଇପାରେ, କିନ୍ତୁ ଏହି କାରଣରୁ ଏହାର ରାଜନୀତିକ ସ୍ୱରୂପ ନଷ୍ଟ ହୋଇ ଯାଇ ନପାରେ । ରାଜନୀତିକ ପଦ୍ଧତି ହୋଇଥିବା ଯୋଗୁଁ ଏହାର ପରିବର୍ତ୍ତନ କରାଯାଇପାରେ, ଏହାର ସଂଶୋଧନ କରାଯାଇପାରେ ଏବଂ ଯଦି ଏହାଠୁ ଭଲ ଅନ୍ୟ କୌଣସି ମାର୍ଗ ବା ପଦ୍ଧତି ଆବିଷ୍କାର ହୋଇଯାଏ ତେବେ ଏହାକୁ ତ୍ୟାଗ ମଧ୍ୟ କରାଯାଇ ପାରେ ।"

ଆମେ ଦେଖିଥାଉଁ ଯେ ଏବେ ଯେଉଁଠିକି ହିଂସାର ଭୟ ଦେଖାଯାଏ ଅହିଂସା ଉପାୟରେ ହିଁ ଦବେଇ ଦିଆଯାଇପାରେ । ଯଦି ଏପରି ହେଉନଥାନ୍ତା ତେବେ ଆଜି ପୃଥିବୀରେ ଯୁଦ୍ଧର ନିଆଁ ଜଳି ଉଠନ୍ତାଣି । ଭାରତ ବୁଦ୍ଧଙ୍କୁ ଜନ୍ମ ଦେଇଛି । କିନ୍ତୁ କେତେଜଣ ଆଜି ବୁଦ୍ଧଙ୍କର ଅନୁଗାମୀ ? ଭାରତ ଗାନ୍ଧିଙ୍କୁ ଜନ୍ମ ଦେଇଛି, କିନ୍ତୁ କେତେଜଣ ଗାନ୍ଧିବାଦୀ ? ଏବଂ ଭାରତୀୟଙ୍କ ଉପରେ ଗାନ୍ଧୀବାଦର ପ୍ରଭାବ କେତେ ? କିନ୍ତୁ ମନେରଖିବାକୁ ହେବ ଆଜିବି ଘୃଣାର ଶାଖା ବିସ୍ତାର ଲାଭ କରୁଛି, ତଥାପି ଲୋକେ ନିରାଶ ନୁହନ୍ତି । କାରଣ ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗହିଁ ହିଂସା, ଅସତ୍ୟ, ଘୃଣାର ଭୟକୁ ଦୂରୀଭୂତ କରିବାକୁ ସକ୍ଷମ । ବିଶ୍ୱରେ ଆଜିବି ଗାନ୍ଧିଜୀଙ୍କ ଆବଶ୍ୟକତା ରହିଛି ।

ପାଟଣାଗଡ଼,
ବଲାଙ୍ଗୀର–୭୬୭୦୨୫ ।



# ରେଶମ ଚାଷର ଭୂମିକା

● ଭାସ୍କର ଶୁଙ୍କାର୍ଜି

ଆମ ଦେଶ ତଥା ରାଜ୍ୟରେ ଦେଖା ଦେଉଥିବା ମୁଖ୍ୟ ସମସ୍ୟାମାନଙ୍କ ମଧ୍ୟରେ ବେକାରି ସମସ୍ୟା ବିଶେଷ କରି ଶିକ୍ଷିତ ବେକାର ସମସ୍ୟା ଅନ୍ୟତମ । ଦେଶର ଅର୍ଥନୀତିକୁ ସୁଦୃଢ଼ କରି ଦେଶର ଅଗ୍ରଗତି ନିମନ୍ତେ ସମସ୍ତ କର୍ମକ୍ଷମ ଲୋକମାନଙ୍କୁ କାମ ଯୋଗାଇବା ସର୍ବାଦୌ ଆବଶ୍ୟକ । ସ୍କୁଲ କଲେଜରେ ପାଠ ପଢ଼ି ଚାକିରି ପାଇଁ ଅପେକ୍ଷା କରିଥିବା ଶିକ୍ଷିତ ବେକାରଙ୍କ ଆର୍ଥିକ ତଥା ମାନସିକ ଅବସ୍ଥା ସହଜରେ ଅନୁମାନ କରାଯାଇପାରେ । ଏମାନେ ସମୟ ସମୟରେ ମାନସିକ ଭାରସାମ୍ୟ ହରାଇ ବସନ୍ତି । ଏପରିକି ବେକାର ଲୋକମାନେ ପରିସ୍ଥିତିର ଚାପରେ ନାନା ଅସାମାଜିକ କାମ ମଧ୍ୟ କରିପକାନ୍ତି । ନୈତିକ, ସାମାଜିକ ତଥା ଅର୍ଥନୈତିକ କାରଣରୁ ବେକାର ଲୋକଙ୍କୁ କର୍ମଯୋଗାଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଅଛି ।

ଆମ ରାଜ୍ୟ ଗୋଟିଏ କୃଷି ପ୍ରଧାନ ରାଜ୍ୟ । ଏହାର ଅର୍ଥନୀତି ମୁଖ୍ୟତଃ କୃଷି ଉପରେ ନିର୍ଭର କରେ । ଶିକ୍ଷିତ ବେକାରମାନେ ମୁଖ୍ୟତଃ ସରକାରୀ ବିଭାଗ ବା ଉଦ୍ୟୋଗରେ ଚାକିରି ଖୋଜନ୍ତି । ସରକାରୀ ବିଭାଗରେ ଚାକିରି ପାଇବାର ଅନେକ ସୀମିତତା ରହିଛି । ନିକଟରେ ସରକାରଙ୍କ ଦ୍ୱାରା ପ୍ରଚଳିତ ବଜାର ଅଭିମୁଖୀ ନୀତି ଫଳରେ ସରକାରୀ ବିଭାଗର କାର୍ଯ୍ୟକ୍ରମକୁ କ୍ରମଶଃ ସଙ୍କୁଚିତ କରାଯାଇ ବେସରକାରୀ ଉଦ୍ୟୋଗ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଅଛି । ଏହା ଫଳରେ ସରକାରୀ ଚାକିରିର ପରିସର ଆହୁରି ସଂକୁଚିତ ହେବା ଅବଶ୍ୟମ୍ଭାବୀ । ଶିଳ୍ପ କ୍ଷେତ୍ରରେ ଅଗ୍ରଗତି ନିମନ୍ତେ ସରକାରଙ୍କ ପକ୍ଷରୁ ନାନାଦି ପଦକ୍ଷେପ ନିଆଯାଉଅଛି । ଆମ ରାଜ୍ୟ ପାଇଁ କୃଷିଭିତ୍ତିକ ଗ୍ରାମୀଣ ଶିଳ୍ପ ଯାହା କି ଅପେକ୍ଷାକୃତ କମ୍ ପୁଞ୍ଜି ଓ ଭିତ୍ତି ଭୂମିରେ କରାଯାଇ ପାରିବ – ତାହା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହି ସବୁ କାରଣକୁ ଦେଖିଲେ ରେଶମ ଚାଷ ଆମ ରାଜ୍ୟର ବେକାରି ଦୂରୀକରଣରେ ଏକ ବିଶେଷ ଭୂମିକା ଗ୍ରହଣ କରିପାରିବ ।

ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ, ସମ୍ବଲପୁର, ଢେଙ୍କାନାଳ ଆଦି ଜିଲ୍ଲାରେ ରହୁଥିବା ଆଦିବାସୀ ଭାଇମାନେ ପୁରୁଷାନୁକ୍ରମେ ଜଙ୍ଗଲ ତଥା ଘର ପାଖରେ ଥିବା ଅର୍ଜୁନ, ଅସନ ଗଛରେ ତସର ଚାଷ କରନ୍ତି । ତସର ଚାଷ ପ୍ରାକୃତିକ ପରିବେଶରେ ହେଉଥିବାରୁ କୋଷା ଉତ୍ପାଦନରେ କିଛି ସୀମିତତା ରହିଥାଏ । ବ୍ୟବସାୟିକ ଭିତ୍ତିରେ ଏହି ଚାଷ କରିବା ସମ୍ଭବପର ନୁହେଁ । ଅପର ଦିଗରେ ମଲବେରୀ ଗଛ ଚାଷ କରି ଘରେ ଚାଷ କରାଯାଉଥିବା ରେଶମ ଚାଷ ଅଧିକ ଉତ୍ପାଦନକ୍ଷମ । କର୍ଣ୍ଣାଟକ, ଆନ୍ଧ୍ରପ୍ରଦେଶରେ ଏକ ଏକର ଜମିରେ ରେଶମ ଚାଷ କରି ଚାଷୀମାନେ ୩୦ରୁ ୩୫ ହଜାର ଟଙ୍କା ପର୍ଯ୍ୟନ୍ତ ଆୟ କରୁଛନ୍ତି । ଦ୍ୱିତୀୟତଃ ରେଶମ ଚାଷ ଗୋଟିଏ ଗ୍ରାମଭିତ୍ତିକ ପେଶା । ଏକ ଏକର ଜମିରେ ମଲବେରୀ ଚାଷ, ରେଶମ ପୋକ ପାଳନ, ସୁତାକଟା ଆଦି କାମ ପ୍ରାୟ ଗୋଟିଏ ପରିବାରର ୫ ଜଣ ଲୋକଙ୍କୁ ବର୍ଷସାରା କାମ ଯୋଗାଇଥାଏ । ବିଶେଷ ଶାରୀରିକ ପରିଶ୍ରମ ପଡୁ ନଥିବାରୁ ପୋକ ପାଳିବାରେ ମହିଳା, ବୟସ୍କ ଲୋକମାନେ ବିଶେଷ ଭାବରେ କାମ କରିବାର ସୁଯୋଗ ପାଇଥାନ୍ତି । ଏକ ଏକର ଜମିରେ ରେଶମ ଚାଷ କରିବା ପାଇଁ ହାରାହାରି ୧୫,୬୦୦ ଟଙ୍କା ଲାଗେ । ଜଳସେଚିତ ଜମିରେ ଏହି ଚାଷ କଲେ ୨୫,୦୦୦ ଟଙ୍କା ପର୍ଯ୍ୟନ୍ତ ଲାଗେ । ବର୍ଷା ଦିନରେ ଗଛ ଲଗାଇଲେ ୭/୮ ମାସ ପରେ ପ୍ରଥମ ଥର ଚାଷ କରିବା ସମ୍ଭବ ହୁଏ । ବର୍ଷକ ପରେ କ୍ରମାଗତ ଭାବେ ଏହି ଚାଷ ହୋଇପାରେ । ମଲବେରୀ ରେଶମ ସୂତା (ପାଟ ସୂତା)ର ଆମ ରାଜ୍ୟରେ ହସ୍ତତନ୍ତ ବୁଣାକାରମାନଙ୍କର ବହୁତ ଚାହିଦା ରହିଛି । ବର୍ତ୍ତମାନ ସେମାନେ ବାଙ୍ଗାଲୋର ବା ମାଲଦାରୁ ସୂତା କିଣୁଛନ୍ତି । ରାଜ୍ୟରେ ମଲବେରୀ ରେଶମ ଚାଷ ହେଲେ ଉତ୍ପାଦିତ ସମସ୍ତ ସୂତା ରାଜ୍ୟ ଭିତରେ ହିଁ ବ୍ୟବହାର କରାଯାଇପାରିବ । ଏଣୁ ସୂତା ବିକ୍ରିରେ ଅସୁବିଧା ରହିବନାହିଁ । ବର୍ତ୍ତମାନ ରାଜ୍ୟ ତସର ଓ ରେଶମ ସମବାୟ ସମିତି ମାଧ୍ୟମରେ ଉତ୍ପାଦିତ କୋଷା କିଣାଯାଇ ସୂତା କଟାଯାଉଅଛି । ସୂତାକଟା କ୍ଷେତ୍ରରେ ମଧ୍ୟ ଶିକ୍ଷିତ ବେକାର ଯୁବକମାନେ କାମ ପାଇପାରିବେ ।

ସପ୍ତମ ପଞ୍ଚବାର୍ଷିକ ଯୋଜନାରୁ ଓଡ଼ିଶାରେ ମଲବେରୀ ରେଶମ ଚାଷ ଆରମ୍ଭ କରାଗଲାଣି । ପ୍ରଥମ ଅବସ୍ଥାରେ ଏହି ଚାଷ ମୁଖ୍ୟତଃ ଏକ ଆଦିବାସୀ ତଥା ହରିଜନମାନଙ୍କ ପାଇଁ ଦାରିଦ୍ର୍ୟ ଦୂରୀକରଣ ଯୋଜନା ଭାବେ ଶୁରୁ କରାଯାଇ ଥିଲା । ରାଜ୍ୟରେ ଦ୍ୱିତନ୍ତୀ ରେଶମପୋକ ପାଳନ କରିବାର ସିଦ୍ଧାନ୍ତ ଫଳରେ ଏହି କାର୍ଯ୍ୟକ୍ରମ ମାଳ ଅଞ୍ଚଳରେ ୩୨ ଗୋଟି ବ୍ଲକରେ ଆରମ୍ଭ କରାଯାଇଥିଲା । ସେହି ଅଞ୍ଚଳରେ ଜଳସେଚନରେ ସୀମିତତା, ହିତାଧିକାରୀମାନଙ୍କର ଉତ୍ସାହରେ ସୀମିତତା ତଥା ରେଶମ ଚାଷ ପାଇଁ ଆବଶ୍ୟକୀୟ ଭିତ୍ତିଭୂମି ନଥିବା ଫଳରେ ଗତ ୫ ବର୍ଷରେ ଏହି ଚାଷ କ୍ଷେତ୍ରରେ ଉଲ୍ଲେଖନୀୟ ସାଫଲ୍ୟ ହୋଇ ପାରିନାହିଁ । ଏହି ସବୁ ବିଷୟ ଅନୁଧ୍ୟାନ କରି ଆଗାମୀ ଦିନରେ ରେଶମ ଚାଷ ବ୍ୟାପକ କରିବା ନିମନ୍ତେ ପଦକ୍ଷେପ ନିଆଯାଇଅଛି ।

ଆଦିବାସୀ ହରିଜନ ତଥା ଅର୍ଥନୈତିକ ଦିଗରୁ ପଛୁଆବର୍ଗମାନଙ୍କ ପାଇଁ ଦାରିଦ୍ର୍ୟ ଦୂରୀକରଣର ଏକ ପନ୍ଥା ଭାବେ ରେଶମଚାଷ ଶୁରୁ ହଉଥିବା ସଙ୍ଗେ ସଙ୍ଗେ ଶିକ୍ଷିତ ବେକାର ଯୁବକମାନଙ୍କୁ ଏହି ଚାଷ କରିବାକୁ ଆକୃଷ୍ଟ କରାଯାଉଅଛି । ଦ୍ୱିତନ୍ତୀ ରେଶମ ପୋକ ପାଳନ ସଙ୍ଗେ ସଙ୍ଗେ ଅନ୍ୟ ସମୟରେ ବିଶେଷକରି ବର୍ଷା ସମୟରେ ଦ୍ୱିତନ୍ତୀ–ବହୁତନ୍ତୀ ଶଙ୍କର ପୋକ ପାଳନ କରିବା ଆରମ୍ଭ କରାଯାଇଅଛି । କୋରାପୁଟ, ଫୁଲବାଣୀ, କଳାହାଣ୍ଡି, କେନ୍ଦୁଝର ଜିଲ୍ଲା ବ୍ୟତୀତ ଗଞ୍ଜାମର ଦିଗପହଣ୍ଡି, ପୁରୀ ଜିଲ୍ଲାର ଦଶପଲ୍ଲା, ରଣପୁର, ଓଡଗାଁ ଆଦି ସମତଳ ତଥା ଜଳସେଚନର ସୁବିଧା ଥିବା ଅଞ୍ଚଳରେ ଏହି ଚାଷ ଆରମ୍ଭ କରାଯାଇଅଛି । କଟକ ଜିଲ୍ଲାର ବଡସାହି, ନରସିଂହପୁର ତଥା ସମ୍ବଲପୁର ଜିଲ୍ଲାର ବରଗଡ ମହକୁମା ଅଞ୍ଚଳରେ ଏହି ଚାଷ

ଶୁରୁ କରିବା ପାଇଁ ଯୋଜନା କରାଯାଉଅଛି । ରେଶମ ଚାଷ ପାଇଁ ମଲବେରୀ ତୁତ ଗଛର କାଠି ଅଥବା ଚାରା ଯୋଗାଣ, ରୋଗମୁକ୍ତ ରେଶମ ଡିମ୍ବପୁଞ୍ଜ ଯୋଗାଣ, ୮ ଦିନ ପର୍ଯ୍ୟନ୍ତ ଶିଶୁ ରେଶମ ପୋକ ପାଳନ, କୀଟ ପାଳନ, ଧରା ତଥା ସରଞ୍ଜାମ ଯୋଗାଣ ତଥା ରେଶମ କୋଷା କିଣିବା ପାଇଁ ବିଶେଷ ବ୍ୟବସ୍ଥା ଶୁରୁ କରାଯାଇଅଛି । ନୂଆକରି ରେଶମ ଚାଷ କରିବା ପାଇଁ ଆଗ୍ରହୀ ଯୁବକମାନଙ୍କୁ ଏକ ଏକର ପାଇଁ ୪,୦୦୦ ଟଙ୍କା ଏବଂ ଦୁଇ ଏକର ପାଇଁ ୮,୦୦୦ ଟଙ୍କା ହାରରେ ଅନୁଦାନ ଦେବାର ବ୍ୟବସ୍ଥା ଅଛି । ବାକି ଟଙ୍କା ବ୍ୟାଙ୍କରୁ ଋଣ ଆକାରରେ ଦେବା ପାଇଁ ନାବାର୍ଡ ଦ୍ୱାରା ଗୋଟିଏ ଯୋଜନା ସ୍ୱୀକୃତ ପାଇଛି । ରେଶମ ପୋକ ଚାଷ ତଥା କୋଷା ଉତ୍ପାଦନ ବ୍ୟତୀତ କୋଷାରୁ ସୂତା କାଟିବା ପାଇଁ ଚରଖା କିଣିବା, ଘର କରିବା ପାଇଁ ମଧ୍ୟ ବ୍ୟାଙ୍କରୁ ଋଣ ମିଳୁଛି ।

ଏହି ସବୁ ବିଶେଷ ପଦକ୍ଷେପ ଫଳରେ ରେଶମ ଚାଷ କରିବା ଅଧିକ ସହଜ ଏବଂ ଲାଭଦାୟକ ହୋଇପାରିବ । ନିଜର ଜମି ନଥିଲେ ମଧ୍ୟ ଏକରେ ଦୁଇ ଏକର ଜମି କିଣି ଶିକ୍ଷିତ ଯୁବକମାନେ ଏହି ଚାଷ ଆରମ୍ଭ କରିପାରିବେ । ପରବର୍ତ୍ତୀ ଅବସ୍ଥାରେ ଏହି ଚାଷ ଅଧିକା ଜମିରେ କରିବେ । ରେଶମ ଚାଷ ପାଇଁ ସରକାରୀ ଜମି ଯୋଗାଇ ଦେବା ପ୍ରସ୍ତାବ ସରକାରଙ୍କ ବିଚାରାଧୀନ ଅଛି । ଏହି ଚାଷକୁ ଶିଳ୍ପ ଯୋଜନା ମଧ୍ୟରେ ଅନ୍ତର୍ଭୁକ୍ତ କରାଯାଇ ଶିଳ୍ପକୁ ମିଳୁଥିବା ବିଶେଷ ସାହାଯ୍ୟ ଦେବାକୁ ପଦକ୍ଷେପ ନିଆଯାଉଅଛି ।

ଏହି ଚାଷ କରିବାକୁ ଇଚ୍ଛୁକ ଯୁବକମାନଙ୍କୁ କର୍ଣ୍ଣାଟକ ପଠାଇ ସେଠାରେ ହେଉଥିବା ଚାଷ ବିଷୟରେ ଏକ ବିଶେଷ ଧାରଣା କରିବା ପାଇଁ ପଦକ୍ଷେପ ନିଆଯାଉଅଛି । ପରବର୍ତ୍ତୀ ଅବସ୍ଥାରେ ପ୍ରଶିକ୍ଷଣ ପାଇଁ କୋରାପୁଟଠାରେ ଥିବା ପ୍ରଶିକ୍ଷଣ କେନ୍ଦ୍ରରେ ବ୍ୟବସ୍ଥା ରହିଛି ।

ଏହା ନିଃସନ୍ଦେହ ଯେ ରେଶମ ଚାଷ ଏକ ଲାଭଜନକ ପନ୍ଥା । କର୍ମଯୋଗାଣ ସହ ଏହି ଚାଷ ଫଳରେ ବେଶ୍ ଲାଭ ହୋଇଥାଏ । ଏହା ଫଳରେ ମୃତ୍ତିକା, ଜଳସଂରକ୍ଷଣ ହୋଇ ପରିବେଶର ସୁରକ୍ଷା ହୁଏ ।

ଏହି ଚାଷ କରିବା ପାଇଁ ଆଗ୍ରହୀ ଯୁବ ବନ୍ଧୁମାନଙ୍କୁ ଜିଲ୍ଲାସ୍ତରୀୟ ରେଶମ ସହ ନିର୍ଦ୍ଦେଶକ, କୋରାପୁଟ ଓ କେନ୍ଦୁଝରଠାରେ ଥିବା ଯୁଗ୍ମ ନିର୍ଦ୍ଦେଶକ ତଥା ବୟନ ଶିଳ୍ପ ନିର୍ଦ୍ଦେଶାଳୟ ସହ ଯୋଗାଯୋଗ କରିବାକୁ ଅନୁରୋଧ ।

---

**କମିଶନର୍ ତଥା ଶାସନ ସଚିବ,**
**ବୟନ ଶିଳ୍ପ ଓ ହସ୍ତ ଶିଳ୍ପ ବିଭାଗ, ଓଡ଼ିଶା,**
**ଭୁବନେଶ୍ୱର ।**



*ସୁନ୍ଦରଗଡ଼ଠାରେ ଅନୁଷ୍ଠିତ ଉତ୍କଳ ପ୍ରସଙ୍ଗ ପାଠକ ସମାବେଶରେ ଉତ୍କଳ ପ୍ରସଙ୍ଗର ମୁଖ୍ୟ ସମ୍ପାଦକ ଶ୍ରୀ ରବୀନ ପାଣ୍ଡଙ୍କ ଉଦ୍‌ବୋଧନ ।*

# ମୟୂରଭଞ୍ଜ ଛଉ

• ଜାନକୀ ବଲ୍ଲଭ ଦାଶ

ଟୀକାବ ଅନୁସାରେ ବର୍ଷର ଶେଷ ମାସ 'ଚୈତ୍ର' ମାସକୁ ମଧୁମାସ କୁହାଯାଏ । ଏହି ସମୟରେ ମୟୂରଭଞ୍ଜ ଜିଲ୍ଲାର ଅନ୍ୟାନ୍ୟ ପର୍ବପର୍ବାଣୀ ମଧ୍ୟରେ 'ଭକ୍ତାପର୍ବ' ଓ ଛଉନୃତ୍ୟ ପ୍ରଧାନ । ଛଉନୃତ୍ୟର ଉଦ୍ଭବ ସମ୍ଭବତଃ, ଛଉ, ଛଇ, ଛବି ଅଥବା ଛାଉଣୀରୁ ହୋଇଛି ବୋଲି ବିଶ୍ୱାସ କରାଯାଏ । କେତେକଙ୍କ ମତରେ ଯୁଦ୍ଧ ପରେ ମୟୂରଭଞ୍ଜ ପାଇଁ ସାମରିକ ଛାଉଣୀରେ ଖଣ୍ଡା, ଢାଲ ଧରି ନୃତ୍ୟ କରାଯାଉଥିବାରୁ ଏହା ଛାଉଣୀ ଶବ୍ଦରୁ ଉତ୍ପତ୍ତି ବୋଲି କୁହାଯାଏ । ଅନ୍ୟ କେତେକଙ୍କ ମତରେ ନର୍ତ୍ତକମାନେ ବିଭିନ୍ନ ପ୍ରକାର ଅଙ୍ଗଭଙ୍ଗୀ ଦେଖାଇ ନୃତ୍ୟ କରୁଥିବାରୁ ଏହାକୁ 'ଛଉ' କହନ୍ତି । ଶାସ୍ତ୍ରୀୟ ନୃତ୍ୟ ଶୈଳୀରେ ନର୍ତ୍ତକମାନଙ୍କ ମୁହଁକୁ ମୁଖା ଦ୍ୱାରା ଆବୃତ୍ତ କଲେ ଠିକ୍ ରୂପେ ମୁଖମଣ୍ଡଳର ମନୋଭାବ ପରିପ୍ରକାଶ ହୋଇ ନଥାଏ । ମୟୂରଭଞ୍ଜ ଛଉନୃତ୍ୟରେ ସେଥିନିମନ୍ତେ ମୁଖା ବ୍ୟବହୃତ ହୁଏନାହିଁ ।

ପରମ୍ପରା ଅନୁଯାୟୀ ଦଶହରା ପର୍ବଦିନ ଦକ୍ଷିଣ ସାହି ଓ ଉତ୍ତର ସାହିର ଛଉନୃତ୍ୟ ଶିଳ୍ପୀ, ଓସ୍ତାଦମାନେ ଭୈରବ–ଭୈରବୀଙ୍କୁ ପୂଜାର୍ଚ୍ଚନା କରି ଡାହାଣ ହାତରେ ନାଲି ରଙ୍ଗର ସୂତା ବାନ୍ଧି ନୃତ୍ୟାଭ୍ୟାସ ପାଇଁ ଶପଥ କରନ୍ତି । ବହୁକାଳ ପୂର୍ବରୁ ନର୍ତ୍ତକମାନେ କାଣ୍ଡ ଗଛ ଓ ଆସ ଗଛର ଡାଳଧରି ନୃତ୍ୟ କରୁଥିବାରୁ ଏହାକୁ 'କାମଡ଼ାଲିଆ'–'ଆସ ଡାଳିଆ' ନୃତ୍ୟ କୁହାଯାଉଥିଲା । ମହାରାଜା ଯଦୁନାଥ ଭଞ୍ଜଦେଓଙ୍କ ସମୟରେ ଚୈତ୍ର ମାସରେ ଅନୁଷ୍ଠିତ ଏହି ନୃତ୍ୟକୁ 'ଚାମନବମୀ ନାଚ' କୁହାଯାଉଥିଲା । କିଛିବର୍ଷ ପରେ ଧଳଭୂମଗଡ଼ରୁ ମଦନମୋହନ ସିଂବାବୁଙ୍କୁ ଅଣାଯାଇ ଛଉନୃତ୍ୟ ପରି କେତେକ ନୃତ୍ୟ ଓ ବାଜା ମିଶାଇ ଏହି ନୃତ୍ୟକୁ ସମୃଦ୍ଧ କରିବା ପାଇଁ ଚେଷ୍ଟା କରାଯାଇଥିଲା । ୧୮୬୩ ମସିହା ପରେ ଛଉ, ରାମଲୀଳା ନୃତ୍ୟର ସ୍ଥାନ ଗ୍ରହଣ କରିଥିଲା । ଛଉନୃତ୍ୟର ପ୍ରବର୍ତ୍ତନ ପାଇଁ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ସମୟରେ ଶରେଇକେଲାରୁ ଓସ୍ତାଦ ଉପେନ୍ଦ୍ର ବିଶ୍ୱାଳ ଏବଂ ପରବର୍ତ୍ତୀ ସମୟରେ ବନମାଳୀ ଦାସଙ୍କୁ ଅଣାଇ ବିଧିବଦ୍ଧ ଭାବରେ ଉପସ୍ଥାପିତ କରାଯାଉଥିବାର ପ୍ରମାଣ ରହିଛି । ଛୋଟରାୟ ସାହେବ, ବୃନ୍ଦାବନ ଚନ୍ଦ୍ର ଭଞ୍ଜ, ଉତ୍ତର ସାହିର ମ୍ୟାନେଜର ଥାଇ ନିଜେ ଛଉନୃତ୍ୟ କରୁଥିଲେ । ସେହିପରି ଦକ୍ଷିଣ ସାହିର ମ୍ୟାନେଜର ଗୋକୁଳଚନ୍ଦ୍ର ଭଞ୍ଜଦେଓ ମଧ୍ୟ ନିଜେ ନୃତ୍ୟ କରୁଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ମୃତ୍ୟୁ ୧୮୮୨ରେ ହେବା ପରେ, ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଉଚ୍ଚଶିକ୍ଷା ଲାଭ ପାଇଁ ଗୋପବନ୍ଧୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ତତ୍ତ୍ୱାବଧାନରେ କଟକରେ ଅଧ୍ୟୟନ ସମୟରେ କେବଳ 'ନିଶାପର୍ବ' ଓ 'ପାଟାପର୍ବ' ଆସିବା ପୂର୍ବରୁ ନୃତ୍ୟ କରାଯାଇ, ମୟୂରଭଞ୍ଜରେ ଛଉନୃତ୍ୟକୁ ବଞ୍ଚାଇ ରଖାଯାଇଥିଲା । ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ସିଂହାସନରେ ଆରୋହଣ କରିବା ପରେ, ଛଉନୃତ୍ୟର ସାମଗ୍ରିକ ଉନ୍ନତି କରିବା ନିମନ୍ତେ ଅଧିକ ପ୍ରଯତ୍ନଶୀଳ ହୋଇପଡ଼ିଥିଲେ ।

ମୟୂରଭଞ୍ଜ ଛଉରେ ନୃତ୍ୟକାରୀଙ୍କୁ ଗୀତ ଗାଇବାକୁ ପଡ଼େ ନାହିଁ । ଏହାର ବାଦ୍ୟଯନ୍ତ୍ର ହିଁ ଭାବ–ପରିସ୍ଫୁଟନର ଏକମାତ୍ର ମାଧ୍ୟମ । ଏବେ ଛଉରେ ବିଦେଶୀ ବାଦ୍ୟସବୁ ମଧ୍ୟ ବ୍ୟବହାର କରାଯାଉଛି । ବାଦ୍ୟଯନ୍ତ୍ରଗୁଡ଼ିକର ତାଳରେ ନୃତ୍ୟକାରୀମାନେ ନିଜର ଅଙ୍ଗଭଙ୍ଗୀ ସୃଜନ କରିଥାଆନ୍ତି । ଛଉନୃତ୍ୟକାରୀମାନେ ବିଭିନ୍ନ ରଙ୍ଗ ବେରଙ୍ଗର ପୋଷାକ ବ୍ୟବହାର କରନ୍ତି । ନର୍ତ୍ତକମାନେ ମୁହଁରେ ବିଭିନ୍ନ ରଙ୍ଗ ବ୍ୟବହାର କରନ୍ତି । ଭିନ୍ନ ଭିନ୍ନ ନୃତ୍ୟ ପାଇଁ ସେମାନେ ଭିନ୍ନ ଭିନ୍ନ ପୋଷାକ ବ୍ୟବହାର କରନ୍ତି । ଛଉନୃତ୍ୟ ମୁକ୍ତାକାଶ ତଳେ ସାଧାରଣତଃ ଏକ ଉଚ୍ଚ ମଣ୍ଡପ ଉପରେ ପରିବେଷଣ କରାଯାଏ । ଛଉନୃତ୍ୟର ବିଷୟବସ୍ତୁ ସାଧାରଣତଃ କାଳ୍ପନିକ ବା ପୌରାଣିକ । ମହାଭାରତ, ରାମାୟଣ ଓ ଆଦିବାସୀ ଜୀବନର ସାଧାରଣ ଓ ଦୈନନ୍ଦିନ ଘଟଣାବଳୀକୁ ନେଇ ଛଉନୃତ୍ୟର ଶୈଳୀ ଆଧାରିତ । ଛଉନୃତ୍ୟର ପ୍ରତ୍ୟେକ ଶୈଳୀ ଅଧଘଣ୍ଟାରୁ ଏକଘଣ୍ଟା ପର୍ଯ୍ୟନ୍ତ ଚାଲେ । କେତେକ ମୁଖ୍ୟ ଶୈଳୀର ଛଉନୃତ୍ୟର ନାମ ହେଉଛି–ନଟରାଜ, କିରାତାର୍ଜ୍ଜୁନ, ତାମ୍ପୁଡ଼ିଆ କୃଷ୍ଣ, ବାଉନ କୃଷ୍ଣ, ମାୟା–ଶବରୀ, ଗରୁଡ଼ ବାହାନ, ରଙ୍ଗିଆ–କୃଷ୍ଣ, ଶିକାରୀ ନୃତ୍ୟ, ମୟୂର ନୃତ୍ୟ, ପ୍ରଜାପତି, ଜାୟଦେବ, ମତ୍ସ୍ୟମାୟା, ଅଚଲ–ସଲାମୀ, ଅର୍ଘାସୁର ବଧ, ମଧୁରମିଳନ, ଗର୍ବଗଞ୍ଜନ ଆଦି ପ୍ରଧାନ । ଛଉନୃତ୍ୟରେ ଏକକିଆ, ଦୁଇଜଣିଆ, ତିନିଜଣିଆ ଓ ଦଳବଦ୍ଧ ନୃତ୍ୟ ଗବେଷଣା କରାଯାଏ । ଦଳବଦ୍ଧ ନୃତ୍ୟରେ ଷୋଳ କିମ୍ବା ବତିଶ ଜଣ କିମ୍ବା ଚଉଷଠି ଜଣ ଅଂଶ ଗ୍ରହଣ କରିଥାଆନ୍ତି ।

ମୟୂରଭଞ୍ଜ ଛଉରେ ଉପଯୋଗ ହେଉଥିବା କେତେକ 'ଟେକ୍‌ନିକ୍' ଗୁଡ଼ିକ ହେଉଛି, ଚୌକ, ଧାରଣ, ଟବକା, ଏବଂ ଉଫଲି । ଟବକାଗୁଡ଼ିକ ହେଉଛି–ସାଧା, ଲହରା, ଡୁବା, ଉଷକା, ଢେଉ, ମୁଦ୍ରା ଇତ୍ୟାଦି । ଉଫଲିଗୁଡ଼ିକ ହେଉଛି–ଗୁଡିଉଠା, ଗୋବରଗଲା, ଖଗଲା, ଛୁଣିଦିଆ, ବାସନମଜା, ହଳଦୀବଟା, ଶାଧୁଆ, ମଥାଝଡ଼ା, ସିନ୍ଥାପାଡ଼ା, ସିନ୍ଦୁରପେନ୍ଧା, ଧାନକୁଟା, ଧାନପାଛୁଡ଼ା ଇତ୍ୟାଦି ପ୍ରଧାନ ।

୧୯୧୨ରେ ସମ୍ରାଟ ଜର୍ଜ ଭାରତକୁ ଆସିଥିଲା ବେଳେ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ପୃଷ୍ଠପୋଷକତାରେ ଏକ ସମର ନୃତ୍ୟ ପ୍ରଦର୍ଶନ କରାଯାଇଥିଲା । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ପରେ, ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ରାଜତ୍ୱ କାଳରେ ସେ ହଠାତ୍ ଛଉନୃତ୍ୟ ପ୍ରତି ବୀତସ୍ପୃହ ହୋଇ, ଛଉ ପାଇଁ ଉଦ୍ଦିଷ୍ଟ ଥିବା ସମସ୍ତ ଅନୁଦାନକୁ ବନ୍ଦ କରିଦେଇଥିଲେ । ପରେ ୧୯୨୮ରେ ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜଦେଓ ଶାସନରେ ଅଧିଷ୍ଠିତ ହେବାପରେ, ଛଉନୃତ୍ୟର ପୁନରୁଦ୍ଧାର ପାଇଁ ବିଶେଷ ପ୍ରଯତ୍ନଶୀଳ ହୋଇଥିଲେ । ତାଙ୍କ ସମୟରେ ଛଉର ଓସ୍ତାଦ, ନୃତ୍ୟଗୁରୁ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ ନେଇ ମୟୂରଭଞ୍ଜ ଛଉର ଏକ ଉପଦେଷ୍ଟା ମଣ୍ଡଳୀ ଗଠିତ ହୋଇଥିଲା । ନୂତନ ବିଷୟବସ୍ତୁରେ ମୟୂରଭଞ୍ଜ

ଛଉର ଶୈଳୀ ପୁନର୍ବାର ଆଧାରିତ ହେବା ଫଳରେ, ଏହା ସରେଇକଳା ଓ ଖରସୁଆଁ ଛଉଠାରୁ ଭିନ୍ନ ଏକ ସ୍ୱତନ୍ତ୍ରତା ଲାଭ କରିଥିଲା । ପ୍ରତାପଚନ୍ଦ୍ର ଭଞ୍ଜଦେଓଙ୍କ ସମୟରେ ଛଉରୁ ପାଶ୍ଚାତ୍ୟ ସଙ୍ଗୀତକୁ ବାଦ ଦିଆଯାଇଥିଲା ।

ଅପ୍ରେଲ ୧୯୪୮ ମସିହାର ଚୈତ୍ରପର୍ବ ପରେ ମହାରାଜା ଛଉନୃତ୍ୟରୁ ଦୂରେଇ ଗଲେ । ଏହାପରେ ଛଉପ୍ରେମୀ ରମେଶ ଚନ୍ଦ୍ର ମହାପାତ୍ର ଏହାର ତତ୍ତ୍ୱାବଧାରକ ରୂପେ କିଛିବର୍ଷ କାର୍ଯ୍ୟ କରିଥିଲେ । ସେହି ସମୟରେ ମୟୂରଭଞ୍ଜର ତତ୍କାଳୀନ ଜିଲ୍ଲାପାଳ ମାସିକ ୪୫ ଟଙ୍କାରୁ ୨୫ ଟଙ୍କା ହିସାବରେ ୧୬ ଜଣ ନର୍ତ୍ତକ, ୧୦ ଜଣ ଓସ୍ତାଦ, ୬ ଜଣ ସଂଗୀତକାର ନିଯୁକ୍ତି ଦେଇଥିଲେ । ଦେଶର ପ୍ରଥମ ଓ ଶେଷ ଭାରତୀୟ ଗଭର୍ଣ୍ଣର ଜେନେରାଲ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ୧୯୪୯ ମସିହା ଡିସେମ୍ବର ୭ ତାରିଖରେ ଅନୁଷ୍ଠିତ ପୁରୀର ଏକ ସ୍ୱତନ୍ତ୍ର ଉତ୍ସବରେ ଛଉନୃତ୍ୟରେ ବିମୁଗ୍ଧ ହୋଇ ରୌପ୍ୟଧାତବ ଫଳକ ସହ ପାଞ୍ଚଶହ ଟଙ୍କା ପୁରସ୍କାର ପ୍ରଦାନ କରିଥିଲେ ।

ଉତ୍କଳଦିବସ ୧୯୬୩ରୁ ମୟୂରଭଞ୍ଜ ଛଉକୁ ରାଜ୍ୟ ସରକାରଙ୍କ ତରଫରୁ ପ୍ରଥମଥର ପାଇଁ ଅନୁଦାନ ମିଳିଥିଲା । ଏହାର ସ୍ଥାୟୀ ପରିଶୀଳନା ପାଇଁ ତତ୍କାଳୀନ ରାଜ୍ୟ ସଂଗୀତ ନାଟକ ଏକାଡେମୀର ଅଧିକାରୀ ଶ୍ରୀ ଧୀରେନ୍ ଦାଶ ଛଉନୃତ୍ୟର ବିକାଶ ଓ ସୁରକ୍ଷା ପାଇଁ ଲେଖନୀ- ପରିଶୀଳନା କରିଥିଲେ । ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କୁ ଏହାର ବିକାଶ ପାଇଁ ଦଶ ହଜାର ଟଙ୍କା ପ୍ରଦାନ କରିଥିଲେ । ମୟୂରଭଞ୍ଜ ଛଉନୃତ୍ୟର କଳାତ୍ମକ ମୂଲ୍ୟ ବୃଦ୍ଧିରେ ଜିଲ୍ଲାପାଳ ଶ୍ରୀ ସୀତାକାନ୍ତ ମହାପାତ୍ର, ବିବେକାନନ୍ଦ ପଟ୍ଟନାୟକ, ଧୀରେନ୍ଦ୍ରନାଥ ପାଢ଼ୀ, ସନ୍ତୋଷକୁମାର ନୌଟିଆଲ, ଗୋକୁଳଚନ୍ଦ୍ର ପତି, ହାତ୍ମାସିଂହେର, ଜଗଦାନନ୍ଦ ପଣ୍ଡା, ଓ ବର୍ତ୍ତମାନର ଜିଲ୍ଲାପାଳ ଶ୍ରୀ ବିପିନ୍‌କୁମାର ସାକ୍‌ସେନା ପ୍ରମୁଖ ଉଲ୍ଲେଖନୀୟ ପଦକ୍ଷେପମାନ ଗ୍ରହଣ କରିଆସିଅଛନ୍ତି ।

୧୯୮୦-୮୧ରେ ବାରିପଦାଠାରେ 'ମୟୂରଭଞ୍ଜ ଚଉନୃତ୍ୟ ପ୍ରତିଷ୍ଠାନ' ପ୍ରତିଷ୍ଠା କରାଯାଇ, ଏହାର ସ୍ଥାୟୀ ଓ ବିଧିବଦ୍ଧ ବିକାଶ ନିମନ୍ତେ ଉଦ୍ୟମ ହୋଇ ଆସୁଅଛି । ମୟୂରଭଞ୍ଜ ଛଉର ଅଭିବୃଦ୍ଧି ଓ ବିକାଶ ନିମନ୍ତେ ଗବେଷକ, ସାମ୍ବାଦିକ, ଶ୍ରୀ କାଶୀନାଥ ବାରିକ, ନିମାଇଁ ମହାନ୍ତି, ହେମନ୍ତକୁମାର ଦାଶ, ପ୍ରମୁଖଙ୍କ ଉଦ୍ୟମ ପ୍ରଶଂସନୀୟ ।

---

ସାମ୍ବାଦିକ,
ଶ୍ରୀରାମଜୀଉ ଭବନ, ଟେମ୍ପଲଷ୍ଟ୍ରୀଟ୍,
ବାରିପଦା-୭୫୭୦୦୧ ।





ବ୍ରହ୍ମପୁରଠାରେ ଅନୁଷ୍ଠିତ ଜିଲ୍ଲା ଯୋଜନା ଓ ଉନ୍ନୟନ ପରିଷଦ ବୈଠକରେ ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ଅଧ୍ୟକ୍ଷତା କରୁଛନ୍ତି ।

# ଦ୍ୱିତୀୟ ଜାଲିଆନାୱାଲାବାଗର କାହାଣୀ

• ପ୍ରଫେସର ଜଗନ୍ନାଥ ପଟ୍ଟନାୟକ

ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସ ଏକ ଗୌରବ ଗାରିମାମୟ କାହାଣୀ। ଉକ୍ତ ସଂଗ୍ରାମରେ କେତେ ଯେ ଆନ୍ଦୋଳନ, ବିପ୍ଳବ ଓ ଲୋମହର୍ଷଣକାରୀ ଘଟଣା ସଂଘଟିତ ହୋଇଛି ତା'ର କଳନା ନାହିଁ। ତନ୍ମଧ୍ୟରୁ ୧୯୪୨ ମସିହାରେ ସଂଘଟିତ ଭାରତ ଛାଡ଼ ଆନ୍ଦୋଳନ ସ୍ୱାଧୀନତା ସଂଗ୍ରାମ ଇତିହାସରେ ସର୍ବାପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ଘଟଣାରୂପେ ସୁବିଦିତ। ଫଳାଫଳ ଦୃଷ୍ଟିରୁ ଏହା ଆମଦେଶର ଇତିହାସରେ ଫରାସୀ ବିପ୍ଳବ ଓ ରୁଷ ବିପ୍ଳବର ସ୍ଥାନ ଅଧିକାର କରିଥାଏ। ଏହି ଆନ୍ଦୋଳନରେ ଭାରତର ଅନ୍ୟାନ୍ୟ ଅଞ୍ଚଳର ଅଧିବାସୀଙ୍କ ପରି ଓଡ଼ିଶାବାସୀ ଏକ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ। ବିଶେଷତଃ ଭଦ୍ରକ ସବ୍‌ଡିଭିଜନ ଅନ୍ତର୍ଗତ ଇରମ ଅଞ୍ଚଳରେ ଏହି ଆନ୍ଦୋଳନ ଏକ ଅଭୂତପୂର୍ବ ରୂପ ଧାରଣ କରି ପରିଶେଷରେ ୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖ ଦିନ ଏକ ମର୍ମନ୍ତୁଦ ଘଟଣାରେ ପରିସମାପ୍ତି ହୋଇଥିଲା। ପୋଲିସ ଫୌଜ ଗୁଳିଚାଳନାରେ ୨୯ ଜଣଙ୍କର ପ୍ରାଣ ନେବା ସଙ୍ଗେ ସଙ୍ଗେ ୫୬ ଜଣଙ୍କୁ ଆହତ କରିଥିଲେ। ତାହା ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏକ ହୃଦୟବିଦାରକ କାହାଣୀ।

ଭଦ୍ରକ ସବ୍‌ଡିଭିଜନର ବାସୁଦେବପୁର ଥାନା ଅନ୍ତର୍ଗତ ଇରମ ହେଉଛି ଏକ ସୁପ୍ରତିଷ୍ଠିତ ଗ୍ରାମ। ଉକ୍ତ ଗ୍ରାମର ଅନ୍ୟ ଅଞ୍ଚଳ ଅପେକ୍ଷା ଇରମରେ ଜନଜାଗରଣର ତରଙ୍ଗ ସ୍ରୋତ ଅଧିକ ପ୍ରଖର ହୋଇଥିଲା। ଅବଶ୍ୟ ତା' ମୂଳରେ କେତୋଟି କାରଣ ନିହିତ। ତା'ର ଗହନ କଥା ବାସୁଦେବପୁର ଥାନାର ଇତିହାସରେ ଏକ ରହସ୍ୟ ବିଜଡ଼ିତ ଅଧ୍ୟାୟ।

୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖ ଦିନ ଇରମରେ ସଂଘଟିତ ଲୋମହର୍ଷଣକାରୀ, ଅମାନୁଷିକ ଓ ନାରକୀୟ ଗୁଳିକାଣ୍ଡ ସେଦିନର ଆକସ୍ମିକ ଘଟଣା ନଥିଲା। ଏହାର ପୃଷ୍ଠଭୂମିରେ ବହୁ ଘଟଣା ନିହିତ। ସେହି ବର୍ଷ ଅଗଷ୍ଟ ୨୬ ତାରିଖଠାରୁ ଇରମ ଭୂମିରେ ଉକ୍ତ ଆନ୍ଦୋଳନ ଏକ ନୂତନ ରୂପ ଧାରଣା କରିଥିଲା। ସେହିଠାରୁ ଇରମର ମେଳନ ପଡ଼ିଆରେ ସତ୍ୟାଗ୍ରହୀମାନେ ମିଳିତ ହୋଇ ବିଭିନ୍ନ କାର୍ଯ୍ୟକ୍ରମ କରିବା ପୂର୍ବକ ତାହା ପାଳନ କରୁଥିଲେ।

ତନ୍ମଧ୍ୟରୁ ଚୌକିଦାର, ଦଫାଦାରଙ୍କର ପୋଷାକ ପୋଡ଼ିବା, ହାଟ ଓ ଶିକ୍ଷାନୁଷ୍ଠାନରେ ହରତାଳ ପାଳନ କରିବା, ବାସୁଦେବପୁର ଥାନା ପୋଡ଼ିବା ପାଇଁ ପଦକ୍ଷେପ ଗ୍ରହଣ କରିବା, ବାସୁଦେବପୁରର ତତ୍କାଳୀନ ୟୁନିୟନ ପ୍ରେସିଡେଣ୍ଟ ନାରାୟଣ ମାନ୍ଧାତା ଜଣେ ଉଗ୍ର ପ୍ରକୃତିର ବ୍ୟକ୍ତି ଥିବାରୁ ତାଙ୍କୁ ନିଜ ପଦରୁ ଇସ୍ତଫା ଦେବା ପାଇଁ ବାଧ୍ୟ କରିବା, ତାଙ୍କର କାଗଜ ପତ୍ର ସର୍ବସାଧାରଣରେ ପୋଡ଼ି ପକାଇବା ଓ ତାଙ୍କ ଘରର ଝରକା ଭାଙ୍ଗିବା ଏବଂ ତତ୍କାଳୀନ ଜମିଦାର ରାଧାକାନ୍ତ ପାତ୍ରଙ୍କର ପଛୁଆଁସ୍ଥିତ ଅମାର ଭାଙ୍ଗିବା ଆଦି କାର୍ଯ୍ୟକ୍ରମ ଥିଲା ଉଲ୍ଲେଖଯୋଗ୍ୟ। ମାତ୍ର ତନ୍ମଧ୍ୟରୁ ଗୋଟିଏ କାର୍ଯ୍ୟକ୍ରମ ଥିଲା ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ। ତାହାଥିଲା ଇରମ ଅଞ୍ଚଳର ଏକ ସମାନ୍ତରାଳ ସ୍ୱାଧୀନ ସରକାର ଗଠନ। ୧୯୯୨ ମସିହା ସେପ୍ଟେମ୍ବର ୧୭ ତାରିଖ ଦିନ (ଇରମ ଗୁଳିକାଣ୍ଡର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ)। ଇରମର ମେଳନ ପଡ଼ିଆରେ ଏପରି ଏକ ସରକାର ଗଠନର ନିଷ୍ପତ୍ତି ନିଆଯାଇ ତାକୁ ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କର ନାମାନୁସାରେ 'ସ୍ୱାଧୀନ ବାଞ୍ଛାନିଧି ଚକଲା' ଘୋଷଣା କରାଯାଇଥିଲା। ୬ଟି ପଞ୍ଚାୟତକୁ ନେଇ ଚକଲାର ଆୟତନ ଥିଲା ୧୯ ବର୍ଗ ମାଇଲ। ଉତ୍ତରରେ କାଂଶବାଂଶ ନଦୀଠାରୁ ଦକ୍ଷିଣରେ ଗମେଇ ନଦୀ ପର୍ଯ୍ୟନ୍ତ, ପୂର୍ବରେ ବଙ୍ଗୋପସାଗରଠାରୁ ପଶ୍ଚିମରେ କାଂଶବାଂଶ ନଦୀ ପର୍ଯ୍ୟନ୍ତ ଏହାର ଥିବା ଚତୁଃସୀମା। ଏଥିରେ ମୋଟ ୨୬ଟି ଗ୍ରାମ ଅନ୍ତର୍ଭୁକ୍ତ ହୋଇଥିଲା।

ଏହାପରେ ଇରମ ଅଞ୍ଚଳର ଘଟଣାଗୁଡ଼ିକ କ୍ଷିପ୍ରଗତିରେ ଗଡ଼ି ଚାଲିଲା। ଏହାଥିଲା ୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖ ସୋମବାର ଦିନର ଘଟଣା। ୟୁନିୟନ ପ୍ରେସିଡେଣ୍ଟଙ୍କର ଝରକା ଭାଙ୍ଗିବା ତଥା ଜମିଦାରଙ୍କର ପଛୁଆଁସ୍ଥିତ ଅମାର ଭାଙ୍ଗିବା ପାଇଁ ଧମକ ଆଦି ତଦାରଖ କରିବା ସଙ୍ଗେ ସଙ୍ଗେ ଅଗଷ୍ଟ ଆନ୍ଦୋଳନର ପୁରୋଭାଗରେ ଥିବା ନେତାଙ୍କୁ ଗିରଫ କରିବା ପାଇଁ ବାସୁଦେବପୁର ଥାନାରୁ ଏକ ପୋଲିସ ଫୌଜ ଡି.ଏସ.ପି. କୁଞ୍ଜବିହାରୀ ମହାନ୍ତିଙ୍କ ଅଧିନାୟକତ୍ୱରେ ଇରମ ଅଭିମୁଖେ ଯାତ୍ରା କରିଥିଲେ। ସେଥିରେ ୨୮ ଜଣ ପୋଲିସ ଫୌଜ, ଜଣେ ଅସ୍ଥାୟୀ ଗୋଇନ୍ଦା ପୋଲିସ, ଜଣେ ଜମାଦାର, ଜଣେ ଇନ୍‌ସପେକ୍ଟର, ଜଣେ ସବ୍‌ଇନ୍‌ସପେକ୍ଟର ରହିଥିଲେ। ସେମାନେ ଗମେଇ ନଦୀଘାଟରେ ପହଞ୍ଚି ନାଉରିଙ୍କୁ ପାର କରିବାକୁ କହିବାରୁ ସେ ତାହା କରି ନ ଥିଲେ। ଶେଷରେ ନିଜେ ଡଙ୍ଗାବାହି ପୋଲିସ ଫୌଜ ଇରମ ଅଭିମୁଖେ ଯାତ୍ରା କରିଥିଲେ। ଏହା ଦେଖି ପୂର୍ବରୁ କଂଗ୍ରେସ ନେତାଙ୍କର ନିର୍ଦ୍ଦେଶାନୁଯାୟୀ ଶଙ୍ଖଧ୍ୱନି କରାଯାଇଥିଲା। ସେତେବେଳେ କୌଣସି ସମୟରେ ପୋଲିସ ବା ଇଂରେଜ କର୍ମଚାରୀ ଆସୁଥିବାର ଦେଖିଲେ ବିପଦର ସଙ୍କେତ ରୂପେ ଶଙ୍ଖଧ୍ୱନି କରିବାର ନିଷ୍ପତ୍ତି ନିଆଯାଇଥିଲା। ଫଳରେ ଚତୁର୍ଦ୍ଦିଗରୁ ଜନତାର ସ୍ରୋତ ଛୁଟିଥିଲା ଇରମ ଆଡ଼କୁ। ଦେଖୁଁ ଦେଖୁଁ ଇରମର ମେଳନ ପଡ଼ିଆରେ ୬,୦୦୦ରୁ ୭,୦୦୦ ଲୋକ ସମବେତ ହୋଇ ଯାଇଥିଲେ। ପୋଲିସ ଫୌଜ ପ୍ରାୟ ସନ୍ଧ୍ୟା ୬ଟାରେ ଇରମରେ ପହଞ୍ଚି ଜମିଦାରଙ୍କ ଘରେ ବିଶ୍ରାମ ନେଇଥିଲେ। ପଛରେ ପୋଲିସ ଫୌଜଙ୍କ ବିଛଣାପତ୍ର ଧରି ଆସୁଥିଲେ ଚୌକିଦାର ଓ ଅସ୍ଥାୟୀ ଗୋଇନ୍ଦା ପୋଲିସ। ତାହାଦେଖି ସଭାସ୍ଥଳରେ ୨ ଜଣ ସତ୍ୟାଗ୍ରହୀ 'ଗୋଲାମୀମାନଙ୍କର ବେଡ଼ିଂ ତୁମେ ନେଇପାରିବ ନାହିଁ ବୋଲି କହି ତାହା ତାଙ୍କଠାରୁ ଛଡ଼ାଇ ନେଇଥିଲେ। ଠିକ୍ ପରେ ପରେ ଉଭୟ ଚୌକିଦାର ଓ ଅସ୍ଥାୟୀ ଗୋଇନ୍ଦା ପୋଲିସ ଜମିଦାରଙ୍କ ବାସଭବନକୁ ଯାଇ ପୋଲିସ ଫୌଜଙ୍କ ଆଗରେ କାନ୍ଦାକାଟି ହୋଇ ତଳେ ଗଡ଼ିଯିବାର

ବାହାନା କରି ବୟାନ କରିଥିଲେ ଯେ ବେଢ଼ିଂ ଛଡ଼ାଇ ନେବା ସଙ୍ଗେ ସଙ୍ଗେ ତାଙ୍କୁ ବହୁସଂଖ୍ୟକ ଲୋକ ଘେରିଥିଲେ ମାରିଦେବା ପାଇଁ । ମାତ୍ର ଏହା ଯେ ସମ୍ପୂର୍ଣ୍ଣ ମିଥ୍ୟା ଏଥିରେ ସନ୍ଦେହ ନାହିଁ । ବରଂ ବିଚ୍ଛଣାପଣ୍ଡଙ୍କୁ ନିରାପଦରେ ରଖିବା ପାଇଁ ସେମାନେ ସ୍ୱେଚ୍ଛାସେବୀଙ୍କୁ ମୁତୟନ କରିଥିଲେ । ଏହି ଖବର ପାଇ ଏହାର ସତ୍ୟାସତ୍ୟ ଅନୁସନ୍ଧାନ ନ କରି ପୋଲିସ ସବ୍‌ଇନ୍‌ସ୍‌ପେକ୍ଟର କହିଥିଲେ –'ଟୁଡ଼େ ସିଓର ଫାୟାର' ଅର୍ଥାତ୍ ଆଜି ନିଶ୍ଚିତ ଗୁଳି ଚାଲିବ । ସେହିପରି ଡ଼ି.ଏସ୍.ପି. ଚଣ୍ଡହୁଙ୍କାର ଦେଇ କହିଥିଲେ– ଆଜି ମୁଁ ନରମେଧ ଯଜ୍ଞ କରିବି । ଠିକ୍ ପରେ ପରେ ପୋଲିସ ଫୌଜ ସଭାସ୍ଥଳରେ ପହଞ୍ଚି ଯାଇଥିଲେ । ଏହା ଠିକ୍ ସନ୍ଧ୍ୟା ୬-୩୦ ସମୟର କଥା । ସୂର୍ଯ୍ୟ ଅସ୍ତଗାମୀ ହେବାକୁ ଯାଉଥାଆନ୍ତି । ସଭାସ୍ଥଳରେ ସେମାନେ ପହଞ୍ଚିବାର ଦେଖି ଉପସ୍ଥିତ ଜନତା କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଥିଲେ ।

ପଡ଼ିଆର ତିନିଦିଗ ଏକପ୍ରକାର ରୁଦ୍ଧ ହୋଇଥିବାରୁ ଗୋଟିଏ ମାତ୍ର ଗୋହିରୀ ରାସ୍ତାରେ ସେମାନେ ଯିବାକୁ ଉଦ୍ୟମ କରିଥିଲେ ମଧ୍ୟ ସେହି ଦିଗରୁ ପୋଲିସ ଆସୁଥିବାରୁ ତାହା ସମ୍ଭବପର ହୋଇପାରି ନ ଥିଲା । ଏହି ସମୟରେ ଡ଼ି.ଏସ୍.ପି.ଙ୍କ ଆଦେଶକ୍ରମେ ପୋଲିସ ଗୁଳିଚାଳନା କରିଥିଲେ । ଫଳରେ ଘଟଣାସ୍ଥଳରେ ୨୮ ଜଣ ଢଳିପଡ଼ିଥିଲେ ଓ ଆଉ ୩ ଜଣଙ୍କର ମୃତ୍ୟୁ ହୋଇଥିଲା କୋରାପୁଟ ଜେଲରେ । ଏଥିସହିତ ୫୬ ଜଣ ଲୋକ ମଧ୍ୟ ଆହତ ହୋଇଥିଲେ । ସେମାନେ ସର୍ବମୋଟ ୩୦୪ ଗୁଳି ମାରିଥିବାର ଜଣାଯାଏ ।

ଏହିପରି ଭାବେ ସୂର୍ଯ୍ୟଙ୍କର ଶେଷ ରଶ୍ମିର ଛଟାରେ ମେଳନପଡ଼ିଆ ଲାଲ ରଙ୍ଗରେ ଆବୃତ୍ତ ହେବା ସଙ୍ଗେ ସଙ୍ଗେ ଗୁଳିସ୍ଥଳରେ ମୃତ ଓ ଆହତ ଜନତାଙ୍କର ରକ୍ତରେ ଉକ୍ତ ପଡ଼ିଆ ରଞ୍ଜିତ ହୋଇଥିଲା । ଏପରି କି କିଛି ରକ୍ତ ବୋହିଯାଇ ନିକଟବର୍ତ୍ତୀ ପୋଖରୀରେ ପଡ଼ିଥିବାର ଦେଖା ଯାଇଥିଲା । ଉକ୍ତ ଦୃଶ୍ୟଥିଲା ଲୁହ ଓ ଲହୁର ଏକ କରୁଣ ସମାବେଶ । କେବଳ ମାତ୍ର ଅଧଘଣ୍ଟାକ ମଧ୍ୟରେ ସବୁ ଘଟଣା ଶେଷ ହୋଇଗଲା । ପ୍ରକୃତପକ୍ଷେ ଆହତ ବ୍ୟକ୍ତିଙ୍କର କରୁଣ ଓ ମର୍ମନ୍ତୁଦ ଆର୍ତ୍ତନାଦ ଓ ଚିତ୍କାରରେ ମେଳନ ପଡ଼ିଆର ବାୟୁମଣ୍ଡଳ ବେଦନା ବିଧୁର ହୋଇ ଉଠିଥିଲା । ସେଠାରେ ପାଣିଟୋପାଏ ବି ଦେବାକୁ କେହି ନ ଥିଲେ ।

ପଡ଼ିଆରେ ମଧ୍ୟ ପୋଲିସର ଚରମ ଅମାନୁଷିକତା ପ୍ରକାଶ ପାଇଥିଲା । ପୋଲିସ ଗୁଳିରେ ଯେଉଁମାନେ ମୁମୂର୍ଷୁ ଅବସ୍ଥାରେ ପଡ଼ି ରହିଥିଲେ, ପୋଲିସ ଫୌଜ ସଙ୍ଗୀନ ମୁନରେ ସେମାନଙ୍କୁ ଭୁଷି ମାରି ଦେଇଥିଲେ । ତାଙ୍କର ଅମାନୁଷିକତା ମଧ୍ୟ ପ୍ରକାଶ ପାଇଥିଲା ସମବେତ ନିରୀହ ସ୍ତ୍ରୀଲୋକଙ୍କଠାରେ । ସେମାନଙ୍କୁ ଗୋଡ଼ାଇ ଗୋଡ଼ାଇ ମାରିବା ସଙ୍ଗେ ସଙ୍ଗେ ଗୁଳିମାରିବାକୁ ମଧ୍ୟ ପୋଲିସ ଫୌଜ କୁଣ୍ଠା ପ୍ରକାଶ କରି ନ ଥିଲେ । ଗୁଳିମାଡ଼ରେ ଛମେଳ ପରିବେଣ୍ଣା ନାମ୍ନୀ ସ୍ତ୍ରୀର ମୃତ୍ୟୁ ହୋଇଥିଲା । ସେହିପରି ଚରମ ଅମାନୁଷିକତା ପ୍ରକାଶ ପାଇଥିଲା ଅନ୍ୟ ଏକ କ୍ଷେତ୍ରରେ । ପ୍ରଥମ ଗୁଳିମାଡ଼ ଖାଇ ଜନୈକ ସତ୍ୟାଗ୍ରହୀ ଅନୁରୋଧ କରିଥିଲେ ଆଉ ଗୁଳି ନ ମାରିବା ପାଇଁ । ଛାତିରୁ ବୋହୁଥିବା ରକ୍ତକୁ ଚିପି ହାତଯୋଡ଼ି ପୋଲିସମାନଙ୍କୁ ବୁଝାଉଥିଲେ ଯେ, ତୁମ ପାଇଁ ମଧ୍ୟ ସ୍ୱାଧୀନତା ଆସିବ ଓ ତୁମର ଭଲ ହେବ, ଏବେ ଗୁଳି ବନ୍ଧୁକ ରଖି ଦିଅ । ଏହା କହୁଥିବା ସମୟରେ ପୁଣି ତାଙ୍କ ଦେହକୁ ଲକ୍ଷ୍ୟକରି ଗୁଳି ମରାଯାଇଥିଲା ଓ ସେହିଠାରେ ହିଁ ସେ ମୃତ୍ୟୁବରଣ କରିଥିଲେ ।

ଇତିମଧ୍ୟରେ ଗୁଳି ଖବର ଚତୁର୍ଦ୍ଦିଗକୁ ବିଜୁଳି ବେଗରେ ବ୍ୟାପୀ ଯାଇଥିଲା । ତେଣୁ ସେପର୍ଯ୍ୟନ୍ତ ଘରେ ପହଞ୍ଚି ନ ଥିବାବ୍ୟକ୍ତିଙ୍କ ଆତ୍ମୀୟସ୍ୱଜନମାନଙ୍କର ସୁଅ ଛୁଟିଥିଲା ମେଳନ ପଡ଼ିଆକୁ । ମୃତ ବ୍ୟକ୍ତିଙ୍କର ଆତ୍ମୀୟସ୍ୱଜନମାନଙ୍କର ମେଳନ ପଡ଼ିଆରେ ସେହି କାଳରାତ୍ରିର କି ବୁକୁଫଟା କ୍ରନ୍ଦନ । କେତେ ନବବିବାହିତା ରୂପସୀ ପ୍ରିୟା ନିଜର ସ୍ୱାମୀଙ୍କୁ, କେତେ ବୃଦ୍ଧା ସେମାନଙ୍କର ପ୍ରାଣର ସନ୍ତାନଙ୍କୁ ହରାଇ ପାଗଳ ପରି ପଡ଼ିଆରେ ଯେଉଁ ଆର୍ତ୍ତନାଦ କରୁଥିଲେ ତା'ର ଦୃଶ୍ୟ ଥିଲା ଖୁବ୍ କରୁଣ ଓ ହୃଦୟବିଦାରକ । ସେହି ସମୟରେ ଆକାଶମାର୍ଗରେ ଖୁବ୍ ନିକଟରେ ଗୋଟିଏ ଉଡାଯାହାଜ ଉଡୁଥିବାର ଦେଖି ଲୋକମାନେ ଅଧିକ ଭୟଭୀତ ହୋଇଯାଇଥିଲେ । ସେଠାରେ ପଡ଼ିଥିବା ଶବଗୁଡ଼ିକ ମଧ୍ୟରୁ ୧୧ଟି ଆତ୍ମୀୟସ୍ୱଜନମାନେ ନିଜ ନିଜ ଘରକୁ ନେଇଯାଇଥିଲେ ଅନ୍ୟମାନଙ୍କର ଶେଷ ଦର୍ଶନ ନିମିତ୍ତ । ଅନ୍ୟ ୧୭ଟି ଶବ ଏକତ୍ର କରି ରଖାଯାଇଥିଲା । ଘଟଣାର ୩ ଦିନ ପରେ ଉତ୍ତରକ ଡାକ୍ତରଖାନାରୁ ଆସିଷ୍ଟାଣ୍ଟ ସର୍ଜନ ଆସି ନିୟମକୁ ଆଖିଠାରି ଶବ ବ୍ୟବଚ୍ଛେଦ କରିବା ପରେ ସେଗୁଡ଼ିକୁ ପଡ଼ିଆର ଅନତିଦୂରରେ ପୋତିଦିଆଯାଇଥିଲା ।

ଜଘନ୍ୟ ନରସଂହାର ପରେ ଇରମରେ ଅଗଷ୍ଟ ବିପ୍ଳବ ନାଟକଟିର ବିରତି ହୋଇ ନ ଥିଲା । ଗୁଳିକାଣ୍ଡର ଠିକ୍ ପରେ ପରେ ଆରମ୍ଭ ହୋଇଥିଲା ପୋଲିସଙ୍କ ଦମନନୀତିର ନାରକୀୟ କାଣ୍ଡ । ତା'ସହିତ ଆରମ୍ଭ ହୋଇଥିଲା ବ୍ୟାପକ ଗିରଫଦାରୀ ।

ଏହାଥିଲା ଭାରତର ସ୍ୱାଧୀନତା ସଂଗ୍ରାମର ଓଡ଼ିଶାରେ ଏକ ହୃଦୟବିଦାରକ କାହାଣୀ । ଇରମରେ ସଙ୍ଘଟିତ ଗୁଳିକାଣ୍ଡ ପାଇଁ ଉକ୍ତ ସ୍ଥାନକୁ ଭାରତର ଦ୍ୱିତୀୟ ଜାଲିଆନାୱାଲାବାଗ କହିଲେ ଅତ୍ୟୁକ୍ତି ହେବନାହିଁ । ଭାରତ ଛାଡ଼ ଆନ୍ଦୋଳନ ସମୟରେ ଗୋଟିଏ ସ୍ଥାନରେ ଏତେ ସଂଖ୍ୟକ ଲୋକ ପୋଲିସ ଗୁଳିରେ ଭାରତର ଅନ୍ୟ କୌଣସିଠାରେ ମୃତାହତ ହୋଇନାହାନ୍ତି । ଉଭୟ ଜାଲିଆନାୱାଲାବାଗ ଓ ଇରମର ପରିବେଶ ମଧ୍ୟ ଥିଲା ପ୍ରାୟ ଏକ ପ୍ରକାର । ଜାଲିଆନାୱାଲାବାଗ ପରି ଇରମରେ ମଧ୍ୟ ସେଦିନ ଲୋକେ ଶାନ୍ତିପୂର୍ଣ୍ଣ ଭାବେ ସଭା କରୁଥିଲେ । ସେମାନେ ବିଚ୍ଛଣା ଛଡ଼ାଇ ନେବା ବ୍ୟତୀତ ଅନ୍ୟ କୌଣସି ହିଂସାର ଆଶ୍ରୟ ନେଇ ନ ଥିଲେ । ତେଣୁ ଭାରତୀୟ ଜାତୀୟ ସଂଗ୍ରାମର ଗୌରବଗରିମାମୟ ଇତିହାସରେ ଇରମ ଏକ ରକ୍ତ ତୀର୍ଥର ସ୍ୱାକ୍ଷର ବହନ କରିଛି ।

ଏନ୍–୬/୧୦୧, ନୟାପଲ୍ଲୀ,
ଭୁବନେଶ୍ୱର–୧୫ ।

# ଆତ୍ମ ପ୍ରତିଷ୍ଠାର ଦିନ

• ଶ୍ରୀ ଭଗବାନ ପାଢ଼ୀ

ଗଣରାଜ୍ୟ ଦିବସ ହେ !
ଆସ ଆଜି ପ୍ରାଚୁର୍ଯ୍ୟର ବାର୍ତ୍ତା ଧରି, ଆତ୍ମବିଶ୍ୱାସର ବିଭୂତି ଜଳାଇ,
ତୁମେ ଆସ କାଶ୍ମୀରରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଜନଗଣମନେ
ନବଜୀବନର ପୁଲକ ଖେଳାଇ ।
ଭାରତୀୟ ଜନଗଣ ବିଶାଳ ହୃଦାକାଶର ତୁମେ ପୂର୍ଣ୍ଣଚନ୍ଦ୍ର,
ତୁମେ ଧ୍ରୁବତାରା,

ଗଣତାନ୍ତ୍ରିକ ରାଷ୍ଟ୍ରର ତୁମେ ତ ନିଶାଣ ଶୃଙ୍ଗ,
ତୁମେ ଶିଖାଇଲ ବଞ୍ଚିବାର ଅଭିନବଧାରା ।
ଶୂନ୍ୟତାରୁ ତୁମେ ଏକା ନେଇପାର ଏ ମହାଜାତିରେ–
ସକଳ ସମ୍ଭାବନାର ପ୍ରାପ୍ତିର ପଥରେ,
ତୁମେ ତ 'ପରଶମଣି' 'ଅମୃତ ଅଞ୍ଜନ', ତୁମେ 'ବିଶଲ୍ୟକରଣୀ'–
ପୀଡ଼ିତର, ଜଡ଼ିତର ଦାରୁଣ କ୍ଷତରେ ।
ମୋ ଦେଶର, ମୋ ଜାତିର ସ୍ୱେଦ–ଶୋଣିତର ତୁମେ
ଏକନିଷ୍ଠ ସାଧନାର ସିଦ୍ଧି,
ତୁମେ ସତ୍ୟ–ସନାତନ, ତୁମେ ନିତ୍ୟ–ନିରଞ୍ଜନ,
ତୁମେ ରସର କଲ୍ଲୋଳ, ପ୍ରେମସୁଧାନିଧି ।
ତୁମେଇ ତ ଏ ଜାତିର ଅନିରୁଦ୍ଧ ପ୍ରାଣର ପ୍ରବାହ,
ଯୌବନର ମାନସରୋବର
ଆକାଶ ପରି ନିବିଡ଼, ତୁମେ ଆମ ଜୀବନର
ସତ୍–ଚିତ୍–ଆନନ୍ଦ ମୃତ୍ୟୁଞ୍ଜୟ ଶୌର୍ଯ୍ୟର ସ୍ୱାକ୍ଷର ।
ତୁମରି ରକ୍ଷଣ ଲାଗି ବାହାର ଓ ଭିତରର ବହୁ ବିସଂବାଦସତ୍ତ୍ୱେ
କେତେ ଦୈବୀ ମାନୁଷୀ ଷଡ଼ଯନ୍ତ୍ରର ମୁକାବିଲା କରିବାକୁ ହୁଏ,
ତୁମରି ଦୀର୍ଘାୟୁ ପାଇଁ ଯେତେ ଦରକାର ସେତେ ତ୍ୟାଗ କରାଯାଇପାରେ,
ଏହା ମୋତେ ବଡ଼କଥା ନୁହେଁ ।
ତୁମେ ଆସ ! ଆସୁଥାଅ ଏଇ ଶୀତ ସକାଳରେ,
ଜାନୁଆରୀ ଛବିଶରେ ବରଷ ବରଷ,
ଆତ୍ମପ୍ରତିଷ୍ଠାର ଦିନ ! ଯୁଗେ ଯୁଗେ ଜୀଇରହ,
ଜୀଇରହୁ ଏ ଭାରତ ଦେଶ...............

ଶିକ୍ଷକ, ପଦ୍ମାପୁର ହାଇସ୍କୁଲ,
ପଦ୍ମାପୁର–୭୫୮୦୨୨,
ମାଧ୍ୟମ: ଆନନ୍ଦପୁର,
ଜିଲ୍ଲା–କେନ୍ଦୁଝର ।

# ଅନ୍ୱେଷଣ ଓ ଅଭିପ୍ସା

● ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ

ଆମ ଦେଶ ସ୍ୱାଧୀନ ହେଲାବେଳକୁ ୧୯୪୭ ମସିହା ସୁଦ୍ଧା ଆମ ରାଜ୍ୟ ଓଡ଼ିଶାରେ ମୋଟ ୬୮୧୪ ପ୍ରାଥମିକ ସ୍କୁଲ, ୨୮୬ ମଧ ଇଂରାଜୀ ବିଦ୍ୟାଳୟ, ୧୦୬ ହାଇସ୍କୁଲ ଓ ମୋଟେ ୧୨ଟି କଲେଜ ଥିଲା । ସେତେବେଳେ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ସମୁଦାୟ ୨୫୫ ହଜାର ପିଲା ପଢ଼ିଲା ବେଳକୁ ହାଇସ୍କୁଲରେ ୧୫ ହଜାର ଓ କଲେଜରେ ୪୧୦୪ ଜଣ ଛାତ୍ର ଛାତ୍ରୀ ପଢୁଥିଲେ । ଅର୍ଥାତ୍ ୧୯୪୭ ମସିହା ବେଳକୁ ପ୍ରାଥମିକ ବିଦ୍ୟାଳୟରେ ଭର୍ତ୍ତି ହେଉଥିବା ପିଲାଙ୍କ ଭିତରୁ ଶତକଡ଼ା ପ୍ରାୟ ୧·୫ ଭାଗ ପିଲା କଲେଜରେ ପଢ଼ିବାର ସୌଭାଗ୍ୟ ଲାଭ କରୁଥିଲେ ।

୧୯୪୭ରେ ୧୨ଟି କଲେଜରେ ପଢୁଥିବା ୪୧୦୪ ଜଣ ଛାତ୍ର ଛାତ୍ରୀଙ୍କ ମଧ୍ୟରୁ ୩୮୮୫ ଥିଲେ ଛାତ୍ର ଓ ୨୧୯ ଜଣ ଥିଲେ ଛାତ୍ରୀ । ଏବେ ଆମ ଓଡ଼ିଶାରେ ସ୍ୱୀକୃତି ପାଇଥିବା କଲେଜ ପ୍ରାୟ ୪୫୦ ହେବ ଏବଂ ସେସବୁରେ ପଢୁଥିବା ଛାତ୍ର ଛାତ୍ରୀଙ୍କ ସଂଖ୍ୟା ପ୍ରାୟ ଅଢ଼େଇ ଲକ୍ଷରୁ କିଛି ଅଧିକ ହେବ । ସ୍ୱୀକୃତି ନପାଇଥିବା କଲେଜମାନଙ୍କ ସଂଖ୍ୟା ହୁଏତ ଆଉ ଦୁଇଶହ ହେବ ଏବଂ ସେଥିରେ ଆଉ ୨୦ କି ୩୦ ହଜାର ଛାତ୍ରଛାତ୍ରୀ ପଢୁଥିବେ । ସେହି ହିସାବରେ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଏବେ ମୋଟ ୩୫ ଲକ୍ଷରୁ କିଛି ଅଧିକ ପିଲା ଭର୍ତ୍ତି ହେଉଛନ୍ତି । ଅର୍ଥାତ ପ୍ରାଥମିକ ବିଦ୍ୟାଳୟରେ ଏବେ ଭର୍ତ୍ତି ହେଉଥିବା ପିଲାଙ୍କ ଭିତରୁ ଶତକଡ଼ା ପ୍ରାୟ ୭ ଭାଗ ଛାତ୍ର ଛାତ୍ରୀ କଲେଜରେ ପଢ଼ିପାରୁଛନ୍ତି ।

ଉପର ହିସାବ ଅନୁସାରେ ପ୍ରାଥମିକ ବିଦ୍ୟାଳୟରେ ଭର୍ତ୍ତିହେବା ଓ କଲେଜରେ ପଢ଼ିବା ପିଲାଙ୍କ ବିଚାରରୁ ଶିକ୍ଷାରେ ଆମର ଅଗ୍ରଗତି ପ୍ରାୟ ସାଢ଼େ ଚାରି ଗୁଣ ବା ଶତକଡ଼ା ୪୫୦ ହୋଇଛି ବୋଲି ମନେ ହେବ । ମାତ୍ର ୧୯୪୭ର ଲୋକସଂଖ୍ୟା ଏବକୁ ପ୍ରାୟ ସାଢ଼େତିନିଗୁଣ ବଢ଼ିଛି । ତେଣୁ ଶିକ୍ଷାର ଅଗ୍ରଗତି ବାସ୍ତବରେ ଶତକଡ଼ା ୨୫ ବା ପ୍ରାୟ ଦେଢ଼ଗୁଣରୁ କିଛି ଅଧିକ ହୋଇଛି । ୧୯୪୭ରେ ଓଡ଼ିଶାର ସମୁଦାୟ ଲୋକ ସଂଖ୍ୟାର ଶତକଡ଼ା ୦·୦୪ (ଶୂନ ଦଶମିକ ଶୂନ ଚାରି) ଭାଗ କଲେଜରେ ପଢୁଥିଲା ବେଳେ ଏବେ ପଞ୍ଚଚାଳିଶ ବର୍ଷ ପରେ ରାଜ୍ୟ ଲୋକ ସଂଖ୍ୟାର ଶତକଡ଼ା ୦·୭ (ଶୂନ ଦଶମିକ ସାତ) ଭାଗ କଲେଜରେ ପଢୁଛନ୍ତି । ଏତେ କମ୍ ସଂଖ୍ୟକ ଲୋକ କଲେଜରେ ପଢୁଥିବାରୁ ସମାଜରେ ଏହି ସଂଖ୍ୟାଲଘୁମାନଙ୍କର ଗୁରୁତ୍ୱ ଓ ଦାୟିତ୍ୱକୁ ବିଚାର କରିବାର ବେଳ ଆସିଛି ।

ଅନ୍ୟ ଏକ ହିସାବରୁ ଜଣାଯାଇଛି ଯେ କଲେଜରେ ପ୍ରତିପିଲାର ପାଠ ପଢ଼ାଲାଗି ସରକାର ବାର୍ଷିକ ଚାଳିଶ ହଜାରରୁ ପ୍ରାୟ ଏକ ଲକ୍ଷ ଟଙ୍କା ଖର୍ଚ୍ଚ କରିଥାନ୍ତି । କଳା ଓ ବାଣିଜ୍ୟ ଅପେକ୍ଷା ବିଜ୍ଞାନ ପଢ଼ାରେ ଖର୍ଚ୍ଚ ଅଧିକ ହୁଏ । ସେହିପରି ତଳ ଶ୍ରେଣୀ ଅପେକ୍ଷା ଉପର ଶ୍ରେଣୀରେ ମଧ୍ୟ ଅଧିକ ଖର୍ଚ୍ଚ ହୋଇଥାଏ । ଉପର ଶ୍ରେଣୀରେ ଅତି କମ୍ ପିଲା ପଢ଼ିଲେ ବି ସେମାନଙ୍କ ପାଇଁ ବହୁତ ବେଶୀ ଖର୍ଚ୍ଚ ହୁଏ । ମାତ୍ର କୌଣସି ପିଲାର ଅଭିଭାବକ ବା ପିଲା ନିଜେ ଏହା ହୃଦୟଙ୍ଗମ କରନ୍ତି ନାହିଁ ଏବଂ ସେମାନେ ନିଜ ସପଳରେ ପାଠ ପଢ଼ିଥାନ୍ତି ବୋଲି ଆସ୍ଫାଳନ କରନ୍ତି । ପ୍ରକୃତରେ କଲେଜ ଶିକ୍ଷାପାଇଁ ସରକାରଙ୍କର ଯେତେ ଖର୍ଚ୍ଚହୁଏ ତା'ଠାରୁ ଢେର୍ କମ ଖର୍ଚ୍ଚରେ ରାଜ୍ୟରେ ହୁଏତ ସମସ୍ତଙ୍କ ପାଇଁ ମାଗଣା ପ୍ରାଥମିକ ଶିକ୍ଷା ବ୍ୟବସ୍ଥା କରାଯାଇ ପାରନ୍ତା । ପ୍ରାଥମିକ ସ୍ତରରେ ପିଲାପିଛା ବର୍ଷକୁ ପ୍ରାୟ ଶହେ ଟଙ୍କା ସରକାରୀ ତହବିଲରୁ ଖର୍ଚ୍ଚ ହୋଇଥାଏ ।

ଆମ ସମ୍ବିଧାନ ଗୃହୀତ ହେବାର ଦଶବର୍ଷ ଭିତରେ ୧୪ ବର୍ଷ ବୟସ ପର୍ଯ୍ୟନ୍ତ ସମସ୍ତ ପିଲାଙ୍କୁ ବାଧ୍ୟତାମୂଳକ ମାଗଣା ପ୍ରାଥମିକ ଶିକ୍ଷାଦାନର ବ୍ୟବସ୍ଥା ସମ୍ପୂର୍ଣ୍ଣ କରିବାଲାଗି ଆମ ସମ୍ବିଧାନର ୪୫ତମ ଧାରାରେ ଲକ୍ଷ୍ୟ ଧାର୍ଯ୍ୟ କରା ଯାଇଥିଲା । ସମ୍ବିଧାନ ୧୯୫୦ରେ ଗୃହୀତ ହେବାପରେ ୧୯୬୦ ସୁଦ୍ଧା ଏହି ଲକ୍ଷ୍ୟ ହାସଲ ହେବାକଥା । ଆଜି ସୁଦ୍ଧା ଏହା ସମ୍ଭବ ହୋଇପାରି ନାହିଁ । ତେଣୁ ଅନ୍ତତଃ ୨୦୦୦ ମସିହା ସୁଦ୍ଧା ଏହି ଲକ୍ଷ୍ୟ ହାସଲ କରିବାଲାଗି ସମ୍ପୂର୍ଣ୍ଣ ସାକ୍ଷରତା, ସମସ୍ତଙ୍କପାଇଁ ଶିକ୍ଷା ଭଳି ବିଭିନ୍ନ ଉଦ୍ୟମ ଦେଶରେ ଏବେ ଆରମ୍ଭ ହୋଇଛି । ଏସବୁ କାର୍ଯ୍ୟକ୍ରମ ଯୋଗୁଁ ପ୍ରାଥମିକ ଶିକ୍ଷାଲାଗି ସରକାରଙ୍କର ବ୍ୟୟ ଅଧିକ ହେବ । ସରକାରୀ ବ୍ୟୟ ଅଧିକ ହେଲେ ଆବଶ୍ୟକ ପୁଞ୍ଜି ପୁଣି ସେହି ସର୍ବ ସାଧାରଣ କରଦାତାଙ୍କଠାରୁ ହିଁ ଆଦାୟ କରାଯିବ ।

ଆମରାଜ୍ୟରେ ଛଅ ବର୍ଷରୁ ଚଉଦବର୍ଷ ବୟସର ପିଲାଙ୍କ ଭିତରୁ ଶତକଡ଼ା ପ୍ରାୟ କୋଡ଼ିଏ ଜଣ ପ୍ରାଥମିକ ଶିକ୍ଷା ଶେଷ କରୁଛନ୍ତି । ଏହି ଦୃଷ୍ଟିରୁ ହଜାର ଜଣରେ କଲେଜ ପଢୁଆ ସାତଜଣଙ୍କ ପାଇଁ ବ୍ୟୟ ବରାଦ ଯୁକ୍ତିଯୁକ୍ତ ମନେ ନହୋଇପାରେ । ବିଶେଷକରି କଲେଜ ଶିକ୍ଷା ଦ୍ୱାରା ସର୍ବସାଧାରଣଙ୍କର କି ଉପକାର ଓ କେତେ ଉପକାର ହେଉଛି ତା'ର ସମୀକ୍ଷା ନକରି ସାଧାରଣ ଲୋକଙ୍କର ସର୍ବନିମ୍ନ ଆବଶ୍ୟକତା ଅନୁସାରେ ଶିକ୍ଷା ବ୍ୟବସ୍ଥା କରିବା ବିଧେୟ ।

ଜୀବନରେ ଶିକ୍ଷାର ଅପରିହାର୍ଯ୍ୟତାକୁ କେହି ଅସ୍ୱୀକାର କରିବେନାହିଁ । ବରଂ ଯଥାର୍ଥ ଶିକ୍ଷାର ପ୍ରସାର ଘଟୁଥିଲେ ଦେଶରେ ବହୁ ଅନାବଶ୍ୟକ ବ୍ୟୟ ପ୍ରତିହତ ହୋଇପାରନ୍ତା ଓ ସମାଜରେ ନାନା ଅବାଞ୍ଛିତ ପରିସ୍ଥିତି ରହନ୍ତାନାହିଁ । ବାସ୍ତବରେ ଜୀବନର ତଥା ସୃଷ୍ଟିର ମହତ୍ୱ ଉପଲବ୍ଧି କରିବାପାଇଁ ଶିକ୍ଷା ଏକାନ୍ତ ପ୍ରୟୋଜନ । ମାତ୍ର ପ୍ରଚଳିତ ଶିକ୍ଷା ଏଭଳି ଉପଲବ୍ଧିର ଆୟୁଧ ହୋଇ ପାରୁନାହିଁ । ଅନେକ କ୍ଷେତ୍ରରେ ଏକ ଚାକିରି ବା ଅନ୍ୟକିଛି ସହଜ ଜୀବିକା ଆୟୋଜନ ଲାଗି ଉଚ୍ଚଶିକ୍ଷାକୁ ବ୍ୟବହାର କରାଯାଇଛି । ଅପର ପକ୍ଷରେ, ପ୍ରାଥମିକ ସ୍ତରରେ ଶିକ୍ଷାକୁ ଯେତେ ଯେପରି ଯତ୍ନର ସହିତ ଶିକ୍ଷାର୍ଥୀର ପ୍ରକୃତ ଜୀବନଠାରୁ ପୃଥକ କରି ଦିଆଯାଉଛି । ଛାତ୍ର ଛାତ୍ରୀଙ୍କ ମନରେ ଏକ ଅପସଂସ୍କୃତି ଜନିତ ଅନାକର୍ଷଣୀୟତା ତୀବ୍ର ହୋଇ ଉଠୁଛି । ପ୍ରାୟତଃ ଶିକ୍ଷାର

ସାମାଜିକ ସଙ୍ଗତି ରହୁନାହିଁ । ଫଳରେ ଏଭଳି ଶିକ୍ଷା ଓ ଏହି ଶିକ୍ଷା ପ୍ରକ୍ରିୟାରେ ସମ୍ପୃକ୍ତ ସମସ୍ତେ (ଶିକ୍ଷକ, ଶିକ୍ଷାର୍ଥୀ, ଛାତ୍ରଛାତ୍ରୀ, ଶିକ୍ଷା ଯୋଜନାକାରୀ ଓ ଶିକ୍ଷା ପ୍ରଶାସକ ଆଦି ସମସ୍ତେ) ସମାଜ ବିଜ୍ଞାନୀଙ୍କ ଦୃଷ୍ଟିରେ କେବେକେବେ ଅର୍ଥହୀନ ଓ ଅଦରକାରୀ ମନେ ହେଉଛନ୍ତି । ଏମାନଙ୍କ ପାଇଁ ସମାଜ ବହୁତ ବ୍ୟୟଭାର ବହନ କରିଥିଲେ ବି ଏମାନଙ୍କ ଦ୍ୱାରା ସମାଜର କୌଣସି ଉପ୍ସିତ ଉପକାର ସହଜରେ ସାଧିତ ହେବନାହିଁ ।

ଏ ପ୍ରକାର ପୃଷ୍ଠଭୂମିରେ ଓଡ଼ିଶା କ୍ଷେତ୍ରରେ ସମ୍ପୃକ୍ତ ପ୍ରତ୍ୟେକ ବ୍ୟକ୍ତି ଆତ୍ମ ସମୀକ୍ଷା କରିବା ଆବଶ୍ୟକ । ଏଥିପାଇଁ ପ୍ରତ୍ୟେକ ସ୍ତରରେ ସାଧାରଣ ବିତର୍କ ମଧ୍ୟ ଦରକାର । ବାସ୍ତବତାକୁ ବୁଝି ନିଜକୁ ନ ସଜାଡ଼ିଲେ ସମୃଦ୍ଧିର ଛନ୍ଦ ବ୍ୟାହତ ହେବ । କାରଣ ସ୍ୱେଚ୍ଛାକୃତ ପରିବର୍ତ୍ତନ ଅପେକ୍ଷା କାଳକୃତ ପରିବର୍ତ୍ତନ ସବୁବେଳେ ସୁଖତର ।

---

ଉପାଧ୍ୟକ୍ଷ,
ଢେଙ୍କାନାଳ ମହାବିଦ୍ୟାଳୟ,
ଢେଙ୍କାନାଳ ।




ଭୁବନେଶ୍ୱରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଡିଗ୍ରୀ ଇଞ୍ଜିନିୟରମାନଙ୍କ ବାର୍ଷିକ ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି । ମନ୍ତ୍ରୀ ପ୍ରଫୁଲ୍ଲ ଘଡ଼େଇ ଓ ଶ୍ରୀ ଭାଗବତ ବେହେରା ମଞ୍ଚାସୀନ ଅଛନ୍ତି ।

# ମହିଳା ବିକାଶ ପାଇଁ ଅନନ୍ୟ ଯୋଜନା

● ଶ୍ରୀ ରବୀନ୍ଦ୍ର କୁମାର ଜେନା

ସାକ୍ଷର କହିଲେ ଜଣେ ବ୍ୟକ୍ତି ଦି ଅକ୍ଷର ଲେଖି ପଢ଼ି ଶିଖିବା। ଫଳରେ ବ୍ୟକ୍ତିଟି ସାକ୍ଷରତା ଲାଭକରି ସାମାଜିକ ସ୍ତରରେ ସ୍ୱୀକୃତି ଲାଭ କରେ। ସାମାଜିକ ପରିବର୍ତ୍ତନ ଆଣିବାରେ ସାହାଯ୍ୟ କରେ। କିନ୍ତୁ ଜଣେ ସାକ୍ଷର ନହୋଇ ନିରକ୍ଷର ରହିଗଲେ ତାହା ଗୋଷ୍ଠୀ ଅଥବା ସମାଜର ଏକ ସମସ୍ୟା ହୋଇ ରହେ। ନିରକ୍ଷର ବ୍ୟକ୍ତି ସମାଜରେ ଯେଉଁ ଅସୁବିଧାର ସମ୍ମୁଖୀନ ହୁଏ ତାହା ଉଭୟ ବ୍ୟକ୍ତି ସମାଜ ପକ୍ଷରେ କ୍ଷତିକାରକ। ନିରକ୍ଷର ବ୍ୟକ୍ତି ସମାଜରେ ଅବହେଳିତ ଅବସ୍ଥାରେ ରହିଥାଏ। ଯେତେବେଳେ ଅଭାବ, ଅସୁବିଧା ଓ ଅନଟନ ଭିତରେ ରହିଥାଏ, ତା'ର ପ୍ରତିବେଶୀ କେବେ ହେଲେ ସ୍ୱଚ୍ଛନ୍ଦରେ ରହି ପାରିବ ନାହିଁ। ସମାଜର ସବୁ ଶିକ୍ଷିତ ବ୍ୟକ୍ତି ଏହି ନିରକ୍ଷରତା ସମସ୍ୟା ପ୍ରତି ଧ୍ୟାନ ଦେବା ଦରକାର। ଅବଶ୍ୟ ଏହି ନିରକ୍ଷରତା ଯେ ଦୀର୍ଘ ଦିନ ଧରି ସମାଜରେ ତିଷ୍ଠି ରହିବ ଏହା ଆଶା କରାଯାଇ ନ ପାରେ।

ଆମର ପ୍ରଚଳିତ ଶିକ୍ଷା ବ୍ୟବସ୍ଥାର କେତେକ ତ୍ରୁଟି ରହିଥିବାରୁ ତା'ର ପରିଣାମରେ ନିରକ୍ଷରତା ରୂପକ ବ୍ୟାଧି ବ୍ୟାପୀ ଚାଲିଛି। ପ୍ରାଥମିକ ଶିକ୍ଷା ବାବଦରେ କୋଟି କୋଟି ଟଙ୍କା ବ୍ୟୟ କରାଯାଉଛି। ଏହାର ସୁଫଳ କେବଳ ଶତକଡ଼ା ୩୩ ଭାଗ ଲୋକ ଉପଭୋଗ କରୁଛନ୍ତି। ପ୍ରାଥମିକ ଅବସ୍ଥାରେ ପିଲାମାନେ ଶିକ୍ଷାଲାଭ କରିବାକୁ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଉ ଅଛନ୍ତି। ସେମାନଙ୍କ ସଂଖ୍ୟା ଶତକଡ଼ା ୮୭ ଭାଗ। ଏହି ୮୭ ଭାଗ ଶିକ୍ଷାର୍ଥୀଙ୍କ ମଧ୍ୟରୁ ପ୍ରାଥମିକ ଶିକ୍ଷା ସମାପ୍ତ କରୁଥିବା ପିଲାମାନେ ହେଲେ ୩୩ ଭାଗ। ଏଣୁ ସମାଜର ଏହି ୩୩ ଭାଗ ଲୋକଙ୍କ ନିମିତ୍ତ କୋଟି କୋଟି ଟଙ୍କା ବ୍ୟୟିତ ହେଲା। ଅବଶିଷ୍ଟ ୬୭ ଭାଗ ଲୋକ ଏହି ଟଙ୍କା ବିନିଯୋଗର ସୁଫଳ ପାଇବାରୁ ବଞ୍ଚିତ ହେଲେ।

ଆମ ଦେଶରେ ମହିଳା ସାକ୍ଷର ସଂଖ୍ୟା ଅତି ନଗଣ୍ୟ। ସ୍ୱାଧୀନତା ପ୍ରାପ୍ତି ପରେ ଦେଶରେ ଶିକ୍ଷା କ୍ଷେତ୍ରରେ ଯଥେଷ୍ଟ ଅଗ୍ରଗତି ଘଟିଛି। ହେଲେ ହେଁ ଆନୁପାତିକ ହାରରେ ମହିଳାମାନେ ଶିକ୍ଷାଲାଭ କରିପାରି ନାହାଁନ୍ତି। ଫଳରେ ଦେଶରେ ନିରକ୍ଷର ମହିଳାଙ୍କ ସଂଖ୍ୟା ଅଧିକ। ମହିଳାମାନେ ନିରକ୍ଷର ରହୁଥିବାରୁ ସମାଜରେ ଅବହେଳିତ କହିଲେ ଚଳେ। ଦେଶ ସ୍ୱାଧୀନ ହେବା ବେଳକୁ ମହିଳା ସାକ୍ଷର ସଂଖ୍ୟା ଶତକଡ଼ା ୬ ଭାଗ ଥିଲା। ବର୍ତ୍ତମାନ ଏହାର ଶତକଡ଼ା ହାର ୩୫-୪୦ରେ ପହଞ୍ଚିଛି। ତନ୍ମଧ୍ୟରେ ପୁଣି ସହରାଞ୍ଚଳ ଅପେକ୍ଷା ଗ୍ରାମାଞ୍ଚଳ ମହିଳାମାନେ ଅଧିକ ସଂଖ୍ୟାରେ ନିରକ୍ଷର। ଏଥି ନିମିତ୍ତ ମହିଳାମାନଙ୍କୁ ସାକ୍ଷର କରାଯିବା ପ୍ରତି ଅଧିକ ଗୁରୁତ୍ୱ ଆରୋପ କରାଯାଇଛି। ଏ ସମ୍ପର୍କରେ ଚୀନ ଦେଶର ଗୋଟିଏ ପ୍ରବାଦ ରହିଛି। ସେମାନେ କହନ୍ତି –

"ତୁମେ ଯଦି ବର୍ଷକ ନିମିତ୍ତ କୌଣସି ଯୋଜନା କରିବାକୁ ଚାହୁଁଛ, ତାହାହେଲେ ନିଜ କ୍ଷେତରେ ଗହମ ବୁଣ କର। ଯଦି ତୁମର ଯୋଜନା ୨୦ ବର୍ଷ ପାଇଁ କରିବାକୁ ଇଚ୍ଛା ଥାଏ ତା'ହେଲେ କ୍ଷେତରେ ଗଛ ଲଗାଅ। କିନ୍ତୁ ତୁମର ଯୋଜନା ଯଦି ୧୦୦ ବର୍ଷ ନିମିତ୍ତ କରିବାକୁ ଚାହୁଁଥାଅ ତା'ହେଲେ ତୁମର ଝିଅ ବୋହୂମାନଙ୍କୁ ଶିକ୍ଷା ପ୍ରଦାନ କରି ଶିକ୍ଷିତ କରାଅ।"

ଏ କଥା ସତ୍ୟ ଯେ ମହିଳାମାନେ ଅଧିକ ସଂଖ୍ୟାରେ ନିରକ୍ଷର ରହିଥିବାରୁ ଆମ୍ଭେମାନେ ବହୁ ଅସୁବିଧାର, ସମ୍ମୁଖୀନ ହୋଇଥାଉଁ। ସେଥିମଧ୍ୟରୁ ଜନସଂଖ୍ୟା ବୃଦ୍ଧି, ଅଧିକ ସଂଖ୍ୟାରେ ଶିଶୁ ମୃତ୍ୟୁ, ଗର୍ଭବତୀ ମହିଳାମାନଙ୍କ ମୃତ୍ୟୁ, ପରିବେଶ ପ୍ରଦୂଷଣ ଆଦି ଘଟିଥାଏ। ମହିଳା ଯଦି ପାଠ ଦି ଅକ୍ଷର ପଢ଼ି ସାକ୍ଷର ହୁଏ, ତା'ହେଲେ ଜନ୍ମ ହାର ହ୍ରାସ କରିବା, ଶିଶୁର ଉପଯୁକ୍ତ ଯତ୍ନନେବା ଫଳରେ ଶିଶୁ ମୃତ୍ୟୁହାର କମାଇବା, ପରିବେଶର ସୁରକ୍ଷା କରିବା ଦିଗରେ ସହାୟକ ହୋଇଥାଏ। ଆଜି କେରଳ ରାଜ୍ୟରେ ମହିଳାମାନଙ୍କ ସାକ୍ଷର ସଂଖ୍ୟା ୮୭ ପ୍ରତିଶତ। ଏଣୁ ସେଠାକାର ମହିଳାମାନେ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଉତ୍ତମ ଗୃହିଣୀ ଅଧିକ ଯତ୍ନଶୀଳ, କାର୍ଯ୍ୟଦକ୍ଷ ଓ ସୁଶିକ୍ଷିତା ହୋଇପାରିଛନ୍ତି। ନିଜର ଘରକୁ ଭଲ ଭାବେ ଚଳାଇ ପାରୁଛନ୍ତି।

ଅନୁସନ୍ଧାନରୁ ଜଣାପଡ଼ିଛି ଯେ ଗ୍ରାମାଞ୍ଚଳରେ ମହିଳାମାନଙ୍କ ନିରକ୍ଷରତା ହାର ସହରାଞ୍ଚଳଠାରୁ ଅଧିକ। ତହିଁ ମଧ୍ୟରୁ ବିବାହିତ ମହିଳାମାନେ ସର୍ବାଧିକ। ଏହାର କାରଣ ଅନୁସନ୍ଧାନ କରି ଜଣାପଡ଼ିଛି ଯେ ପରିବାରର ମହିଳାମାନେ ନିରକ୍ଷର ରହୁଥିବାରୁ ସେମାନେ ନିଜର ସନ୍ତାନମାନଙ୍କୁ ଶିକ୍ଷାପ୍ରତି ଅଧିକ ଆକୃଷ୍ଟ କରାଇବା ପରିବର୍ତ୍ତେ ଅଧିକ ଗୃହକର୍ମ ନିପୁଣୀ ହେବା ପାଇଁ ଗୁରୁତ୍ୱ ଦେଇଥାନ୍ତି ଓ ବୟସପ୍ରାପ୍ତି ହେବା ସଙ୍ଗେ କନ୍ୟାଙ୍କୁ ବିବାହ ଦେବାକୁ ବ୍ୟବସ୍ଥା କରନ୍ତି। ଅଳ୍ପ ବୟସରେ ବିବାହ କରି କନ୍ୟା ମାତୃତ୍ୱ ଲାଭ କରେ। ପରେ ପରେ ନାନା ରୋଗ ବ୍ୟାଧିର ଶିକାର ହୁଏ। ରୋଗ ପ୍ରତିକାର ନିମିତ୍ତ ଔଷଧ ସେବନ କରି ଅର୍ଥାଭାବର ସମ୍ମୁଖୀନ ହୁଏ। ଏହାହିଁ ତା'ର ଦାରିଦ୍ର୍ୟର କାରଣ ହୋଇପଡ଼େ। କିନ୍ତୁ ଝିଅମାନେ ପାଠ ପଢ଼ିଲେ ବିଳମ୍ବିତ ବୟସରେ ବିବାହ କରିଥାନ୍ତି। କାରଣ ପାଠ ପଢୁଆ ଝିଅମାନେ ଶିକ୍ଷା ସମାପ୍ତି ପରେ ବିବାହ ପାଇଁ ପ୍ରସ୍ତୁତ ହୁଅନ୍ତି। ଏ ସବୁକୁ ବାଦ୍ ଦେଲେ, ଶିକ୍ଷିତ ପରିବାରରେ ଝିଅମାନଙ୍କୁ ଉପଯୁକ୍ତ ବୟସରେ ବିବାହ ଦେବାକୁ ପସନ୍ଦ କରିଥାନ୍ତି।

ମହିଳାମାନେ ବିବାହ କରିସାରିବା ପରେ ସ୍ତ୍ରୀ, ମାଆ ଓ ଗୃହିଣୀ ହୋଇ ଘର ଚଳାଇ ଆସନ୍ତି। ସେମାନଙ୍କ ମଧ୍ୟରେ ସ୍ୱାମୀ ସ୍ତ୍ରୀ ସମ୍ପର୍କରେ ପରସ୍ପର ପ୍ରତି ଯେଉଁଳି ସ୍ନେହ, ବିଶ୍ୱାସ ଆସିବା ଦରକାର, ସ୍ତ୍ରୀର ସହିଷ୍ଣୁତା ଗୁଣ ସ୍ୱାର୍ଥତ୍ୟାଗୀ ମନୋଭାବ ଆଦି ସମସ୍ତ ସଦ୍‌ଗୁଣର ଅଧିକାରୀ ହେବା ବାଞ୍ଛନୀୟ। ସ୍ୱାମୀ ଯେଉଁଳି ସର୍ବଗୁଣ ସମ୍ପନ୍ନ ସ୍ତ୍ରୀଟିଏ ଲୋଡ଼ିଥାଏ ଘରେ ଶାଶୁ ଶ୍ୱଶୁର ମଧ୍ୟ ସେହିଭଳି ଧୀର, ଶାନ୍ତ ଓ ସୁଶୀଳ ବୋହୂଟିଏ ଖୋଜିଥାନ୍ତି। ଜଣେ ସୁଗୃହିଣୀ ନାରୀ କୃଷି କ୍ଷେତ୍ରଠାରୁ ଆରମ୍ଭ କରି

ରନ୍ଧନଶାଳାରେ ଓ ଗୃହ ସଜାଇବା ଦିଗରେ ନିଜର ଦକ୍ଷତା ପ୍ରକାଶ କରିପାରିବ, ଯଦି ସେ ଉପଯୁକ୍ତ ଶିକ୍ଷା ଲାଭ କରିଥାଏ । କିନ୍ତୁ ନିରକ୍ଷର ମହିଳା ପକ୍ଷେ ଉପରୋକ୍ତ ଗୁଣର ଅଧିକାରୀ ହେବାରେ ଅସମର୍ଥ ହେବା ସମ୍ଭାବନା ଯଥେଷ୍ଟ ଥାଏ ।

ମହିଳାମାନେ ନିରକ୍ଷର ରହିବାର ଯେତେଗୁଡ଼ିଏ କାରଣ ରହିଛି ସେଥିମଧ୍ୟରୁ ସାମାଜିକ ରୀତିନୀତି, କୁସଂସ୍କାର, ସାଧାରଣ ଲୋକଙ୍କର ସାଂସ୍କୃତିକ ଚେତନାର ଅଭାବ, ଧର୍ମାନ୍ଧତା ଆଦି ମୁଖ୍ୟ କାରଣମାନ ରହିଛି । ଶିଶୁ ଅବସ୍ଥାରେ କନ୍ୟା ସନ୍ତାନମାନଙ୍କୁ ଅବହେଳା କରାଯାଇଥାଏ । ଝିଅଟିକୁ ଅଧିକ କାଳ ନିଜ ଘରେ ନରଖି ବିବାହ କରି ଦିଆଯାଇଥାଏ । ଯାହା ଫଳରେ କମ୍ ବୟସରେ ସେ ମାତୃତ୍ୱ ଲାଭ କରିଥାଏ । ସନ୍ତାନ ପ୍ରସବର ପୂର୍ବ ଓ ପର ଅବସ୍ଥାରେ ନିଜ ସ୍ୱାସ୍ଥ୍ୟ ପ୍ରତି ଯତ୍ନ ନନେଇ, ସୁଷମ ଖାଦ୍ୟ ନଖାଇ ସେ ବହୁ ଅବହେଳାରେ ରହେ ।

ଗ୍ରାମାଞ୍ଚଳରେ ବାସ କରୁଥିବା ଗରିବ ଘରର ଝିଅଟିକୁ ଅତି ଛୋଟ ଅବସ୍ଥାରେ ବିଭିନ୍ନ କାମଧନ୍ଦାରେ ନିୟୋଜିତ କରାଯାଇଥାଏ । ପରିବାରର ଆର୍ଥିକ ଦୁର୍ଗତିକୁ କିଛି ପରିମାଣରେ ହାଲୁକା କରିବା ଉଦ୍ଦେଶ୍ୟରେ ପ୍ରାୟତଃ ଏହା କରାଯାଏ । ଗାଈ, ଗୋରୁ, ଛେଳିଙ୍କ ଯତ୍ନ ନେବାରେ କାହାରି କାହାରି ଦିନ ଯାଏ । ସମୟ ପାଏନା ପାଠ ପଢ଼ିବାକୁ । ଲୋକେ ମନ୍ତବ୍ୟ ଦିଅନ୍ତି ଝିଅ ପିଲାଟା ପାଠ କ'ଣ ପଢ଼ିବ ? ଯେତେ ପଢ଼ିଲେ ବି ଚୂଲି ମୁଣ୍ଡକୁ, ପର ଘରକୁ ।

ଗାଁରେ ରହୁଥିବା ମହିଳାମାନେ ସହରାଞ୍ଚଳ ମହିଳାଙ୍କଠାରୁ ଅଧିକ ଦୈହିକ ପରିଶ୍ରମ କରନ୍ତି । ସେମାନେ ସକାଳୁ ଉଠି ଘରର ନାନା କାମ ସାଇତି କରିଥାନ୍ତି । ଖାଦ୍ୟ ପ୍ରସ୍ତୁତି ପାଇଁ ଦୂର ସ୍ଥାନରୁ ପାଣି ବୋହି ଆଣନ୍ତି । ଜାଳେଣୀ ସଂଗ୍ରହ କରିଥାନ୍ତି । ପିଲାଛୁଆଙ୍କ ଯତ୍ନ ନିଅନ୍ତି । ଖାଇବାକୁ, ପିଇବାକୁ ଦେଇ ସ୍କୁଲକୁ ପଠାଇଥାନ୍ତି । ଏ ସବୁ କାମ ସାଇତି ସାରି ସେମାନଙ୍କୁ ପାଠ ପଢ଼ିବାକୁ ସମୟ ମିଳିନଥାଏ । ଯଦି କେହି ସମୟ କରି ପଢ଼ିବାକୁ ଆଗ୍ରହୀ ହୁଏ, ତା'ହେଲେ ସେ ସନ୍ଧ୍ୟା ସମୟରେ ଯାଏ । ନେତେବେଳକୁ ତା'ର ଦେହ ଥକିଯାଇ ଅବଶ କରି ଦିଏ । ଏହି ସବୁ କାରଣରୁ ମହିଳାମାନେ ଗ୍ରାମାଞ୍ଚଳରେ ସାକ୍ଷରତା ହାସଲ ନକରି ନିରକ୍ଷର ରହି ଯାଆନ୍ତି ।

ଗାଁ ଗହଳିର ପରିବେଶ ଯାହା ତହିଁରେ ପୁରୁଷମାନେ ମହିଳାମାନଙ୍କୁ ଶିକ୍ଷା ଦେବା ଦିଗରେ ଅନ୍ତରାୟ ସୃଷ୍ଟି କରିଥାନ୍ତି । ବିବାହିତ ମହିଳା ଶିକ୍ଷା ଲାଭ ଆଶାରେ ସାକ୍ଷର କେନ୍ଦ୍ରକୁ ଯିବାକୁ ଚାହିଁଲେ ସେ ସମୟ ପାଇଥାଏ କେବଳ ସନ୍ଧ୍ୟା ସମୟରେ । ସ୍ୱାମୀ, ଶାଶୁ, ଶ୍ୱଶୁରଙ୍କ ପାଇଁ ଚୁଲାରେ ସେ ଆଗରେ ହୁଏ ଶିକ୍ଷା ଲାଭ ପାଇଁ । କେତେ କେତେ ନିରକ୍ଷର ସ୍ୱାମୀମାନେ ମଧ୍ୟ ଭାବନ୍ତି ଯେ ଯଦି ତାଙ୍କର ସ୍ତ୍ରୀ ପାଠ ପଢ଼ିବ, ଅଧିକ ପାରୁଆ ହେବ, ତା'ହେଲେ ଜ୍ଞାନରେ ତାଙ୍କୁ ଅବମାନନା କରିବ । ସାଧାରଣତଃ ସ୍ତ୍ରୀ ଲୋକଙ୍କ ମନରେ ସେମିତି ଦୁର୍ଭାବନା ନ ଥାଏ ।

ଏ ସବୁ ଦିଗ ପ୍ରତି ଧ୍ୟାନ ଦେଲେ ଜଣା ପଡ଼ିବ ଯେ, ମହିଳାଙ୍କୁ ତା'ର ଦାୟିତ୍ୱ ବୁଝାଇ ନ ହେବାଯାଏ ଶିକ୍ଷାର ବିକାଶ ଘଟିବ ନାହିଁ । ସମାଜରେ ପୁରୁଷ ଓ ମହିଳାମାନେ ଯେଉଁଭଳି ସମାନ ଭାବରେ ରହିଛନ୍ତି ସେହିଭଳି ବିଭିନ୍ନ ଯୋଜନା ପ୍ରଣୟନକାରୀଙ୍କଠାରୁ ଆରମ୍ଭକରି ପ୍ରଶାସକ ଓ ଶିକ୍ଷାଦାତା ନିଯୁକ୍ତି କ୍ଷେତ୍ରରେ ମହିଳାଙ୍କ ତୁଳନାରେ ପୁରୁଷମାନେ ଅଧିକ ସଂଖ୍ୟାରେ ଏହି ଦାୟିତ୍ୱ ବହନ କରିଥାନ୍ତି । ଏଣୁ ସେମାନେ ମହିଳାମାନଙ୍କର ଏହି ଅସୁବିଧାକୁ ସହଜରେ ହୃଦୟଙ୍ଗମ କରି ଘରର ଉପଯୁକ୍ତ ରକ୍ଷଣାବେକ୍ଷଣ ନିମନ୍ତେ ସେମାନଙ୍କ ନିଯୁକ୍ତି ଗ୍ରହିବା ସ୍ୱାଭାବିକ ।

ସାକ୍ଷରତା କାର୍ଯ୍ୟକ୍ରମ ଖୋଲୁ ରହିବା ପରେ ପୁରୁଷ ଓ ମହିଳାମାନଙ୍କ ନିମିତ୍ତ ସମାନ ସଂଖ୍ୟକ ସାକ୍ଷରତା କେନ୍ଦ୍ର ଖୋଲାଯିବାର ବ୍ୟବସ୍ଥା ରହିଛି । ମହିଳା ସାକ୍ଷରତା କେନ୍ଦ୍ରକୁ ଆସୁଥିବା ମହିଳାମାନଙ୍କୁ ଆବଶ୍ୟକ ସଂଖ୍ୟକ ପାଠ୍ୟୋପକରଣ ଯଥା ସମୟରେ ଦିଆଯିବା ଉଚିତ । ନଚେତ୍ ଶିକ୍ଷାଦାନ ତଥା ସାକ୍ଷରତା ପରବର୍ତ୍ତୀ ଶିକ୍ଷା କାର୍ଯ୍ୟକ୍ରମରେ ପ୍ରତିବନ୍ଧକ ଦେଖାଦେବ । ସାକ୍ଷରତା କାର୍ଯ୍ୟକ୍ରମରେ ମହିଳାମାନଙ୍କ ନିମିତ୍ତ ଶିଶୁର ଯତ୍ନ, ସୁଷମ ଖାଦ୍ୟ, ଖାଦ୍ୟ ସଂରକ୍ଷଣ, ଉତ୍ତମ ରନ୍ଧନ ପ୍ରଣାଳୀ, ସିଲାଇ ଶିକ୍ଷା, କୁଟୀର ଶିଳ୍ପ ଆଦିର ବ୍ୟବସ୍ଥା ରହିବାର ପାଠ୍ୟକ୍ରମ ଥିଲେ ମଧ୍ୟ ତା'ର ବ୍ୟାବହାରିକ ଶିକ୍ଷା ପ୍ରଦାନ ବ୍ୟବସ୍ଥା ଅଧିକ ଉତ୍ସାହପ୍ରଦ ହେବା ଆବଶ୍ୟକ ।

ସାକ୍ଷରତା କେନ୍ଦ୍ରମାନଙ୍କରେ ପ୍ରାଥମିକ ବିଦ୍ୟାଳୟ ଉପଯୋଗୀ ପୁସ୍ତକ ବ୍ୟବହୃତ ହୋଇଥାଏ । ତହିଁରେ ଉପର ଲିଖିତ ବିଷୟଗୁଡ଼ିକ ବିଶେଷ ଭାବେ ସନ୍ନିବେଶିତ ହୋଇ ନାହିଁ । ଫଳତଃ ମହିଳା ଶିକ୍ଷାର୍ଥୀମାନଙ୍କ ପାଇଁ ବାଧ୍ୟତାମୂଳକ କୃଷି ସମ୍ବନ୍ଧୀୟ ଯନ୍ତ୍ରପାତି ଓ ଅନ୍ୟାନ୍ୟ ବିଷୟ ରହୁଥିବାରୁ ସେମାନଙ୍କୁ ବାଧ୍ୟ କରାଯାଉଛି ପୁରୁଷମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ବିଷୟ ପାଠ କରିବାକୁ । ମହିଳାମାନେ ସେମାନଙ୍କ ସମୟ ସୁବିଧା ଦେଖି ପଢ଼ିବାକୁ ଆସିଥାନ୍ତି । ଏବେ ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ନିର୍ଦ୍ଧାରିତ ପାଠ୍ୟକ୍ରମର ପରିସମାପ୍ତି ପାଇଁ ଯେଉଁ ଯୋଜନା କରାଯାଇଛି ତାହା ମହିଳାମାନଙ୍କ ଦ୍ୱାରା ଆଦୃତ ହେଉନଥିବା ଉପଲବ୍ଧି କରାଯାଉଛି ।

ମହିଳାମାନେ ସମାଜରେ ପୁରୁଷମାନଙ୍କ ଭଳି ସମାନ ଅଧିକାର ସାବ୍ୟସ୍ତ କରିବା ଆବଶ୍ୟକ ମନେକରି ଶିକ୍ଷା କେନ୍ଦ୍ରରେ ମିଳିମିଶି ପାଠ ପଢ଼ିଲେ ଜାତିର ପ୍ରଗତି ତ୍ୱରାନ୍ୱିତ ହୋଇ ପାରିବ ।

ସହକାରୀ ନିର୍ଦ୍ଦେଶକ,
ଜନଶିକ୍ଷା ନିର୍ଦ୍ଦେଶାଳୟ, ଭୁବନେଶ୍ୱର ।

# ଭାରତ ଛାଡ଼ ଆନ୍ଦୋଳନ ଓ ପାହାଡ଼ର ପ୍ରତିଧ୍ୱନି

• ଶ୍ରୀ ବିଶ୍ୱନାଥ ପଟ୍ଟନାୟକ

୧୯୪୨ ମସିହା ବେଳକୁ ମୋତେ ୨୬ ବର୍ଷ ହୋଇଥାଏ । ମୁଁ, ଆଚାର୍ଯ୍ୟ ମହାଶୟ, ଗୋପବନ୍ଧୁ ଚୌଧୁରୀ ଓ ରମାଦେବୀଙ୍କ ନିର୍ଦ୍ଦେଶରେ କୋରାପୁଟ ଜିଲ୍ଲାର ଗୁଣୁପୁର ଅଞ୍ଚଳରେ କପାଗ୍ରଷ, ସୂତାକଟା ଓ ଖଦୀବୁଣା କାମ କରୁଥିଲି । ରାଧାମୋହନ ସାହୁ, ରାଧାକୃଷ୍ଣ ବିଶ୍ୱାସରାୟ ଓ ସଦାଶିବ ତ୍ରିପାଠୀ ସେ ସମୟରେ କୋରାପୁଟ କଂଗ୍ରେସର ନେତା ୧୯୩୮ ମସିହାରେ ଜୟପୁର ସହର ନିକଟସ୍ଥ ନୂଆପୁଟରେ କଂଗ୍ରେସ କର୍ମୀ ତାଲିମ୍ ଶିବିର ହୋଇଥିଲା । ଜୟପୁର ଜମିଦାରଙ୍କୁ ତାଙ୍କର ପ୍ରଜାମାନେ ମହାରାଜା ବୋଲି କହୁଥିଲେ । ଜମିଦାରଙ୍କ ତଳିଆ କର୍ମଚାରୀ ଓ ଅନ୍ୟାନ୍ୟ ବହୁ ଶୋଷଣକାରୀ ସ୍ଥାନୀୟ ଆଦିବାସୀମାନଙ୍କୁ ହଇରାଣ କରୁଥିଲେ । ବ୍ରିଟିଶ୍ ସରକାରଙ୍କ ପୁଲିସ୍ ମଧ୍ୟ ଲୋକଙ୍କୁ ଅତ୍ୟାଚାର କରୁଥିଲେ । ତେଣୁ ୧୯୪୨ ମସିହା ବେଳକୁ କୋରାପୁଟର ଆଦିବାସୀମାନେ ଜୟପୁର ଜମିଦାର ଓ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ମାତି ଉଠିଥିଲେ । ଗୁଣୁପୁରର ପ୍ରହ୍ଲାଦ ପାଣିଗ୍ରାହୀ କଂଗ୍ରେସ ବାର୍ତ୍ତା ପ୍ରଚାର କରୁଥିଲେ । ଦେଶ ମିଶ୍ରଣ ନେତା ସ୍ୱର୍ଗତ ଗୋପୀନାଥ ବକ୍ସିପାତ୍ରଙ୍କ ପୁଅ ଶ୍ରୀ କୃଷ୍ଣଚନ୍ଦ୍ର ବକ୍ସିପାତ୍ର ହାଇସ୍କୁଲରେ ପଢିଲା ବେଳେ କଂଗ୍ରେସ କାମ ସହ ସମ୍ପୃକ୍ତ ଥିଲେ । ଜୟପୁରର ନନ୍ଦ ପରିବାରର ସଂଗ୍ରାମୀମାନଙ୍କ ପାଇଁ ବହୁ ପଇସା ଖର୍ଚ୍ଚ କରୁଥିଲେ । ଦିବ୍ୟ ସିଂହ, ଭାଗିରଥି, ହରିବନ୍ଧୁ ଇତ୍ୟାଦି ୫ ଭାଇ ଏହି ପରିବାରରୁ ଆନ୍ଦୋଳନରେ ଯୋଗ ଦେଇଥିଲେ । ନନ୍ଦପୁରର ଭଗବାନ ଖେମୁଣ୍ଡୁ, ଉମରକୋଟର ବଳି ପୂଜାରୀ ଓ ମାତିଲିର ଲକ୍ଷ୍ମଣ ନାୟକଙ୍କର ଆଦିବାସୀମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ଥିଲା । ମହମ୍ମଦ ବାଜି, ଲକ୍ଷ୍ମୀଚନ୍ଦ୍ର ଦାସ ଓ ଦାମୋଦର ସାମନ୍ତରାୟ ଇତ୍ୟାଦି ଯୁବନେତା ମଧ୍ୟ ଦେଶକାମ କରୁଥିଲେ । ଗୁଣୁପୁର ଅଞ୍ଚଳର କର୍ମୀମାନଙ୍କ ମଧ୍ୟରେ ଗୋବର୍ଦ୍ଧନ ଗମାଙ୍ଗୋ, ବୈରାଗୀ କନ୍ଧ, ଯୋଗୁଲୁପାତ୍ରିକା ଓ ନୀଳାଚଳ ପଦାକା ଇତ୍ୟାଦି ପ୍ରଧାନ ।

ହଠାତ୍ ଅଗଷ୍ଟ ବିପ୍ଳବ ଆରମ୍ଭ ହେଲା । ବିଶ୍ୱାସରାୟ ବମ୍ବେ କଂଗ୍ରେସ ଯାଇଥିଲେ । ସେଠାରୁ ସେ ଜିଲ୍ଲାର କେତେ ଜଣ କଂଗ୍ରେସ କର୍ମୀଙ୍କ ପାଖକୁ ଚିଠି ପଠାଇଥିଲେ । ଅଗଷ୍ଟ ୧୨ ତାରିଖ ଦିନ ମୁଁ ତାଙ୍କ ହାତ ଲେଖା ଚିଠି ପାଇଲି । ସେହି ଅନୁସାରେ ପାମ୍ଫଲେଟ୍ ଲେଖାଗଲା । ବିଷୟ ବସ୍ତୁର ସାରାଂଶ "ଗାନ୍ଧୀ ଇତ୍ୟାଦି ଧରାହୋଇ ଜେଲ୍ ଚାଲିଗଲେ, ବର୍ତ୍ତମାନ ଆମର କେହି ନେତା ବୋଲି ବିଚାର ନ କରି ସତ୍ୟ ଅହିଂସା ରାସ୍ତାରେ ସ୍ୱାଧୀନତା ପାଇଁ ଯାହା କରୁଛ ତାହା କର ।"

କୋରାପୁଟ ଜଙ୍ଗଲରେ ଅଗଷ୍ଟମାସ କହିଲେ ଦିନ ଦିନ ଲଗାଣ ବର୍ଷା, ପାହାଡ଼ିଆ ନଇରେ ପ୍ରବଳ ସୁଅ, ପାଣି ଓ ଗଛ ଲଟା ଭରିଯାଇଥିବା ଜଙ୍ଗଲ । ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବ୍ରିଟିଶ୍ ବିରୋଧୀ ଧ୍ୱନି ଦିଆଯାଇଥିଲା । ମୋ ନେତୃତ୍ୱରେ କୁଜେନ୍ଦ୍ରି ଗାଁରୁ ୨୦୦ ଜଣ ପୁରୁଷ ଲୋକ ଓ ପ୍ରାୟ ୫୦ ଜଣ ସ୍ତ୍ରୀ ଲୋକ ଶୋଭାଯାତ୍ରାରେ ବାହାରିଲେ । ଗୁଣୁପୁର ଯିବା ରାସ୍ତାରେ ଆଦିବାସୀମାନଙ୍କର ଏହି ଶୋଭାଯାତ୍ରା ଗୁଲୁମୁଣ୍ଡା, ପଣସଗୁଡ଼ା ଓ ବିଜ୍ଞପୁର ଗାଁ ଅତିକ୍ରମ କଲା । ଆଦିବାସୀମାନେ ଜେଲ୍ ଯିବା ପାଇଁ ପ୍ରସ୍ତୁତ ହୋଇ ଘରୁ ବିଦାୟ ନେଇ ଆସିଥାନ୍ତି । ବଂଶଧାରା ନଦୀରେ ପ୍ରବଳ ବନ୍ୟା ହୋଇଥାଏ । ଡଙ୍ଗାବାଲା ଡରି ଡରି ନଦୀ ପାର କଲା । ଆମେ ଗୁଣୁପୁର, ବାମୁଣୀ ଓ ଅନ୍ୟ କେତେକ ଗାଁ ବୁଲିଲୁ । ଗୁଣୁପୁରରେ ପୁଲିସ୍ ଆମକୁ ଘଉଡ଼ାଇ ଦେଲା । କିନ୍ତୁ କୁଜେନ୍ଦ୍ରିରେ ପହଞ୍ଚିବାର କେତେ ଘଣ୍ଟା ପରେ ସନ୍ଧ୍ୟାବେଳକୁ ପୁଲିସ୍ ଆସି ପହଞ୍ଚିଲେ ଓ ପ୍ରଥମେ ମୋତେ ଡକାଇ ପଠାଇଲେ । ତା' ପରେ ନୀଳକଣ୍ଠ ଗମାଙ୍ଗୋ ଓ ତା'ର ବାପା ବାଇରୁ ଗମାଙ୍ଗୋ ଏବଂ ଗ୍ରାମର ଅନ୍ୟକେତେ ଲୋକଙ୍କୁ ନେଇ ଗୁଣୁପୁର ଥାନାରେ ଅଟକ ରଖିଲେ । ଦୁଇ ତିନି ଦିନ ପରେ ବିଚାର ହୋଇ ୬ ମାସ ଲେଖାଏଁ ଜେଲ୍ ଆଦେଶ ହେଲା । ତା'ପରେ ଆମମାନଙ୍କୁ କୋରାପୁଟ ଜେଲ୍‌କୁ ପଠାଗଲା । କୋରାପୁଟ ଜେଲ୍‌ରେ ବିଭିନ୍ନ ଅଞ୍ଚଳରୁ ପ୍ରାୟ ୬୦୦ ସ୍ୱାଧୀନତା ସଂଗ୍ରାମୀ ଥିଲେ । ନବରଙ୍ଗପୁର, ବୈପାରୀଗୁଡ଼ା, ଜୟପୁର ଓ ନନ୍ଦପୁର ଅଞ୍ଚଳର ଲୋକ ବେଶୀ ଥିଲେ । ଲକ୍ଷ୍ମଣ ନାୟକଙ୍କର ପରାମର୍ଶଦାତା, ବନ୍ଧୁ ନୀଳକଣ୍ଠ ପାତ୍ର ମଧ୍ୟ ସେଠାରେ ଥିଲେ । କିଛିଦିନ ପରେ ମୋତେ ଜଣିକିଆ ସେଲରେ ରଖାଗଲା । ୬ ମାସ ପରେ ମୁଁ ଜେଲରୁ ଫେରି ପୁଣି ଶୋଷକ ଗୋଷ୍ଠୀ ବିରୁଦ୍ଧରେ ଜନମତ ସୃଷ୍ଟି କଲି ଓ ଜନସାଧାରଣଙ୍କ ବିଚାରକୁ ସଙ୍ଗଠିତ ରୂପ ଦେଲି । ମୋ ନାମରେ ମିଥ୍ୟା କେସ୍ କରାଯାଇ ଗିରଫ କରାଗଲା ଓ ମୋତେ ୩ୟ ଶ୍ରେଣୀ ବନ୍ଦୀ ଭାବେ ୬ ମାସ ସଜା ମିଳିଲା । ପୁଣି ସେଲ୍‌ରେ ରଖାଗଲା, ମାଣ୍ଡିଆ ରୁଟି ଓ ଡାଲି ଖାଇବାକୁ ଦିଆଗଲା । ଲକ୍ଷ୍ମଣ ନାୟକ ସେହି ସମୟରେ ଜେଲ୍‌ରେ ଥାଆନ୍ତି । ତାଙ୍କର ବିଚାର ଚାଲିଥାଏ । ସେଲ୍‌କୁ ଗାଧୋଇବାକୁ ଗଲାବେଳେ ମୁଁ ତାଙ୍କୁ ମଝିରେ ମଝିରେ ଭେଟେ । ତାଙ୍କୁ ଜଗିବା ଦାୟିତ୍ୱ ଥାଏ ରାମଚନ୍ଦ୍ର ହାବିଲଦାରର । ଲକ୍ଷ୍ମଣ ଜେଲ୍‌ରେ ଭାଗବତ ଓ ଅନ୍ୟାନ୍ୟ ଧର୍ମ ପୁସ୍ତକ ପଢୁଥାନ୍ତି । ମୋର ସେହି ଜେଲ୍ ରହଣୀ ଭିତରେ ତାଙ୍କୁ ଫାଶୀ ଆଦେଶ ମିଳିଲା । ନବରଙ୍ଗପୁରର ମହମ୍ମଦ ବାଜି ଓ ମୁଁ ହାବିଲଦାରକୁ ଲୁହାବୋଲା କରି ଲକ୍ଷ୍ମଣଙ୍କ ସେଲ୍‌କୁ ଦେଖାକରିବାକୁ ଗଲୁ । ସେ କଥାବାର୍ତ୍ତା ମଝିରେ କହିଲେ 'ସ୍ୱରାଜ ଦେଖି ପାରିଲି ନାହିଁ ଆଜ୍ଞା', ସେ ଟିକିଏ ଦବି ଯାଇଥିଲେ । କିନ୍ତୁ ଭଗବତ ବିଶ୍ୱାସ ଦୃଢ଼ ଥିବାରୁ ବିଶେଷ ପ୍ରତିକ୍ରିୟା ପ୍ରକାଶିତ ହୋଇ ନ ଥିଲା । ମୋର ଯେତେ ଦୂର ଅନୁମାନ ସେତେବେଳେ ମଧ୍ୟ ସେ ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ରହିଥିଲେ ।

ମାତିଲ ଥାନାରେ ଯେଉଁମାନେ ବିକ୍ଷୋଭ ପ୍ରଦର୍ଶନ କରୁଥିବା ସମୟରେ ସରକାରୀ କର୍ମଚାରୀକୁ ହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାଏକଙ୍କ ସହ ଗିରଫ ହୋଇଥିଲେ ସେମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଆଜୀବନ କାରାଦଣ୍ଡ ଆଦେଶ ପାଇଲେ । ବିଚାର ଶେଷ ହେବା ପରେ ପରେ ସେମାନଙ୍କୁ ଏକ ଅଦ୍ଭୁତ ଦଣ୍ଡ

ଦିଆଗଲା, ସେମାନଙ୍କ ଦୁଇ ଗୋଡ଼ରେ ଲୁହା ବଳା ପିନ୍ଧାଇ ଦିଆଗଲା ଓ ସେହି ବଳା ଦୁଇଟିକୁ ଯୋଡ଼ି ଗୋଟିଏ ଦେଢ଼ଫୁଟ ଲମ୍ବର ଲୁହାରଡ଼୍ ଲଗାଇ ଦିଆଗଲା । ସେହି ଦୁଇ ଗୋଡ଼ର ବଳାରୁ ପୁଣି ଦୁଇଟି ଲୁହା ରଡ଼୍ ପ୍ରାୟ ଦୁଇଫୁଟ ଲମ୍ବର ବାହାରିଥିବ । ସେହି ରଡ଼୍ ଦୁଇଟିର ଅପର ପାର୍ଶ୍ୱ ମୁଦି ପରି ହୋଇଥିବ । ବନ୍ଦୀ ତାକୁ ଦୁଏତ ହାତରେ ଧରି ଚାଲିବ, ନହେଲେ ତା' ଘର ଭିତରେ ଗାମୁଛାକୁ ଦଉଡ଼ି ପରି ଗଳାଇ ଅଣ୍ଟାରେ ବାନ୍ଧିବ । ଯଦି ଲୁହାରଡ଼ ଦୁଇଟିକୁ ଏପରି ଧରା ନଯାଏ ତେବେ ତାହା ଗୋଡ଼ ପାଖରେ ପଡ଼ି ରହିବ, ଯା' ଫଳରେ ଚାଲିବା ସମ୍ଭବ ହେବ ନାହିଁ । ଏହାକୁ ଦଣ୍ଡା ବେଡ଼ି କୁହାଯାଉଥିଲା । ମୁଁ ଜାଣି ନାହିଁ, ମହାମାନ୍ୟ ବ୍ରିଟିଶ୍ ସରକାର ତାଙ୍କର ଅନୁଗତ ରାଜ କର୍ମଚାରୀମାନଙ୍କୁ ଏପରି ଦଣ୍ଡ ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ କି ନାହିଁ ଓ ଭାରତର ଅନ୍ୟତ୍ର ଏପରି ଦଣ୍ଡର ବ୍ୟବସ୍ଥା ଥିଲା କି ନାହିଁ । କିନ୍ତୁ ଏହା ଏକ ଅତ୍ୟାଚାର ବୋଲି ମୁଁ ଅନୁଭବ କଲି । ସେହି ଦଣ୍ଡ ବେଡ଼ି ପିନ୍ଧି କଏଦୀମାନଙ୍କୁ ମୁରୁଗା ଗଛର ପଟ୍ଟ ଛେଚି ଝୋଟ ବାହାର କରିବାକୁ ପଡ଼େ । ସେମାନଙ୍କ ଦେହରେ ମୁରୁଗା ପଟ୍ଟର ରସ ଛିଟିକି ଆସି ପଡ଼େ ଓ ଯେଉଁ ଜାଗାରେ ସେ ରସ ପଡ଼େ ସେହି ଜାଗାରେ କୁଣ୍ଡାଇ ହୋଇ ଭିବି ଭିବି ଫୁଲି ଯାଏ । କୋରାପୁଟିଆ କଏଦୀ, ସେ ମନେ ମନେ ଧରି ନେଇ ଯାଇଥାଏ ଯେ ଦେଶର ସ୍ୱାଧୀନତା ପାଇଁ ଏସବୁ କଷ୍ଟ ସହିବାକୁ ପଡ଼େ ।

ଜେଲ୍‌ରେ ଯେତିକି ବନ୍ଦୀଙ୍କ ପାଇଁ ବ୍ୟବସ୍ଥା ଥିଲା ତା'ଠାରୁ ବହୁ ଅଧିକ ସଂଖ୍ୟାକ ରାଜନୈତିକ ବନ୍ଦୀ ଥିଲେ । ଗୋରୁ ଗୁହାଳ ପରି ଲମ୍ବା ସେଲ୍‌ମାନଙ୍କରେ ଶହ ଶହ କଏଦୀ ଭର୍ତ୍ତି ହେଉଥିଲେ । ଅସ୍ୱାସ୍ଥ୍ୟକର ପରିବେଶ, ଶୋଇବାର ସୁବିଧା ନାହିଁ, ଖାଇବା ପାଇଁ ଭାତ ମୁଠାଏ ଓ ଡାଲି ଟିକିଏ, ନହେଲେ ମାଣ୍ଡିଆ, ରୁଟି ଓ ଡାଲି, ରୋଗ ହେଲେ ଚିକିତ୍ସାର ମଧ୍ୟ ଭଲ ବ୍ୟବସ୍ଥା ନଥିଲା । ସେମାନଙ୍କ ପାଇଁ ଭଲ ଖାଦ୍ୟ ଦିଅ, ତାଙ୍କୁ ଅଧିକ ସୁବିଧା ଦିଅ ଏହି ଦାବୀରେ ମୋର ଅନଶନ କଲେ । ତେଣୁ ମୋର ଶିକ୍ଷାଗତ ବିକାଶ ହେବାର ସୁଯୋଗ ହେଲା ନାହିଁ ।

ଚିକିତ୍ସା ଅଭାବରୁ ଜେଲ୍‌ରେ ଅନେକ ବନ୍ଦୀ ମରିଗଲେ । ସେମାନଙ୍କର ଏକ ନାମ ତାଲିକା ମୁଁ ସଂଗ୍ରହ କଲି ଓ ତାହା ଜ୍ଞାନମଣ୍ଡଳର ସମ୍ପାଦକ ବିନୋଦ କାନୁନ୍‌ଗୋଙ୍କୁ ଦେଇଥିଲି । ସମସ୍ତଙ୍କ ନାମ ଏବେ ମନେରଖି ପାରି ନାହିଁ । ଯେତିକି ମନେ ଅଛି ତାହା ନିମ୍ନରେ ଦିଆଗଲା–

**୧୯୪୨ ଅଗଷ୍ଟ ଆନ୍ଦୋଳନରେ ଜୀବନ ଦେଇଥିବା କୋରାପୁଟ ଜିଲ୍ଲାର ବୀର ଶହୀଦଗଣ ।**

(୧) ଲକ୍ଷ୍ମଣ ନାଏକ, ଗ୍ରାମ ତେଣ୍ଟୁଳିଗୁମା, ଥାନା ମାଟିଲି, ବ୍ରହ୍ମପୁର ଜେଲରେ ଶତ୍ରୁର ଫାଶୀରେ ଶହିଦ୍ ହେଲେ । (୨) [illegible] ନାଏକ, ଗ୍ରାମ ମିଣ୍ଡାରିଗୁଡ଼ା, ଥାନା ମାଟିଲି, (୩) ନରସିଂହ ଦେବ, ଗ୍ରାମ କୁଆଗୁଡ଼ା, ଥାନା ମାଟିଲି, (୪) [illegible] ଭୂମିଆ, ଗ୍ରାମ ଭୂତକଗୁଡ଼ା, ଥାନା ମାଟିଲି, (୫) ଲିଙ୍ଗ ଭୂମିଆ, ଗ୍ରାମ ଟିମିସପୁଟ, ଥାନା ମାଟିଲି, ମାଟିଲି ଥାନାରେ ଶତ୍ରୁର ଗୁଳିରେ ଶହୀଦ୍ ହେଲେ, (୬) ଜଗପତି ଅମାନାତ୍ୟ, ଗ୍ରାମ ବଣ୍ଡା, [illegible] ଥାନା ନବରଙ୍ଗପୁର, (୭) ମୁଦୁ ଭତରା ନନ୍ଦାହାଣ୍ଡି, ଥାନା ନବରଙ୍ଗପୁର, (୮) ଆନନ୍ଦ ଗୌଡ଼, ଗ୍ରାମ ଦୁଗୁଗୁଡ଼ା, ଥାନା ନବରଙ୍ଗପୁର, ନବରଙ୍ଗପୁର ପାପଡ଼ାହାଣ୍ଡି ନଦୀତଟରେ ଶତ୍ରୁର ଗୁଳିରେ ଶହୀଦ୍ ହେଲେ, (୯) ବଳି ପତରା, ଗ୍ରାମ ତଣ୍ଟୀ, ଥାନା ତେନ୍ତୁଳିଖୁଣ୍ଟି, (୧୦) ବୁଦ୍ଧୁ ଅମାନାତ୍ୟ, ଗ୍ରାମ ଦାସୁରିପଦର, ଥାନା ତେନ୍ତୁଳିଖୁଣ୍ଟି, (୧୧) ରତନ ଭଣ୍ଡାରି, ଗ୍ରାମ ଦୁରୁଞ୍ଜି ଥାନା ତେନ୍ତୁଳିଖୁଣ୍ଟି, (୧୨) ରାମଚନ୍ଦ୍ର ଅମାନାତ୍ୟ , ଗ୍ରାମ ପୁପୁଗାଁ ଥାନା ତେନ୍ତୁଳିଖୁଣ୍ଟି, (୧୩) ଘାସି ଜାନି, ଗ୍ରାମ ନୂଆଗାଁ ଥାନା ତେନ୍ତୁଳିଖୁଣ୍ଟି, (୧୪) ଶୁକ୍ରୁ ମୁଦୁଲି, ଗ୍ରାମ ସୁଲାବାଲ ଥାନା ତେନ୍ତୁଳିଖୁଣ୍ଟି, (୧୫) ରତନ ପୂଜାରୀ, ଗ୍ରାମ ଦାସୁରିପଦର, (୧୬) ଦୀନବନ୍ଧୁ ଜାନି, ଗ୍ରାମ ନୂଆଗାଁ ଥାନା ତେନ୍ତୁଳିଖୁଣ୍ଟି, (୧୭) ବୁଦ୍ଧୁ ଅମାନାତ୍ୟ, ଗ୍ରାମ ଦୁରୁଞ୍ଜି, ଥାନା ତେନ୍ତୁଳିଖୁଣ୍ଟି, (୧୮) ଜଗନ୍ନାଥ ଅମାନାତ୍ୟ, ଗ୍ରାମ ଗାଡ଼ପୁଟ, ଥାନା ତେନ୍ତୁଳିଖୁଣ୍ଟି, (୧୯) ସହଦେବ ପୂଜାରୀ, ଗ୍ରାମ ପଦ୍ରେଇଗୁଡ଼ା, ଥାନା ତେନ୍ତୁଳି ଖୁଣ୍ଟି, (୨୦) ବନ୍ଧୁଗିଆ ଭତରା, ଗ୍ରାମ ବଲାଇଗୁଡ଼ା ଥାନା ପାପଡ଼ା ହାଣ୍ଡି, (୨୧) ଭଗବାନ ଭତରା ମଣ୍ଡୀଗୁଡ଼ା ଥାନା ପାପଡାହାଣ୍ଡି, ପାପଡ଼ାହାଣ୍ଡି ନଦୀ ତଟରେ ଶତ୍ରୁର ଗୁଳିରେ ସହୀଦ୍ ହେଲେ । (୨୨) କଟନା ଦୋରା ଗ୍ରାମ ପଟାଙ୍ଗୀ, ଥାନା ପଟାଙ୍ଗୀ, (୨୩) ଗୋପୀନାଥ ପୂଜାରୀ, ଗ୍ରାମ ପାନଗୁମା, ଥାନା ମାଟିଲି, (୨୪) କର୍ଣ୍ଣେଷୁନୀ ଝରିଆ, ଗ୍ରାମ କିଆଙ୍ଗ, ଥାନା ମାଟିଲି, (୨୫) ଗୁରୁ କଟିଆ, ଗ୍ରାମ ଝିମିସପୁଟ, ଥାନା ମାଟିଲି, (୨୬) ଉଦେନାଥ ଓଡ଼, ଗ୍ରାମ ବୈଶାଖ ଘାଟ, ଥାନା ମାଟିଲି, (୨୭) ବଳରାମ ଭୂମିଆ, ଗ୍ରାମ ଟେପରୁପାଲି, ଥାନା ମାଟିଲି, (୨୮) ମଙ୍ଗଳା ମାଡ଼କାମି, ଗ୍ରାମ ସରଗିଗୁଡ଼ା, ଥାନା ମାଟିଲି, (୨୯) ସୋମନାଥ ଭୂମିଆ, ଗ୍ରାମ ଉଦେଗିରି, ଥାନା ମାଟିଲି, (୩୦) ଚନ୍ଦ୍ର ବାକା, ଗ୍ରାମ ନାଇକଗୁଡ଼ା, ଥାନା ମାଟିଲି, (୩୧) ଦାମା ପୂଜାରୀ, ଗ୍ରାମ ତଲାଣାଗୁଡ଼ା, ଥାନା ମାଟିଲି, (୩୨) ଶୁକ୍ରୁ ଗୋଡେ, ଗ୍ରାମ ସଉଲିଗୁଡ଼ା, ଥାନା ମାଟିଲି, (୩୩) ଗୋବିନ୍ଦ କୋପେ, ଗ୍ରାମ ଗାଇଗାଁ, ଥାନା ମାଟିଲି, (୩୪) ସମାରୁ ନାଇକ, ଗ୍ରାମ ପିତାଡଙ୍ଗ, ଥାନା ମାଟିଲି, (୩୫) ଅର୍ଜୁନ ଭୂମିଆ, ଗ୍ରାମ ପାନଗୁମା, ଥାନା ମାଟିଲି, (୩୬) ଚୈତନ୍ୟ ପୂଜାରୀ, ଗ୍ରାମ ବାକିଲିଗୁଡ଼ା, ଥାନା ମାଟିଲି, (୩୭) ଲାଇଖନ ସମର, ଗ୍ରାମ ସାରଙ୍ଗପାଲି, ଥାନା ମାଟିଲି କୋରାପୁଟ ଜେଲ୍‌ରେ ଶତ୍ରୁର ଲାଠି ମାଡରେ ଶହୀଦ ହେଲେ । (୩୮) ଭକତ କରା, ଗ୍ରାମ ଜବାଗୁଡ଼ା, ଥାନା ପାଡୁଆ, (୩୯) ଉସରୁ ସିଶା, ଗ୍ରାମ ମାଲେଙ୍ଗୀ, ଥାନା ପାଡୁଆ,(୪୦) ଭଗବାନ କରା, ଗ୍ରାମ କନିପଡା, ଥାନା ପାଡୁଆ, (୪୧) ଅନ୍ଧୁ ଗଲରି, ଗ୍ରାମ ପ୍ରତିହିଁ, ଥାନା ପାଡୁଆ, (୪୨) ସମରା ମାଛି, ଗ୍ରାମ ସିନ୍ଧୁପୁଟ, ଥାନା ପାଡୁଆ, (୪୩) ଲିଙ୍ଗରା ଧନୁର୍ଜୟ, ଗ୍ରାମ ସାକୁଲୁ ଥାନା ପାଡୁଆ, କୋରାପୁଟ ଜେଲରେ ଶତ୍ରୁର ଲାଠିମାଡରେ ଶହୀଦ ହେଲେ ଏବଂ ଭଗବାନ ଖୁଲ, ଗ୍ରାମ ବାଡ୍ରା ଥାନା ଜୟପୁର (୪୫) ଖଗପତି ପୂଜାରୀ, ଗ୍ରାମ ପରସେଲା, ଥାନା ବରିଗୁମା, (୪୬) ହରି ଅମାନାତ୍ୟ, ଗ୍ରାମ ବାମଣି କୋଟ, ଥାନା ନବରଙ୍ଗପୁର, (୪୭) ଲାବାନ୍ୟ ବତରା, ଗ୍ରାମ ପାନକୁହୁଲି ଥାନା ନବରଙ୍ଗପୁର, (୪୮) ରଘୁନାଥ ଭଣ୍ଡାରୀ, ଗ୍ରାମ ଦୁରଞ୍ଜି, ଥାନା ତେନ୍ତୁଳିଖୁଣ୍ଟି

(୪୯) ଗଙ୍ଗାଧର ମୁଦୁଲି, ଗ୍ରାମ ପିଲବାସନି, ଥାନା ତେନ୍ତୁଳିଖୁଣ୍ଟି, (୫୦) ରତନ ଭତରା, ଗ୍ରାମ କୁସୁମି, ଥାନା ତେନ୍ତୁଳିଖୁଣ୍ଟି, (୫୧) ସଦାଶିବ ରଣା, ଗ୍ରାମ ମସୁଗାଁ, ଥାନା ତେନ୍ତୁଳିଖୁଣ୍ଟି, (୫୨) ମୁଦିଆ ଭତରା, ଗ୍ରାମ କଣାଗୁଡ଼ାବସାଗୁମୁଣ୍ଡା, ଥାନା କଡ଼ିଙ୍ଗା, (୫୩) ଖଗେଶ୍ୱର ମାଝି, ଗ୍ରାମ ଡାପଗୁଡ଼ା, ଥାନା ମୈଦଲପୁର, (୫୪) ଧବୁଲୁ ପାଇକ, ଗ୍ରାମ ଟଟାଗୁଡ଼ା, ଥାନା ମୈଦଲପୁର, (୫୫) ବାକଟି ବତରା, ଗ୍ରାମ ଗପିଗୁଡ଼ା, ଥାନା ମୈଦଲପୁର, (୫୬) ଦଦି ବଲରା, ଗ୍ରାମ ଗପିଗୁଡ଼ା, ଥାନା ମୈଦଲପୁର, (୫୭) ରଣ୍ଡିକା ଭତରା, ଗ୍ରାମ ଏକରୀ,ଥାନା ପାପଡ଼ାହାଣ୍ଡି, (୫୮) ମାଧବ ମାଝି, ଗ୍ରାମ ମାଝିଗୁଡ଼ା, ଥାନା ପାପଡାହାଣ୍ଡି, (୫୯) କାଳିଆ ମାଝି, ଗ୍ରାମ ଗ୍ରାନିଆଗୁଡ଼ା, ଥାନା ଡାବୁଗାଁ, (୬୦) ଜଗୁ ମାଝି, ଗ୍ରାମ ଚେଗଟିଆସ, ଥାନା ଡାବୁଗାଁ, (୬୧) ବନମାଳୀ ହରିଜନ, ଗ୍ରାମ ପାଟି, ଥାନା ଡାବୁଗାଁ, (୬୨) ଜଗା ପୂଜାରୀ, ଗ୍ରାମ ବରଣ୍ଡି, ଥାନା ଉମରକୋଟରେ କୋରାପୁଟ ଜେଲ୍‌ରେ ରୋଗର ବିନା ଚିକିତ୍ସାରେ ଶହୀଦ୍ ହେଲେ । (୬୩) ସୁକମନ ଭତରା, ଗ୍ରାମ ଗପିଗୁଡ଼ା, ଥାନା ମୈଦଲପୁର, (୬୪) ପର୍ଶୁରାମ ମାଳି, ଗ୍ରାମ ଚନ୍ଦ୍ରପୁର, ଥାନା ମୈଦଲପୁର, (୬୫) ଲଈଖଣ ମାଣ୍ଡା, ଗ୍ରାମ ନୂଆଗାଁ, ଥାନା ମୈଦଲପୁର, (୬୬) ବେନ୍ଦ୍ରୁ ପାଇକ, ଗ୍ରାମ ଗର୍ପଗୁଡ଼ା, ଥାନା ମୈଦଲପୁର, (୬୭) ମଙ୍ଗଳୁ ଭତରା, ଗ୍ରାମ ଉପରି ଗାଁ, ଥାନା କଡ଼ିଙ୍ଗା, (୬୮) ଡମ୍ବରୁ ମାଝି, ଗ୍ରାମ ଲାଣ୍ଡିଗୁଡ଼ା, ଥାନା କଡ଼ିଙ୍ଗା, (୬୯) ଘାସିଆ ଗଣ୍ଡ, ଗ୍ରାମ ଲାଣ୍ଡିଗୁଡ଼ା, ଥାନା କଡ଼ିଙ୍ଗା, ନବରଙ୍ଗପୁର ଜେଲ୍‌ରେ ରୋଗର ବିନା ଚିକିତ୍ସାରେ ଶହୀଦ୍ ହେଲେ । (୭୦) ପରମାନନ୍ଦ ସଉରା, ଗ୍ରାମ କଙ୍ଗ୍ରା, ଥାନା ନବରଙ୍ଗପୁର, ନବରଙ୍ଗପୁର ହସ୍‌ପିଟାଲରେ ଶତ୍ରୁର ଗୁଳିରେ ଶହୀଦ୍ ହେଲେ । (୭୧) ସଦାଶିବ ବେହେରା, ଗ୍ରାମ ଜୟପୁର, ଥାନା ଜୟପୁର, କୋରାପୁଟ ଜେଲ୍‌ରେ ରୋଗର ବିନା ଚିକିତ୍ସାରେ ଶହୀଦ୍ ହେଲେ । (୭୨) ଡମ୍ବରୁ ଡଳିଆ, ଗ୍ରାମ ଜୟପୁର, ଥାନା ଜୟପୁର, କୋରାପୁଟ ଜେଲ୍‌ରେ ରୋଗର ବିନା ଚିକିତ୍ସାରେ ଶହୀଦ୍ ହେଲେ (୭୩) ଲଈଖଣ ଡମ, ଗ୍ରାମ ଲାଲୁଗାଁ, ଥାନା ମାତିଲି, କୋରାପୁଟ ଜେଲରେ ଶତ୍ରୁର ଗୁଳି ମାଡ଼ରେ ଶହୀଦ୍ ହେଲେ ।

ଏମାନଙ୍କର କଥା ଆଜି ଭାରତ ଇତିହାସରେ ଲେଖା ହୋଇ ନାହିଁ । ସେମାନେ ଗାନ୍ଧୀ ମହାତ୍ମାଙ୍କୁ ଦେଖି ନଥିଲେ, କେହି କେହି ରାଧାକୃଷ୍ଣ, ବିଶ୍ୱାସ ରାୟଙ୍କୁ ଦେଖିଥିବେ ଅବା, ଅନ୍ଧାରୁଆ ଅଞ୍ଚଳ ସେ କୋରାପୁଟ, ସେହି ଭୂଇଁର ତଥା କଥିତ ପଛୁଆ ଲୋକ ଏହି ଆଦିବାସୀ, ଯିଏ ଖୁବ୍ କମ୍ ବୁଝିଥିଲା ସ୍ୱାଧୀନତାର ତତ୍ତ୍ୱ କିନ୍ତୁ ସେ ଠିକ୍ ବୁଝିଥିଲା ଗାନ୍ଧୀ ମହାତ୍ମାର ଦୂତମାନେ ଯାହା କହୁଛନ୍ତି, ତାହା ତା'ର ଭଲ ପାଇଁ । ସେଥି ପାଇଁ ସେ ଜେଲ୍ ଯିବ, ମାଡ଼ ଖାଇବ, ମରିଗଲେ ମରିଯିବ ସିନା, ଚେଷ୍ଟା କରିବ । ଯଦି ଏ ସାହୁକାର, ସୁଣ୍ଡି, କାଳିଆଁ, ପୋଲିସ୍, ଫରେଷ୍ଟ ଗାର୍ଡ୍, ଅମିନ, ତସ ପିଆଦାମାନଙ୍କର ନିଷ୍ଠୁର କବଳରୁ ତାକୁ ମୁକୁଳିବାକୁ ହେବ, ତେବେ ସେ ଏଇ ଆନ୍ଦୋଳନରେ ଝାସ ଦେବ । ଏହି ବିଶ୍ୱାସରେ ଯିଏ ଜେଲ୍‌ର ଉଚ୍ଚା ପାଚେରୀ ଭିତରେ ଅଯତ୍ନରେ ମରିଗଲା, ତାକୁ ଶହୀଦ୍ ନ କହି ଆଉ କ'ଣ କୁହାଯାଇପାରେ ?

---

ବନବାସୀ ସେବା ସଙ୍ଘ,
ଗ୍ରାମ/ପୋ:-ବାଲିଗୁଡ଼ା,
ଜିଲ୍ଲା-ଫୁଲବାଣୀ ।



୧୯୯୧ ଜନଗଣନାରେ ପ୍ରଶଂସନୀୟ କାର୍ଯ୍ୟ କରିଥିବା ପୋଷ୍ଟ୍ରୁ ଫୁଲବାଣୀଠାରେ ଅନୁଷ୍ଠିତ ସ୍ୱାଧୀନତା ଦିବସ ପ୍ୟାରେଡ୍ ଉତ୍ସବରେ ମନ୍ତ୍ରୀ ଶ୍ରୀ ଅଦ୍ୱୈତ ପ୍ରସାଦ ସିଂହ ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ବସନ୍ତ ଚନ୍ଦ୍ର ସେନାପତିଙ୍କୁ ରୌପ୍ୟ ପଦକ ପ୍ରଦାନ କରୁଛନ୍ତି ।

# ଇଣ୍ଡୋନେସିଆରେ ଓଡ଼ିଆ ସଂସ୍କୃତି

• ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି

ଦକ୍ଷିଣ-ପୂର୍ବ ଏସିଆ (ଇଣ୍ଡୋନେସିଆରେ ପ୍ରାଚୀନ କଳିଙ୍ଗ (ବର୍ତ୍ତମାନର ଓଡ଼ିଶାର) ନୌ-ବାଣିଜ୍ୟ ଅତି ସୁଦ୍ଧା ଇତିହାସ ପ୍ରସିଦ୍ଧ। ସୁଦୀର୍ଘ ସମୁଦ୍ର ଉପକୂଳରେ କଳିଙ୍ଗ ରାଜ୍ୟର ଅବସ୍ଥିତି ଥିବାରୁ ଏହାର ଅଧିବାସୀମାନେ ନୌ-ବାଣିଜ୍ୟରେ ଖୁବ୍ ପାରଦର୍ଶିତା ଲାଭ କରିଥିଲେ। ସେମାନେ ବିରାଟ ଜାହାଜ ବା ବୋଇତମାନ ନିର୍ମାଣ କରି ସୁଦୂର ଜାଭା, ସୁମାତ୍ରା, ନାରିକେଳ ଦ୍ୱୀପ (ବାଲି), ସୁବର୍ଣ୍ଣ ଦ୍ୱୀପ (ବୋର୍ଣ୍ଣିଓ), ଚୀନ, ଜାପାନ, ସିଂହଳ ପ୍ରଭୃତି ଦେଶମାନଙ୍କ ସହିତ କେବଳ ଯେ ବାଣିଜ୍ୟ କରୁଥିଲେ ତାହା ନୁହେଁ, ଅନନ୍ତ ଅଗାଧ ପାରାବାରର ସପାରିରେ ଉପନିବେଶ ସ୍ଥାପନ କରି କଳିଙ୍ଗର ବିରାଟ ସଭ୍ୟତା ଓ ସଂସ୍କୃତିର ପ୍ରଭାବ ମଧ୍ୟ ସେଠାରେ ବିସ୍ତାର କରି ପାରିଥିଲେ। ଏ କଥା କାହାର କଳ୍ପନା ନୁହେଁ କିମ୍ବା କିମ୍ବଦନ୍ତୀର ଅସାର କଥାବସ୍ତୁ ନୁହେଁ। ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ଗ୍ରୀକ୍ ଭୌଗୋଳିକ ଟଲେମି (ptolemy)ଙ୍କ ଲେଖାରୁ ଜଣାପଡ଼େ ଯେ ପଲୁରା ବା ପାଲୁରୁ - ଗଞ୍ଜାମ ନିକଟସ୍ଥ ଏକ ନଗର, ନନିଗେନ - ପୁରୀ, କଟ୍ଟକମ-କଟକ, କୋଣଗର-କୋଣାର୍କ, କୋଶପ-ବାଲେଶ୍ୱର, ପଲୁରୁ-ଜଳେଶ୍ୱର, ମନଦ-ମହାନଦୀ, ଡୋସ୍-ବ୍ରାହ୍ମଣୀ, ଦୋସରନ୍-ବୈତରଣୀ, ଅଦମସ-ସୁବର୍ଣ୍ଣରେଖା ପ୍ରଭୃତି କଳିଙ୍ଗ ବିଭିନ୍ନ ପ୍ରଧାନ ନଦୀ ଓ ନଗରମାନ ପ୍ରଥମ ଶତାବ୍ଦୀର ବହୁ ପୂର୍ବରୁ ବାଣିଜ୍ୟ କେନ୍ଦ୍ର ଥିଲା। (୧) ଉପକୂଳରେ ଥିବା ଚିଲିକା, ପୁରୀ, କୋଣାର୍କ, ତାମ୍ରଲିପ୍ତ, ସୁବର୍ଣ୍ଣରେଖା, ନରେଖା, ସାରଙ୍ଗୋ, ଛଳୁଅ, ବାଲେଶ୍ୱର, ଲୋଚନପୁର, ଚୁଡ଼ାମଣ, ଧାମରା ପ୍ରଭୃତି ପ୍ରଧାନ ବନ୍ଦର ପାଇଁ ପ୍ରସିଦ୍ଧି ଲାଭ କରିଥିଲା। (୨) ଖ୍ରୀଷ୍ଟପୂର୍ବ ତୃତୀୟ ଓ ଚତୁର୍ଥ ଶତାବ୍ଦୀର କେତେକ ଅନୁଶାସନରୁ ଜଣାପଡ଼େ ଯେ ସମୁଦ୍ର ଯାତ୍ରା ଓ ସମୁଦ୍ର ବାଣିଜ୍ୟ ସେତେବେଳେ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷା ବିଧାନର ଅନ୍ତର୍ଗତ ହୋଇଥିଲା। (୩) ଜାଭା ଦ୍ୱୀପର ଇତିହାସରୁ ଜଣାପଡ଼େ ଯେ କଳିଙ୍ଗର ରାଜକୁମାର ୨୦ ହଜାର ପରିବାରଙ୍କୁ ସେଠାକୁ ପଠାଇଥିଲେ। କାଳକ୍ରମେ ସେମାନେ ବହୁ ବୃଦ୍ଧିତ ହୋଇ 'କାନେ' ନାମକ ଏକ ଶକ୍ତିଶାଳୀ ରାଜାଙ୍କର ପ୍ରଜା ହୋଇ ରହିଥିଲେ। ସେହି ରାଜାଙ୍କର ବଂଶଧରମାନେ ଦୀର୍ଘ ସୁଦୀର୍ଘତ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ। (୪) ସୁପ୍ରସିଦ୍ଧ ଐତିହାସିକ ଏଲିଫିନ୍ ଷ୍ଟୋନ୍ ଜାଭାରେ ହିନ୍ଦୁ ଉପନିବେଶ ସ୍ଥାପନର ଇତିହାସ ଉଲ୍ଲେଖକୁ ଯାଇ କହନ୍ତି ଯେ କଳିଙ୍ଗରୁ ଦଳେ ହିନ୍ଦୁ ଜାଭାରେ ଉପସ୍ଥିତ ହୋଇ ସେ ସ୍ଥାନର ଅଧିବାସୀମାନଙ୍କୁ ସଭ୍ୟ କରିଥିଲେ ଓ ... ଦେଶକୁ ଦଖଲ କରି ସେଠାରେ ହିନ୍ଦୁ ରାଜ୍ୟ ସ୍ଥାପନ କରିଥିଲେ। କଳିଙ୍ଗର ଲୋକେ ସେମାନଙ୍କର ଜାଭା ବିଜୟକୁ ଚିର ସ୍ମରଣୀୟ କରିବା ନିମିତ୍ତ ସେଠାରେ ଏକ ଅବ୍ଦ, ଖ୍ରୀଷ୍ଟ ୭୫ରୁ ପ୍ରଚଳନ କରିଥିଲେ। ଏବେ ସୁଦ୍ଧା ସେହି ଅବ୍ଦ ଜାଭାରେ ପ୍ରଚଳିତ ... ସେଠାରେ ଏବେ ମଧ୍ୟ ବହୁ ସଂଖ୍ୟକ ହିନ୍ଦୁ ମନ୍ଦିରର ... ଅଛି ।(୫)

ଚୀନ୍ ପରିବ୍ରାଜକ ଫାହିୟାନ୍ ଚତୁର୍ଥ ଶତାବ୍ଦୀର ଶେଷ ଭାଗରେ ଯେତେବେଳେ ଜାଭା ଦ୍ୱୀପରେ ଥିଲେ ସେ ସେଠାରେ କେବଳ ହିନ୍ଦୁମାନଙ୍କୁ ଦେଖିଥିଲେ ଏବଂ ସେ ବ୍ରାହ୍ମଣ ନାବିକମାନଙ୍କ ଦ୍ୱାରା ଚାଳିତ ଜାହାଜରେ ଉତ୍କଳର ମୁଖ୍ୟ ବନ୍ଦର ତାମ୍ରଲିପ୍ତଠାରୁ ଲଙ୍କା, ଲଙ୍କାରୁ ଜାଭା ଏବଂ ଜାଭାରୁ ଚୀନ ଦେଶକୁ ଯାତ୍ରା କରିଥିଲେ। ସେଥି ପାଇଁ ରାଧାକୁମୁଦ ମୁଖାର୍ଜି ମତ ଦିଅନ୍ତି ଯେ ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀର ବହୁକାଳ ପୂର୍ବରୁ କଳିଙ୍ଗର ଲୋକେ ଜାଭାରେ ଉପନିବେଶ ସ୍ଥାପନ କରିଥିଲେ ଏଥିରେ ମତଦ୍ୱୈଧ ହେବାର କୌଣସି କାରଣ ନାହିଁ ।(୬)

ସପ୍ତମ ଶତାବ୍ଦୀ ବେଳକୁ ପଶ୍ଚିମ ଜାଭାର ରାଜାଙ୍କ କ୍ଷମତା କ୍ରମେ ହ୍ରାସ ହେବାକୁ ଲାଗିଲା ଓ କେନ୍ଦ୍ର ଜାଭା ଏକ ଶକ୍ତିଶାଳୀ ରାଜ୍ୟରେ ପରିଣତ ହେଲା। ଚୀନର ଟାଙ୍ଗ ରାଜବଂଶ (Tang Dynasty) ଇତିହାସରୁ ସୂଚନା ମିଳେ ଯେ ହୋଲିଙ୍ଗ (Ho-ling) କଳିଙ୍ଗର ଅନ୍ୟ ନାମ ଥିଲା। ୭ମ ଶତାବ୍ଦୀର ମଧ୍ୟଭାଗ ବେଳକୁ ଏହା ଏକ ବୌଦ୍ଧ ସାଂସ୍କୃତିକ କ୍ଷେତ୍ରରେ ପରିଣତ ହେଲା। ଖ୍ରୀ: ୬୬୪-୬୬୫ରେ ହୁନିଂ (Hui-ning) ନାମକ ଜଣେ ଚୀନର ସାଧୁ ସେହି ସ୍ଥାନକୁ ଭ୍ରମଣ କରିବାକୁ ଯାଇଥିଲେ ଓ ସେଠାରେ ସେ ତିନିବର୍ଷ କାଳ ଅବସ୍ଥାନ କରିଥିଲେ। ସେଠାରେ ସେ ଜଣେ ଦେଶୀୟ ପଣ୍ଡିତଙ୍କ ସହାୟତାରେ ଥେରାବାଦ ସମ୍ପ୍ରଦାୟର ବୌଦ୍ଧ ଧର୍ମଗ୍ରନ୍ଥକୁ ଅନୁବାଦ କରିଥିଲେ। ହିନଯାନ (HinaYan) ବୌଦ୍ଧ ଧର୍ମ ସେଠାରେ ସମୃଦ୍ଧ ଅବସ୍ଥାରେ ଥିଲା ବୋଲି ସେ ଲକ୍ଷ୍ୟ କରିଥିଲେ। ସେ ସମୟରେ ହୋଲିଙ୍ଗ ଜଣେ ପ୍ରଖ୍ୟାତ ନାରୀ ଶାସିକା ସିମାଙ୍କ ଦ୍ୱାରା ଶାସିତ ହେଉଥିଲା। ସେଠାରେ ଚୋରୀର ଭୟ ନ ଥିଲା। ରାସ୍ତାରେ କେହି କୌଣସି ଜିନିଷ ପକାଇ ଦେଇଥିଲେ ତାହାକୁ କେହି ନେଉ ନ ଥିଲେ। ସେଠାରେ ଥିବା କଳିଙ୍ଗବାସୀଙ୍କ ସାଧୁତା ଓ ସଚ୍ଚୋଟତା ଦେଶ ବାହାରେ ବିଦିତ ହେଉଥିଲା। ଥରେ ଆରବର ରାଜା ତାଙ୍କ ଲୋକମାନଙ୍କର ସାଧୁତା ପ୍ରମାଣ କରିବାକୁ ଚାହିଁଲେ। ତେଣୁ ସେ ଏକ ବ୍ୟାଗରେ ସୁନା ପୂର୍ଣ୍ଣକରି ରାସ୍ତାର ମଝି ଭାଗରେ ରଖି ଦେଲେ। କଳିଙ୍ଗର ଲୋକେ କେହି ହେଲେ ଉଠାଇଲେ ନାହିଁ। ଏହିପରି ଭାବେ ସେ ଥଳୀଟି ଦୀର୍ଘ ତିନିବର୍ଷ ପର୍ଯ୍ୟନ୍ତ ପଡ଼ି ରହିଲା। ଥରେ ଯୁବରାଜ ରାସ୍ତାରେ ଗଲାବେଳେ ସେ ଥଳୀ ଉପରେ ଚଢ଼ିଗଲେ। ଏ ଖବର ଯେତେବେଳେ ରାଣୀଙ୍କ କାନକୁ ଗଲା ସେ ସେଥିରେ ବହୁତ କ୍ଷୁବ୍ଧ ହେଲେ ଓ ଯୁବରାଜଙ୍କୁ ମୃତ୍ୟୁ ଦଣ୍ଡାଦେଶ ଦେଲେ। କିନ୍ତୁ କଳିଙ୍ଗର ଲୋକେ ନିଜର ଦୟାଗୁଣ ପ୍ରକାଶ କରି ଯୁବରାଜଙ୍କୁ ଦଣ୍ଡରୁ ମୁକ୍ତ କରିବା ପାଇଁ ରାଣୀଙ୍କୁ ଅନୁରୋଧ କଲେ। ରାଣୀ ଯୁବରାଜଙ୍କୁ ଦଣ୍ଡରୁ କୋହଳ କଲେ ସତ କିନ୍ତୁ ଯେଉଁ ଗୋଡ଼ ଏତାଦୃଶ କାର୍ଯ୍ୟ କଲା ତାହା କଟା ହେବା ପାଇଁ ଆଦେଶ ଦେଲେ ।(୭)

ବାଲି ଦ୍ୱୀପରେ ହିନ୍ଦୁକରଣ ପ୍ରକ୍ରିୟା ପ୍ରଥମ ଶତାବ୍ଦୀରୁ ହୋଇଥିଲା ବୋଲି କୁହାଯାଏ। କେହି କେହି ମଧ୍ୟ ମତ ଦିଅନ୍ତି

ଯେ ବାଲିରେ ହିନ୍ଦୁ ଧର୍ମର ପ୍ରଭାବ ଜାଭା ଦ୍ୱୀପ ଦେଇ ପହଞ୍ଚିଥିଲା । କିନ୍ତୁ ବୃହତ୍ ସଂହିତା ଓ କଥା ସରିତ ସାଗରରୁ ଜଣାଯାଏ ଯେ ବହୁ ପୂର୍ବରୁ ଭାରତ ଓ ବାଲି ମଧ୍ୟରେ ସିଧା ସଳଖ ବାଣିଜ୍ୟିକ ସମ୍ପର୍କ ଥିଲା ।(୮) ଭାରତର ଭାଷା, ସାହିତ୍ୟ, ଧର୍ମ ଓ ଚାଲିଚଳଣି ସେଠାରେ ବହୁଳ ଭାବେ ପ୍ରତିଫଳିତ ହୋଇଥିଲା । ବର୍ତ୍ତମାନ ବାଲିରେ ପ୍ରଚଳିତ ହେଉଥିବା କଥା ଓ ବ୍ୟବହାର, ହାତକାମ, ପୂଜାପଦ୍ଧତି, ଖାଦ୍ୟାଭ୍ୟାସ ପ୍ରଭୃତିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେଗୁଡ଼ିକ ସତେ ଯେପରି ଓଡ଼ିଶା (କଳିଙ୍ଗ)ରୁ ସୃଷ୍ଟି ହୋଇଛି । ଓଡ଼ିଶାରେ ଯାହାକୁ ବୋଉ ବୋଲି କୁହାଯାଏ ଇଣ୍ଡୋନେସିଆରେ ତାହାକୁ ବୁ (Bu) ବୋଲି କହନ୍ତି । ଗୁଆ ଶବ୍ଦଟିକୁ ବାଲି ଦ୍ୱୀପରେ ବୁହା (Buah) ବୋଲି ଉଚ୍ଚାରଣ କରାଯାଏ । ଚିନା ବାଦାମକୁ ଚିନା, ଅରୁଆ ଚାଉଳକୁ ଅରୁଆ (Arua) ପେଜକୁ ପେଜ ଏପରିକି ପୁରୁଷ ଶୁକ୍ରାଣୁ (ବୀଜ) ଶବ୍ଦକୁ ସେଠାରେ ବହୁଳ ଭାବରେ ବ୍ୟବହାର କରାଯାଏ ।

ଖାଦ୍ୟାଭ୍ୟାସକୁ ବିଚାରକୁ ନେଲେ ଜଣାଯାଏ ଯେ ବାଲିବାସୀ ଓ ଓଡ଼ିଶାବାସୀଙ୍କର ଖାଦ୍ୟରେ ସାଧାରଣ ରୁଚି ଓ ଅରୁଚି ରହିଛି । ଉଦାହରଣ ସ୍ୱରୂପ ବାଲିବାସୀ ଓଡ଼ିଆଙ୍କ ପରି ସଜନା ଶାଗ, କଦଳୀ ଭଣ୍ଡା ଓ ମଞ୍ଜା ଖାଇବାକୁ ଭଲ ପାଆନ୍ତି । ସେହିପରି ପିଠା ଭିତରେ ମଣ୍ଡା ଓ ଏଣ୍ଡୁରି ପିଠା ଓଡ଼ିଆଙ୍କ ପରି ସେମାନଙ୍କର ପ୍ରିୟ ଖାଦ୍ୟ ଅଟେ ।

ପୂଜାର୍ଚ୍ଚନା ବିଧିରେ ମଧ୍ୟ ଉଭୟ ସ୍ଥାନର ଲୋକଙ୍କ ମଧ୍ୟରେ ସାମଞ୍ଜସ୍ୟ ଦେଖାଯାଏ । ବାଲିର ଲୋକେ ଧନଦେବୀ ଶ୍ରୀଙ୍କୁ ପୂଜା କରୁଥିବା ବେଳେ ଓଡ଼ିଶାର ଲୋକେ ଲକ୍ଷ୍ମୀ ଠାକୁରାଣୀଙ୍କୁ ପୂଜା କରିଥାନ୍ତି । ଯଦିଓ ନାମରେ ପାର୍ଥକ୍ୟ ଦେଖାଯାଏ ତଥାପି ପୂଜାର ପ୍ରକାର ଓ ଲକ୍ଷ୍ୟ ଏକ ପ୍ରକାରର । ଏହି ପୂଜାରେ ଉଭୟ ସ୍ଥାନର ଲୋକେ ଧାନବେଣୀ (Paddy-Sheaves)କୁ ପୂଜାକରି ଧନଦେବୀଙ୍କୁ ସମ୍ମାନ ଜଣାନ୍ତି । ବାଲିରେ ଆଉ ଏକ ଅଦ୍ଭୁତ ପ୍ରଥା ରହିଛି ତାହା ହେଉଛି ମହେନ୍ଦ୍ରତନୟା ନଦୀକୁ ସମ୍ମାନ ଜଣାଇବା । ମହେନ୍ଦ୍ରଗିରିରୁ ବାହାରିଥିବା ଏହି କ୍ଷୁଦ୍ର ନଦୀଟିକୁ ଓଡ଼ିଶାରେ ସମ୍ମାନ ଦିଆଯାଉ ନଥିଲେ ମଧ୍ୟ ବାଲିବାସୀମାନେ ଏହାକୁ ବହୁତ ସମ୍ମାନ ଦିଅନ୍ତି । ସେମାନଙ୍କର ଧାରଣା ଯେ ଏହାର କୂଳରେ ଅନେକ ପବିତ୍ର ସ୍ଥାନ ରହିଛି ।

ଲୁଗାରେ ରୂପ ଦେବା ଓ ରଙ୍ଗ ଦେବା ଉଭୟ ସ୍ଥାନର ଲୋକଙ୍କର ଏକ ବିଶେଷ ଗୁଣ ରହିଛି । ଭାରତରେ ଓଡ଼ିଶା ଓ ଗୁଜରାଟର ଲୁଗା ବୁଣାରେ ଯେପରି ପ୍ରସିଦ୍ଧି ରହିଛି ସେହିପରି ଇଣ୍ଡୋନେସିଆରେ ବାଲି ଦ୍ୱୀପର ଲୁଗାବୁଣା ଓ ରଙ୍ଗ ଦେବାରେ ଖ୍ୟାତି ରହିଛି । ବ୍ୟବହାର ଭଙ୍ଗୀକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ସେଠାରେ କେହି ଜଣେ ଗୁରୁଜନଙ୍କ ନିକଟରେ କିମ୍ବା ସମ୍ମୁଖରେ ଗଲାବେଳେ ଓଡ଼ିଆଙ୍କ ପରି ଡାହାଣ ହାତ ତଳକୁ ରଖି ନଇଁ କରି ଯାଆନ୍ତି ।

ବାଲିସ୍ଥ କରଙ୍ଗାସେମ ଜିଲ୍ଲାର ଲୋକେ ନିଜକୁ ବୌଦ୍ଧ କଳିଙ୍ଗୀ ବୋଲି କହନ୍ତି, ଏହା ମଧ୍ୟ ଆଉ ଏକ ଓଡ଼ିଆ ପ୍ରଭାବ ବୋଲି ଅନୁମାନ କରାଯାଏ ।(୯)

ଓଡ଼ିଶାରେ ଜଗନ୍ନାଥ ଓ ପୁରୁଷୋତ୍ତମଙ୍କ ମଧ୍ୟରେ ଯେପରି ସମନ୍ୱୟ ସ୍ଥାପିତ ହୋଇଥିଲା ସେହିପରି ବାଲି ଦ୍ୱୀପରେ ଶିବ ଓ ଜଗନ୍ନାଥଙ୍କର ସମନ୍ୱୟ ହୋଇଥିବା ଦେଖାଯାଏ । ସେଠାରେ ଶିବଙ୍କୁ ଜଗନ୍ନାଥ ବୋଲି ସ୍ତୁତି କରାଯାଏ । ବାଲି ଦ୍ୱୀପର ଶୈବମାନଙ୍କ ଜଣାଣରେ କୁହାଯାଏ :—

 କ୍ଷମସ୍ୱ ମାଂ ଜଗନ୍ନାଥ ସର୍ବପାପ ବିନାଶନଂ
ସର୍ବକାର୍ଯ୍ୟ ପ୍ରାଣ ଦେବଂ ପ୍ରଣମାମି ସୁରେଶ୍ୱର

xxx xxx xxx xxx

କ୍ଷମସ୍ୱ ମାଂ ଶିବ ଦେବ ଜଗନ୍ନାଥ ହିତଙ୍କର
ସର୍ବ ପାପ ବିମୁକ୍ତେ:ନ ପ୍ରଣମାମ୍ୟହଂ ସୁରେଶ୍ୱର ।(୧୦)

ଏହିପରି ଭାବରେ ଦେଖିଲେ ଓଡ଼ିଆ ଘରର ଧର୍ମ, ଭାଷା, ଚାଲିଚଳଣି, ଆଚାର ବ୍ୟବହାର ଅନେକାଂଶରେ ବାଲିବାସୀଙ୍କଠାରେ ପ୍ରତିଫଳିତ ହୋଇ ଥିବାର ଜଣାଯାଏ । ସେଥିପାଇଁ ଓଡ଼ିଆମାନେ ପୂର୍ବପୁରୁଷମାନଙ୍କର ପୂର୍ବ ବୀରତ୍ୱ ଓ ତେଜ ମନେ ରଖିବା ପାଇଁ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ କଟକର ମହାନଦୀ ତଟସ୍ଥ ଗଡ଼ଗଡ଼ିଆ ଘାଟଠାରେ 'ବାଲିଯାତ୍ରା ଉତ୍ସବ' ମହା ସମାରୋହରେ ପାଳନ କରି ଆସୁଛନ୍ତି । ଏହିଦିନ ଲୋକେ କଦଳୀ ବାସୁଙ୍ଗା କିମ୍ବା ସୋଲରେ ନିର୍ମିତ ଛୋଟ ଛୋଟ ବୋଇତରେ ଲୁଣ, ସୋରିଷ, ଯଅ, ପାନ ଓ ବିଦେଶରୁ ଆମଦାନୀ କରିଥିବା ଗୁଆ ରଖି ମହାନ ଜଳରାଶିରେ ଭସାଇ ଦିଅନ୍ତି । ଛୋଟ ଛୋଟ ବୋଇତରେ ସୁସଜ୍ଜିତ ହୋଇ ଦୀପାବଳୀଗୁଡ଼ିକ ଜଳରାଶିର ଶୋଭାମଣ୍ଡନ କରେ । ଆକାମାବୈଣ — ଏହି ନିର୍ଘୋଷ ସୂଚକ ବାଣୀରେ ଚାରିଆଡ଼ ପ୍ରକମ୍ପିତ ହୋଇଯାଏ । କେହି କେହି ବାଲିଯାତ୍ରାକୁ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ଶ୍ରୀଚୈତନ୍ୟ ଦେବଙ୍କ ଭକ୍ତ ବାଲିରେ ଯାତ୍ରା କରିବା କଥାକୁ ଗ୍ରହଣ କରନ୍ତି (୧୧), କିନ୍ତୁ 'ବାଲି ଯାତ୍ରା' ସହିତ ଓଡ଼ିଆର ନୌ–ବାଣିଜ୍ୟ ଓ ଉପନିବେଶତାର ସମ୍ପର୍କ ରହିଛି ଏଥିରେ ତିଳେ ହେଲେ ସନ୍ଦେହ କରିବାର ନାହିଁ ।

---

(୧) ଜଗବନ୍ଧୁ ସିଂହ, ପ୍ରାଚୀନ ଉତ୍କଳ, ପୃ ୬୩–୬୪ ।
(୨) ଜଗବନ୍ଧୁ, ପୃ ୬୭ ।
(୩) କୃପାସିନ୍ଧୁ ମିଶ୍ର; ଉତ୍କଳ ଇତିହାସ, ପୃ ୩୦ ।
(୪) D. P. Singhal; India and world civilization, Vol, 2 P. 138.
(୫) ଚିନ୍ତାମଣି ଦାସ; ଇତିହାସ ପ୍ରସୂନ, ପୃ ୨୪–୨୫ ।
(୬) Radhakumud Mookherjee; Indian shipping P. 149–150.
(୭) I. Gustí Putu Phalgunadi; Evolution of Hindu Culture in Bali, P. 31 ଓ ହରେକୃଷ୍ଣ ମହତାବ; ଓଡ଼ିଶା ଇତିହାସ, ୧ମ ଖଣ୍ଡ ପୃ–୭୮ ।
(୮) H. B. Sarkar; The Cultural and Political Background of Indian. Javanese History, JIH, Vol. XLII, Pt. 2, P. 403.
(୯) I Gusti putu Phyalgunadi; I bid!, PP. 34–35
(୧୦) ନବୀନ କୁମାର ସାହୁ; ଓଡ଼ିଆ ଜାତିର ଇତିହାସ, ପୃ ୪୧୦–୪୧୧
(୧୧) ପାର୍ବତୀ ଚରଣ ଦାସ; ବାଲିଯାତ୍ରା– ମୁକୁର ୧୯୧୧ ମସିହା ୫ମ ୭/୮ ସଂଖ୍ୟା ।

---

ହରେକୃଷ୍ଣ ମହତାବ ରାଜ୍ୟ ଗ୍ରନ୍ଥାଗାର,
ଭୁବନେଶ୍ୱର ।

# କନିକା ଆନ୍ଦୋଳନର ଅଗ୍ରସାରଥୀ କୃଷକ ନେତା ଚନ୍ଦ୍ରଧର

• ଇଞ୍ଜିନିୟର ଅରୁଣ କୁମାର ପଣ୍ଡା

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟ। କନିକା ପାଇଁ ପ୍ରଜା ଅଞ୍ଚଳ ଇତିହାସରେ ଏକ କଳଙ୍କିତ ଅଧ୍ୟାୟ। କନିକାର ନିରୀହ, ନିରନ୍ନ ପ୍ରଜାଙ୍କ କଣ୍ଠରୁ ଯେତେବେଳେ ଅତ୍ୟାଚାରୀ ଶାସନର ଅତ୍ୟାଚାର, ଲୁଣ୍ଠନ ଓ ବ୍ୟଭିଚାରର ନିଶ୍ଛିଦ୍ର ଅନ୍ଧକାର ମଧ୍ୟରୁ ଭାସି ଆସୁଥିଲା ଜନତାର କରୁଣ କ୍ରନ୍ଦନରୋଳ, ଠିକ୍ ସେତିକିବେଳେ, ଅତ୍ୟାଚାରୀ କଂସ ସଦୃଶ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ରାଜତ୍ୱର ମୂଳୋଚ୍ଛେଦ କରିବା ନିମିତ୍ତ ୧୮୯୫ ମସିହା ଜୁଲାଇ ମାସ ୨୬ ତାରିଖ ଦିନ ସୁନ୍ଦବାଲି ବ୍ଲକର (ବାଲେଶ୍ୱର ଜିଲ୍ଲା) ଆଙ୍ଗପଡ଼ା ଗ୍ରାମରେ ପିତା କାଳନ୍ଦୀଚରଣ ବେହେରା ଓ ମାତା ତୀର ଦେଇଙ୍କ କୋଳରେ ଜନ୍ମ ଲାଭ ହୋଇଥିଲେ କୃଷକ 'ମଜଦୁରଙ୍କର ତ୍ରାଣକର୍ତ୍ତା ଚନ୍ଦ୍ରଧର ବେହେରା। ସମୟର ରଥଚକ୍ର ଗଡ଼ି ଚାଲିଥାଏ – ଅବାରିତ ଗତିରେ। ଶିଶୁ ସୁଲଭ ଚପଳମତି ଚନ୍ଦ୍ରଧର ପିତାମାତାଙ୍କ କୋଳରେ ବଢ଼ିବାକୁ ଲାଗିଥାନ୍ତି ଶଶିକଳା ପରି। ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଗ୍ରାମ୍ୟ ପାଠ ଶେଷ କରି ସେ ହେଲେ ଭଦ୍ରକ ହାଇସ୍କୁଲର ଜଣେ ଛାତ୍ର। ମାତ୍ର ଆନନ୍ଦର ବିଷୟ ନିଜର ବିଦ୍ୟା ଓ ବୁଦ୍ଧି ବଳରେ ଡବଲ୍ ପ୍ରମୋସନ ପାଇ ଭଦ୍ରକ ହାଇସ୍କୁଲରୁ ୧୯୧୯ ମସିହାରେ ପ୍ରଥମ ଶ୍ରେଣୀରେ ମ୍ୟାଟ୍ରିକ୍ ପାଶ୍ କରି କନିକାର ପ୍ରଥମ ମ୍ୟାଟ୍ରିକ୍ୟୁଲେଟ୍ ଭାବରେ ପରିଚିତ ହେଲେ।

ତା'ପରେ ଆରମ୍ଭହେଲା ତାଙ୍କ କର୍ମମୟ ଜୀବନର ପ୍ରଥମ ଅଧ୍ୟାୟ। ପିତାଙ୍କର ଇଚ୍ଛାକୁ ପୂର୍ଣ୍ଣକରି ସେ କନିକା ରାଜଦରବାରରେ ପ୍ରଧାନ ହିସାବ ରକ୍ଷକ ରୂପେ ନିଯୁକ୍ତି ପାଇଲେ। ବୃତ୍ତିଗତ କ୍ଷେତ୍ରରେ ନୀରପେକ୍ଷ ଓ ନ୍ୟାୟୋଚିତ ଭାବେ କାର୍ଯ୍ୟ ସମ୍ପାଦନ କରିବା ତାଙ୍କ ଜୀବନର ଅଭିଳାଷ ଥିଲା। ମାତ୍ର କାଳର କରାଳ ଗତି ବଡ଼ ବିଚିତ୍ର। କନିକାର ଭାଗ୍ୟାକାଶରେ ଘୋଟିଗଲା ନୈରାଶ୍ୟର କଳା ବାଦଲ। ସ୍ୱେଚ୍ଛାଚାରୀ ରାଜା ରାଜେନ୍ଦ୍ର ନରେନ୍ଦ୍ରଙ୍କ ଶାସନ ପଦ୍ଧତି ସମସ୍ତ ଜନତାଙ୍କ ମନରେ ସୃଷ୍ଟିକଲା ତ୍ରାହିର ଲହରୀ। କୃଷି ପ୍ରଧାନ କନିକା ଅଞ୍ଚଳରେ କୃଷିର ଉନ୍ନତି ପାଇଁ ସେ ଥିଲେ ବୀତସ୍ପୃହ। ଫଳରେ କୃଷିର ଘଟିଲା ଅପମୃତ୍ୟୁ। କନିକାବାସୀଙ୍କର ଭାଗ୍ୟଚକ୍ର ଘୂରିଗଲା ଦୁଃଖ, ଦୈନ୍ୟ, ଶୋଷଣ–କଷଣର ଅନ୍ଧାର ବାଟକୁ। ରାଜାଙ୍କର ଭୋଗ ବିଳାସ ଯୋଗୁଁ ଶୂନ୍ୟ ହୋଇଥିବା ରାଜକୋଷର ପରିପୂରଣ ନିମିତ୍ତ ପ୍ରଜାମାନଙ୍କ ଉପରେ ଲଦି ଦିଆଗଲା ଗଛ କର, ମାଛ କର, ମଞ୍ଚୁ କର, ଚମଡ଼ା କର। କେତେ ଲୋକ ମାନସିକ ରଖି ପିଲାର ମସ୍ତକ ମୁଣ୍ଡନ କଲେ କର, ଅକ୍ଷିରା ବାଲୁରୀ ଖାଇ କଲେ କର, ବିବାହ କରି ନବବଧୂ ଘରକୁ ଆଣିଲେ ମଧୁଶଯ୍ୟା କର ଇତ୍ୟାଦି ବହୁବିଧ ପ୍ରକାର ଅବାଞ୍ଛିତ କର। କନିକାବାସୀଙ୍କର ଚିର ଅଭାବର ବନ୍ୟା, ମରୁଡ଼ି ଓ ଦୁର୍ଭିକ୍ଷର ନିର୍ମମ କଶାଘାତରେ ଜର୍ଜରିତ ବେଶିରୁ କୃଷକ କରଦେବା ପାଇଁ ଅସାମର୍ଥ୍ୟ ପ୍ରକାଶ କଲେ, ରାଜ କର୍ମଚାରୀଙ୍କର ନିଷ୍ଠୁର ମାଡ଼ରେ ଶିକାର ହେଉଥିଲେ। ପ୍ରଜାମାନଙ୍କର କରୁଣ ପ୍ରାର୍ଥନା ରାଜାଙ୍କ କର୍ଣ୍ଣ ଗହ୍ୱରକୁ ଟିକେ ମାତ୍ର ସ୍ପର୍ଶ କରୁନଥିଲା। ଏବେଭଳି ଅନ୍ୟାୟ, ଅତ୍ୟାଚାରକୁ ମଧ୍ୟ ପାତି ସହ୍ୟ କରି, ଲହୁ ଲୁହ ଢାଳି ଉତ୍ପନ୍ନ କରୁଥିବା ଫସଲ ମଧ୍ୟ ଭୋଗ କରୁଥିଲେ ନିଷ୍ଠୁର ସ୍ୱେଚ୍ଛାଚାରୀ ରାଜା ଓ ତାଙ୍କର ପଦଲେହୀ ରାଜ କର୍ମଚାରୀଗଣ। ପ୍ରଜାଙ୍କ ଘର୍ମ୍ମ ଦାନରେ ଉପୁଜିଥିବା ବାଡ଼ି ବଗିଚାର ଗଛ, ପୋଖରୀର ମାଛ, ଏପରିକି ଝିଅ ବୋହୂମାନଙ୍କ ଉପରେ ମଧ୍ୟ କୌଣସି ଅଧିକାର ନ ଥିଲା ସେମାନଙ୍କର। ସମସ୍ତ ସୁନ୍ଦର ଜିନିଷର ଅଧିକାରୀ ଥିଲେ ଏହି ସ୍ୱେଚ୍ଛାଚାରୀ ଦଳ।

ଜମିବାଡ଼ିର ଦଖଲ ସ୍ୱତ୍ତ୍ୱ ଉପରେ ରାଜାଙ୍କର ଥିଲା ସମ୍ପୂର୍ଣ୍ଣ ଅଧିକାର। କୃଷି ବିନିମୟରେ ରାଜସ୍ୱ ଦାନ ହିଁ ପ୍ରଜାଙ୍କର ଥିଲା ଏକମାତ୍ର କାମ। ଜମିବାଡ଼ିର ଦଖଲ ସ୍ୱତ୍ତ୍ୱ ନିମିତ୍ତ ଅମଲାମାନଙ୍କୁ ଲାଞ୍ଚ ଦେଇ ସନ୍ତୁଷ୍ଟ ନ କଲେ ମଧ୍ୟ ପ୍ରଜାମାନଙ୍କର ପରିସ୍ଥିତି ଆହୁରି ସାଂଘାତିକ ହେଉଥିଲା।

ବିଭିନ୍ନ କରଦାନ ସାଙ୍ଗକୁ ପ୍ରଜାଙ୍କ ଉପରେ ଚାଲିଥିଲା ବେଠୀ, ବେଗାରୀର ତୀବ୍ର ଲାଞ୍ଛନା। ଆଜିର 'ଗ୍ରାମ୍ୟ ନଈ ଓ ଗ୍ରାମ୍ୟ ପୋଖରୀ', (୧) ତତ୍କାଳୀନ ବେଠି ବେଗାରୀ ଖଟା କୃଷି ମଜଦୁରଙ୍କର ରକ୍ତ ସ୍ୱାକ୍ଷରର ଏକ ଚରମ ନିଦର୍ଶନ। ବେଠି–ବେଗାରୀ ଫଳରେ ଉପଯୁକ୍ତ ଯତ୍ନ ଅଭାବରୁ କୃଷିର ହେଲା ଅବନତି। ତଥାପି ଏ ଶାନ୍ତ, ନିରୀହ ପ୍ରଜାକୁଳ ଥିଲେ ନୀରବ, ନିଶ୍ଚଳ ଓ ମୂକ। 'ବ୍ରହ୍ମା ବିଳିବିଳେଇଲେ ବେଦ' ପରି ରାଜାଙ୍କ ମୁଖ ନିସୃତ ବାଣୀ ଆଇନ୍ ରୂପେ ହେଉଥିଲା ଗୃହିତ ଓ ପ୍ରଜାକୁଳ ହେଉଥିଲେ ସେ ଆଇନ୍‌ର ସରବ୍ୟ। ମୋଟ ଉପରେ କହିବାକୁ ଗଲେ କନିକା ବକ୍ଷରେ ସେତେବେଳେ ଚାଲିଥିଲା ଅନ୍ଧାରୀ ଶାସନ ଏବଂ ତାହା ଥିଲା କନିକା ଇତିହାସର ଏକ ବେଦନାମୟ ପୃଷ୍ଠା।

୧୯୧୮ ମସିହା। କେବଳ କନିକା କାହିଁକି ସମସ୍ତ ଓଡ଼ିଶାର ଭାଗ୍ୟାକାଶରେ ଘୋଟିଗଲା ଦୁର୍ଭିକ୍ଷର ଘନଘଟା। ସବୁରି ମୁଖରୁ ସ୍ଫୁରିତ ହେଲା 'ହା' ଅନ୍ନ'ର କରୁଣ ଚିତ୍କାର। ମାତ୍ର ପ୍ରଜାଙ୍କୁ ସାହାଯ୍ୟ କରିବା ଦୂରର କଥା, ରାଜ କର୍ମଚାରୀଗଣ ନିର୍ମମ ଭାବରେ ଆଦାୟ କରି ଚାଲିଲେ ପୂର୍ବ ପ୍ରଦତ୍ତ କରଜ ଧାନ। ଯିଏ ନ ଦେଲା, ସେମାନଙ୍କ ଉପରେ ହେଉଥିବା ଅତ୍ୟାଚାର କହିଲେ ନ ସରେ।

କନିକାବାସୀଙ୍କର ଏଭଳି ନୀରବ କ୍ରନ୍ଦନ କନିକାର ପ୍ରଜାନେତା, ପ୍ରଜାବତ୍ସଳ ଚନ୍ଦ୍ରଧର ବେହେରାଙ୍କୁ ଦେଲା ଦାରୁଣ ଆଘାତ। ରାଜାଙ୍କର ଅନ୍ୟାୟ, ଅତ୍ୟାଚାର, ଲୁଣ୍ଠନ ଶୋଷଣ, ନାରୀ ଧର୍ଷଣ ପ୍ରଭୃତି ତାଙ୍କ ଦରଦି ନେତ୍ରରୁ ଝରାଇଲା ଅଶ୍ରୁର ଝରଣା। ଛଅମୂଳା ପ୍ରଜାମେଳିର ବଳିଷ୍ଠ ନେତୃତ୍ୱ ନେଇ ରାଜାକର୍ମଚାରୀର ଗୁଳି କ୍ଷେତ୍ରରେ ଆହୁତି ଦେଇ 'ବାସୁ' ଓ 'ବିଶ୍ୱନୀ' ହେଲେ କନିକା ମାଟିର ଶହୀଦ। ବିପ୍ଳବୀ ଚନ୍ଦ୍ରଧରଙ୍କ ଆଖି ଆଗରେ ଭାସି ଉଠିଲା ଦୁଇ ଶହୀଦଙ୍କର ରକ୍ତରଞ୍ଜିତ ଶରୀର। ତେଣୁ କନିକା ଜନନୀଙ୍କ ନୟନରୁ ଅଶ୍ରୁବାରିର ସମାପ୍ତି ଘଟାଇବା ପାଇଁ ସ୍ଥିରକରିର

ମୋହ ତ୍ୟାଗ କରି ଅତ୍ୟାଚାରୀ ଶାସନ ବିରୁଦ୍ଧରେ ଆରମ୍ଭକଲେ ସ୍ୱର ଉତ୍ତୋଳନ ।

୧୯୨୨ ମସିହା ଜାନୁଆରୀ ମାସରେ ସାଥୀ ସଛଚରଣ ବେହେରା, ଭଗବାନ ଦୀକ୍ଷିତ, ଗଦାଧର ସାମଲ, ବନମାଳି ନାୟକ ପ୍ରଭୃତିଙ୍କ ସହଯୋଗରେ ଆରମ୍ଭ କଲେ କର୍ମୀ ସଂଗ୍ରହ ଅଭିଯାନ । ସହଯୋଗିତା କଲେ ହଜାର ହଜାର ପ୍ରଜା । ଜଳିଉଠିଲା ଆନ୍ଦୋଳନର ବହ୍ନି । କୃଷି ବହୁଳ ଅଞ୍ଚଳ କନିକା ବକ୍ଷରେ କୃଷିର ଉନ୍ନତି ଥିଲା ତାଙ୍କ ବିଦ୍ରୋହୀ ମନର ପରମ ଓ ଚରମ ଲକ୍ଷ୍ୟ । କୃଷକ ନେତା ଚନ୍ଦ୍ରଧରଙ୍କୁ ବଳିଷ୍ଠ ନେତୃତ୍ୱ ଦେବାରେ ସହାୟତା କଲେ ଉତ୍କଳମଣି ଗୋପବନ୍ଧୁ ଦାସ ଏବଂ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ । ଚନ୍ଦ୍ରଧରଙ୍କ ଉଦ୍ୟମ ବଳରେ ୧୯୨୨ ମସିହାରେ କନିକାରେ ଆରମ୍ଭ ହେଲା ସରକାରୀ ବନ୍ଦୋବସ୍ତ ଓ ୧୯୩୦ ମସିହାରେ ସମାପ୍ତି ଘଟାଇ ସାବ୍ୟସ୍ତ କଲା ଦଖଲ ଜମି ଉପରେ ପ୍ରଜାଙ୍କର ସ୍ୱତ୍ୱ । ପ୍ରଜାମେଳି ଓ ଆନ୍ଦୋଳନର ବଳିଷ୍ଠ ବହ୍ନି ମଧ୍ୟରେ ସମାଧି ଲଭିଲା ବେଠି–ବେଗାରୀ ଓ ଅନେକ ଅବାଞ୍ଛିତ କର । ଶାନ୍ତିରେ ନିଶ୍ୱାସମାରିଲେ ସୁନ୍ଦରୀ ଝିଅ ଓ ଭୁଆସୁଣୀ ବୋହୂ ।

୧୯୩୬ ମସିହାରେ କନିକା ରାଜାଙ୍କ ସହ ପ୍ରତିଦ୍ୱନ୍ଦିତା କରି ଦକ୍ଷିଣ ଭଦ୍ରକ ଇଲାକାରୁ ବିଧାନ ସଭାକୁ ସେ ନିର୍ବାଚିତ ହେଲେ । ମାତ୍ର ରାଜାଙ୍କର କ୍ରୋଧ ବୃଦ୍ଧି ସଙ୍ଗେ ସଙ୍ଗେ ସେ କନିକା ବକ୍ଷରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରିଦେଲେ ।

୧୯୪୭ ମସିହା ଅଗଷ୍ଟ ମାସ ପନ୍ଦର ତାରିଖ । ବାଜି ଉଠିଲା ସମଗ୍ର ଭାରତ ବକ୍ଷରେ ସ୍ୱାଧୀନତାର ଶୁଭ ଶଙ୍ଖ । ଆନନ୍ଦରେ ନାଚି ଉଠିଲେ ସମସ୍ତ ଭାରତବାସୀ । ମାତ୍ର କନିକା ବକ୍ଷରେ ୧୯୪୮ ମସିହାରେ ଭାଗ ଚାଷ ଉଚ୍ଛେଦ ନିମିତ୍ତ ରାଜାଙ୍କ କର୍ତ୍ତୃକ ଦାଏର ହେଲା ଶହ ଶହ ମକଦ୍ଦମା । ଚନ୍ଦ୍ରଧରବାବୁଙ୍କ ନେତୃତ୍ୱରେ ଏହି ମକଦ୍ଦମାର ବିଚାର ନିମିତ୍ତ ମୁତୟନ ହେଲେ ଜଣେ ସ୍ୱତନ୍ତ୍ର ମାଜିଷ୍ଟ୍ରେଟ୍ । ବିପ୍ଳବରୁ ବିରତ ହେବା ନିମିତ୍ତ ରାଜାଙ୍କ ତରଫରୁ ପ୍ରତିଶ୍ରୁତ ସମସ୍ତ ପ୍ରଲୋଭନକୁ ସେ ପ୍ରତ୍ୟାଖ୍ୟାନ କଲେ । ବାସ୍ତବିକ୍ କି କଠୋର ତ୍ୟାଗ ! କେଡ଼େ କର୍ତ୍ତବ୍ୟ ନିଷ୍ଠା ! କେଡ଼େ ଚରମ ସତ୍ୟାଶ୍ରୟ ! ପରିଶେଷରେ ତାଙ୍କର ଐକାନ୍ତିକ ପ୍ରଚେଷ୍ଟା ବଳରେ ମକଦ୍ଦମାରେ ସେ ଲାଭ କଲେ ବିଜୟର ଜୟମାଲ୍ୟ ।

କୃଷକ ସମାଜ ବିଶେଷତଃ ମଧ୍ୟବିତ୍ତ ସମାଜ ଉପରେ ତାଙ୍କର ଦୃଷ୍ଟିଥିଲା କେନ୍ଦ୍ରିଭୂତ । କାରଣ ମଧ୍ୟବିତ୍ତ ହିଁ ସମାଜର ଧାରକ, ବାହାକ ଓ ରକ୍ଷକ । ଭାଗଚାଷୀମାନଙ୍କୁ ଜମିର ମାଲିକାନା ଦେବା ଥିଲା ତାଙ୍କର ପରିକଳ୍ପନା । ୧୯୫୨ ମସିହାରେ ସ୍ୱାଧୀନ ଭାରତର ପ୍ରଥମ ସାମ୍ବିଧାନିକ ନିର୍ବାଚନରେ ଗୁନ୍ଦବାଲି ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ସେ ନିର୍ବାଚିତ ହେଲେ । କନିକାବାସୀଙ୍କ ଅଭାବ, ଅଭିଯୋଗ ପ୍ରସଙ୍ଗ ସଭାରେ ଉପସ୍ଥାପନ ପୂର୍ବକ ଜନତାର ସେବା କରିବା ନିମିତ୍ତ ସେ ଅପୂର୍ବ ସୁଯୋଗ ପାଇଲେ । ଏତିକିବେଳେ ଦେଶରେ ପ୍ରଥମ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ହେଲା । ଗଦି ପଣ୍ଡୁଚିଡ଼ି ରାସ୍ତା ଓ ସାଲନ୍ଦିରୁ ଗଦି ପର୍ଯ୍ୟନ୍ତ ଲମ୍ବିଥିବା କେନାଲ୍ ତାଙ୍କ ଅଦମ୍ୟ ଚେଷ୍ଟାର ଶେଷ ଇସ୍ତାହାର । ଓଡ଼ିଶାରେ ବନ୍ୟା ନିୟନ୍ତ୍ରଣ ପାଇଁ କଟକରେ ହେଉଥିବା ସମ୍ମିଳନୀରେ ଚନ୍ଦ୍ରଧରବାବୁ ଉପସ୍ଥିତ ଥାଇ ଓଡ଼ିଶାର ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ବନ୍ୟା ଜଳର ନିଷ୍କାସନ ଓ ନଦୀବନ୍ଧ ଯୋଜନା ସମ୍ପର୍କରେ ପ୍ରଦତ୍ତ ସୁଚିନ୍ତିତ ପରାମର୍ଶ ସମସ୍ତଙ୍କର ମନପସନ୍ଦ ହୋଇଥିଲା । ସର୍ବଭାରତୀୟ କୃଷକ ସମ୍ମିଳନୀରେ ଓଡ଼ିଶାର ପ୍ରତିନିଧିତ୍ୱ କରୁଥିବା ଦୁଇଜଣ କୃଷକ ନେତା ମଧ୍ୟରୁ ସେ ଥିଲେ ଅନ୍ୟତମ । ଲୋକ ସେବକ ମଣ୍ଡଳୀର ଅଧ୍ୟକ୍ଷ ଡକ୍ଟର ରାଧାନାଥ ରଥଙ୍କ ଭାଷାରେ ମହାତ୍ମାଜୀ ଭାରତର, ଗୋପବନ୍ଧୁ ଓ ଚନ୍ଦ୍ରଧରବାବୁ କନିକାର ଗାନ୍ଧୀ ଥିଲେ ।

୧୯୬୩ ମସିହା ଜାନୁଆରୀ ପହିଲାରେ ଲିଭିଗଲା ସେହି ଅମର ଆତ୍ମାର ଜୀବନ ପ୍ରଦୀପ । ମାତ୍ର ସମସ୍ତଙ୍କ ଅନ୍ତରରେ ସେ ରହିଗଲେ ଚିରଦିନ ପାଇଁ ।

ଟିପ୍ପଣୀ–

(୧) ଗୁମାନର ଓ ପୋଖରୀ–ଏକ ବଡ଼ ପୋଖରୀର ନାମ ।

ସହାୟକ ପୁସ୍ତକ–'ବିପ୍ଳବୀ ଚନ୍ଦ୍ରଧର'–ଲେଖକ ମୁରଲୀଧର ମଲ୍ଲିକ୍

କନିକା ବୀର ଚନ୍ଦ୍ରଧର–ଡଃ ଅଭୟ ପ୍ରଧାନ

ଏହା ସହିତ ୨/୩ ବର୍ଷର 'ଚନ୍ଦ୍ରଧର ସ୍ମରଣିକା' ।

ଗ୍ରା/ପୋ–ତୋଟାପଡ଼ା,
ଭାଃ–ଘଣ୍ଟେଶ୍ୱର, ଜିଃ–ବାଲେଶ୍ୱର ୭୫୬୧୧୯ ।




ନରପାଲୀ (ବେସଲପୁର)ଠାରେ ଆୟୋଜିତ ଭଗବାନ ମେହେରଙ୍କ ଜନ୍ମ ବାର୍ଷିକୀ ଉତ୍ସବରେ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ଆଚାର୍ଯ୍ୟ ।

# ପିଲାମାନଙ୍କ ବ୍ରୋଙ୍କାଇଟିସ୍ ରୋଗରେ ହୋମିଓ ଚିକିତ୍ସା

● ଡାକ୍ତର ଚତୁର୍ଭୁଜ ନାୟକ

ଶିଶୁମାନଙ୍କର ବ୍ରୋଙ୍କାଇଟିସ୍ ଏକ ସାଧାରଣ ରୋଗ । ବିଶେଷତଃ ଶୀତଋତୁ ଏବଂ କୋହଲା ପାଗରେ ସାଧାରଣତଃ ଏହି ରୋଗ ହୋଇଥାଏ । ହୁପିଙ୍ଗ୍ କଫ, ମିଳିମିଳା, ଇନ୍‌ଫ୍ଲୁଏଞ୍ଜା କିମ୍ବା ସାଧାରଣ ଥଣ୍ଡା ରୋଗ ପରେ ତଥା ପାଟିବାଟେ ନିଶ୍ୱାସ ନେଉଥିବା ପିଲାମାନେ ଏହି ରୋଗରେ ଆକ୍ରାନ୍ତ ହୋଇଥାଆନ୍ତି । ରୋଗର ପ୍ରଥମାବସ୍ଥାରେ ପ୍ରବଳ ଶୁଖିଲା କାଶ ସହ ଛାତି ଦରଜ ହୁଏ । ପରବର୍ତ୍ତୀ ଅବସ୍ଥାରେ ଅଧିକ ଛାତି ଦରଜ ଯୋଗୁଁ ଶ୍ୱାସ, ପ୍ରଶ୍ୱାସ ସମୟରେ ଯନ୍ତ୍ରଣା ହୁଏ । ଏହି ସମୟରେ ଛାତିରେ ସାଇଁ ସାଇଁ ବା ଘଡ଼ଘଡ଼ ଶବ୍ଦ ହୁଏ ଓ ସାମାନ୍ୟରୁ ପ୍ରବଳ ଶ୍ୱାସ କଷ୍ଟ ହୁଏ । କାଶିବା ପରେ ଅଳ୍ପ ଲାଳୁଆ, ବଦଳିଆ କଫ ବାହାରେ ଓ ସମୟ ସମୟରେ କାଶରେ ରକ୍ତ ପଡ଼ିପାରେ । କାଶ ଓ ଶ୍ୱାସ କଷ୍ଟ ବ୍ୟତୀତ ରୋଗୀଙ୍କୁ ଜ୍ୱର ମଧ୍ୟ ହୋଇପାରେ । ଏହି ସମୟରେ ରୋଗୀର ଆବଶ୍ୟକୀୟ ଚିକିତ୍ସା କରାନଗଲେ ନ୍ୟୁମୋନିଆ ଇତ୍ୟାଦି ମାରାତ୍ମକ ରୋଗ ହୋଇପାରେ । ଅନ୍ୟାନ୍ୟ ଚିକିତ୍ସା ଶାସ୍ତ୍ର ପରି ହୋମିଓପାଥି ଔଷଧ ଦ୍ୱାରା ମଧ୍ୟ ଏହି ରୋଗର ଚିକିତ୍ସା ହୋଇପାରିବ ।

**ଔଷଧ ନିର୍ଣ୍ଣୟ**

ନିମ୍ନରେ ଏହି ରୋଗ ପାଇଁ ବ୍ୟବହୃତ ହୋଇଥିବା କେତେକ ସାଧାରଣ ଔଷଧର ଲକ୍ଷଣାବଳୀ ବର୍ଣ୍ଣନା କରାଯାଉଛି । ନିର୍ଦ୍ଦିଷ୍ଟ ରୋଗୀର ଲକ୍ଷଣସମୂହ ସଂଗ୍ରହ କଲାପରେ ଏଥିସହ ନିମ୍ନଲିଖିତ ଯେଉଁ ଔଷଧର ଲକ୍ଷଣଗୁଡ଼ିକର ସର୍ବାଧିକ ସାମଞ୍ଜସ୍ୟ (Similarity) ଥିବ, ଉକ୍ତ ରୋଗୀ ପାଇଁ ସେହି ଔଷଧ ହିଁ ପ୍ରଯୁଜ୍ୟ ।

**ବ୍ୟବହୃତ ଔଷଧ :**

ରୋଗର ପ୍ରଥମାବସ୍ଥାରେ ଯେଉଁ ସବୁ ଔଷଧ ବ୍ୟବହାର କରାଯାଏ ସେଗୁଡ଼ିକର ଲକ୍ଷଣ ନିମ୍ନରେ ଦିଆଗଲା ।

**(୧) ଆକୋନାଇଟ୍ (Aconite) :**

ଶୀତଦିନେ ଥଣ୍ଡା ପବନ ବାଜି ବ୍ରୋଙ୍କାଇଟିସ୍ ହୋଇଥିଲେ ପ୍ରାଥମିକ ଅବସ୍ଥାରେ ଏହା ଏକ ଅବ୍ୟର୍ଥ ଔଷଧ । ସନ୍ଧ୍ୟା ବା ରାତି ସମୟରେ ଅଧିକ ଶୁଖିଲା କାଶ ହୋଇ ଛାତିରେ ଯନ୍ତ୍ରଣା ଅନୁଭବ ହେଲେ ଅଥବା ନିଶ୍ୱାସ ବନ୍ଦ ହୋଇଯିବା ପରି ମନେ ହେଲେ, ରୋଗୀ କମ୍ ବ୍ୟବଧାନରେ ଅଧିକ ପାଣି ପିଇବାକୁ ଇଚ୍ଛା କରୁଥିଲେ ଏବଂ ଅତ୍ୟନ୍ତ ଅସ୍ଥିର ମନେ ହେଉଥିଲେ ଏହି ଔଷଧ ବ୍ୟବହାର୍ଯ୍ୟ ।

**(୨) ବେଲାଡୋନା (Belladonna) :**

ତଣ୍ଟି ଦରଜ ଓ ସଢ଼ସଢ଼ ହୋଇ ପ୍ରବଳ ଯନ୍ତ୍ରଣାଦାୟକ ଶୁଖିଲା କାଶ ସହ ମୁହଁ ନାଲି ପଡ଼ିଯାଉଥିଲେ, ଶ୍ୱାସନଳୀ ଶୁଷ୍କ ଯିବା ଓ ତଣ୍ଟି ବନ୍ଦ ହୋଇଯିବା ପରି ମନେ ହେଉଥିଲେ ନିଃଶ୍ୱାସ ନେବାକୁ କଷ୍ଟ ହେଉଥିଲେ ଏହାକୁ ପ୍ରୟୋଗ କରାଯାଇଥାଏ । କାଶ ସହ ପ୍ରବଳ ମୁଣ୍ଡବ୍ୟଥା ଓ ଜ୍ୱର ହୋଇପାରେ ।

**(୩) ବ୍ରାୟୋନିଆ (Bryonia) :**

ପ୍ରବଳ ଶୁଖିଲା କାଶସହ ମୁଣ୍ଡ ଓ ଛାତିରେ ଯନ୍ତ୍ରଣା ହେଉଥିଲେ, ରୋଗୀ ଯନ୍ତ୍ରଣା ହେଉଥିବା ସ୍ଥାନକୁ ହାତରେ ଚିପି ଧରୁଥିଲେ, ଖାଇବା ପିଇବା ପରେ ସାମାନ୍ୟ ଚଲାବୁଲାରେ ଓ ଘର ଭିତରେ କାଶ ଅଧିକ ଅନୁଭୂତ ହେଉଥିଲେ; ପାଟି ଓ ଜିଭ ଶୁଖିଯାଇ ଅଧିକ ଶୋଷ ହେଉଥିଲେ ଓ ଶୁଖିଲା ଝାଡ଼ା ହେଉଥିଲେ ଏହି ଔଷଧକୁ ବ୍ୟବହାର କରାଯାଇପାରେ ।

**(୪) ସ୍ପଞ୍ଜିଆ (Spongia) :**

ଶୀତଦିନିଆ ଶୁଖିଲା ଥଣ୍ଡାପବନରେ ବୁଲିବା ପରେ ବ୍ରୋଙ୍କାଇଟିସ୍ ହେଲେ ଏହା ଏକ ଉତ୍ତମ ଔଷଧ । ସମସ୍ତ ଶ୍ୱାସନଳୀ ଶୁଖିଯିବା ପରି ମନେ ହେଉଥିଲେ ଓ ରୋଗୀ ଘିଁଘିଁ ଶବ୍ଦ କରି କାଶୁଥିଲେ; ନିଃଶ୍ୱାସ ପ୍ରଶ୍ୱାସ ସମୟରେ କରତରେ କାଠ କାଟିବା ପରି ସାଇଁ ସାଇଁ ଶବ୍ଦ ହେଉଥିଲେ; ଥଣ୍ଡା ପାଣି ପିଇବା, କଥାବାର୍ତ୍ତା କରିବା ଓ ସନ୍ଧ୍ୟା ସମୟରେ କାଶର ପ୍ରକୋପ ବୃଦ୍ଧି ପାଇ ଗରମ ଜିନିଷ ଖାଇବା କିମ୍ବା ପିଇବା ଦ୍ୱାରା ହ୍ରାସ ପାଉଥିଲେ ଏହାକୁ ବ୍ୟବହାର କରିବା ବାଞ୍ଛନୀୟ ।

**(୫) ରସ୍ ଟକ୍ସ (Rhus Tox) :**

ବର୍ଷାଋତୁରେ ଥଣ୍ଡାପବନ ଲାଗି କିମ୍ବା ବର୍ଷାରେ ଭିଜିଲା ପରେ ବ୍ରୋଙ୍କାଇଟିସ୍ ହେଲେ ଏହା ଏକ ଅବ୍ୟର୍ଥ ଔଷଧ । ଛାତି ଘଡ଼ଘଡ଼ ହୋଇ ଶୁଖିଲା କାଶ ହୁଏ, ଯାହାର ପ୍ରକୋପ ରାତିରେ ଶୋଇଲାବେଳେ ଓ ଦେହରୁ ବଦର କାଢ଼ିଦେଲେ ବୃଦ୍ଧି ପାଏ, କିନ୍ତୁ ଚଲାବୁଲା କଲେ ରୋଗୀ ଉପଶମ ପାଏ । କାଶ ସମୟରେ ସର୍ଦ୍ଦି, ଜ୍ୱର ଓ ଶରୀରରେ ଅତ୍ୟଧିକ ଯନ୍ତ୍ରଣା ହୋଇ ରୋଗୀ ଅସ୍ଥିର ହୋଇପଡ଼େ ।

**(୬) କଷ୍ଟିକମ୍ (Causticum) :**

ଶୀତଦିନିଆ ବ୍ରୋଙ୍କାଇଟିସ୍ ରୋଗରେ ଏହା ଅନ୍ୟତମ ଔଷଧ । ଛାତି ଓ ତଣ୍ଟି ଦରଜ ହୋଇ ସ୍ୱର ମୋଟାଳିଆ ଶୁଭୁଥିଲେ, ଯେତେ କାଶିଲେ ମଧ୍ୟ ଛାତିରେ କଫ ଥାଇ ଆଦୌ ନବାହାରିଲେ କିନ୍ତୁ ପାଣି ପିଇଲା ପରେ କାଶ କମିଯାଉଥିଲେ, କାଶିବା ସମୟରେ ରୋଗୀର ଅଜାଣତରେ ପରିସ୍ରା ହୋଇଯାଉଥିଲେ ଏହା ଉତ୍ତମ ଫଳ ଦିଏ ।

## (୭) ରୁ୍ୟମେକ୍ସ (Rumex) :

ଶୀତଦିନିଆ ଶୁଖିଲା ଥଣ୍ଡାପବନ ଲାଗି ତଣ୍ଟି ଘଡ଼ଘଡ଼ ହୋଇ ପ୍ରବଳ ଶୁଖିଲା କାଶ ହେଉଥିଲେ ଓ ସନ୍ଧ୍ୟା ସମୟରେ କଥାବାର୍ତ୍ତା କଲେ ଓ ଶୋଇବା ସମୟରେ ତଥା ସାମାନ୍ୟତମ ଥଣ୍ଡାପବନ ସଂସ୍ପର୍ଶରେ ଆସିଲେ କାଶର ପ୍ରକୋପ ବୃଦ୍ଧି ପାଉଥିଲେ ଅଥଚ ମୁହଁ ଓ ମୁଣ୍ଡ ଘୋଡ଼ାଇ ରଖିବାକୁ ରୋଗୀ ପସନ୍ଦ କରୁଥିଲେ ଏହି ଔଷଧ ବ୍ୟବହାର୍ଯ୍ୟ ।

ରୋଗ ଆରମ୍ଭ ହେବାର ୨/୪ ଦିନ ପରେ ଉପଯୁକ୍ତ ଚିକିତ୍ସା ନକଲେ ଘଡ଼ଘଡ଼ ଶବ୍ଦ ହୋଇ କାଶ ଓ ନିଃଶ୍ୱାସ ପ୍ରଶ୍ୱାସ ସମୟରେ କଷ୍ଟ ଅନୁଭୂତ ହୁଏ ଏବଂ ଜ୍ୱର ମଧ୍ୟ ହୋଇଥାଏ । ଏହି ଅବସ୍ଥାରେ ନିମ୍ନଲିଖିତ ଔଷଧମାନ ଲକ୍ଷଣ ଭିତ୍ତିରେ ବ୍ୟବହାର କରାଯାଇପାରେ ।

## (୧) ହିପର ସଲଫ୍ (Hepar Sulph) :

ଶୀତଦିନିଆ ଶୁଖିଲା ଥଣ୍ଡା ପବନରେ ବୁଲିଲା ପରେ କାଶ ହୋଇ ତଣ୍ଟିରେ ଘଡ଼ଘଡ଼ ଶବ୍ଦ ସହ ପ୍ରଚୁର କଫ ବାହାରୁଥିଲେ; ସକାଳେ, ଭୋର ସମୟରେ ଓ ଦେହର ଯେକୌଣସି ଅଂଶର କପଡ଼ା ବାହାର କରିବା ପରେ, ଥଣ୍ଡାପବନ ବାଜିଲେ କାଶର ବେଗ ବୃଦ୍ଧି ପାଉଥିଲେ ଏବଂ ରୋଗୀ କାଶି କାଶି ଅଣ ନିଃଶ୍ୱାସୀ ହୋଇପଡୁଥିଲେ ହିପର ସଲଫ୍ ବ୍ୟବହାର କରାଯାଇଥାଏ ।

## (୨) ଆଣ୍ଟିମ୍ ଟାର୍ଟ (Antim Tart) :

ଗଳା ଓ ଛାତିରେ ଘଡ଼ଘଡ଼ ଶବ୍ଦ ହୋଇ ପ୍ରଚୁର କଫ ଥିବା ପରି ମନେ ହେଲେବି ରୋଗୀ ଯେତେ କାଶିଲେ ମଧ୍ୟ କଫ ଆଦୌ ବାହାରୁ ନଥିଲେ ଏହା ସର୍ବୋତ୍ତମ ଔଷଧ । ଶ୍ୱାସ ପ୍ରଶ୍ୱାସ ସମୟରେ ରୋଗୀ ବହୁତ କଷ୍ଟ ପାଏ, କାଶି କାଶି ବାନ୍ତି ହୋଇଯାଏ । ରୋଗୀ ଅତ୍ୟନ୍ତ ଅବଶ ହୋଇପଡ଼େ ଓ ମୁହଁ ନୀଳ ପଡ଼ି ଦେହରୁ ବହୁତ ଥଣ୍ଡା ଝାଳ ବହେ । ରାତି ଓ ଶୋଇବା ସମୟରେ କାଶ ବୃଦ୍ଧି ପାଏ ଓ ବସି ରହିଲେ କମ୍ ଅନୁଭୂତ ହୁଏ ।

## (୩) ଇପିକାକ୍ Ipecac) :

ପିଲାମାନଙ୍କ ବ୍ରୋଙ୍କାଇଟିସ୍ ରୋଗରେ ଏହା ଏକ ସର୍ବୋତ୍କୃଷ୍ଟ ଔଷଧ । ତଣ୍ଟି ଓ ଛାତିରେ ଘଡ଼ଘଡ଼ ଶବ୍ଦ ସହ କାଶ, ପ୍ରବଳ ଶ୍ୱାସ କଷ୍ଟ, ଅନବରତ ବାନ୍ତି ଭାବ, ଲାଳୁଆ ଧଳା ରଙ୍ଗର କଫ ବାନ୍ତି, ପାଟିରୁ ପ୍ରଚୁର ଲାଳସ୍ରାବ ଓ ତୃଷାହୀନତା ଏହି ଔଷଧର ମୁଖ୍ୟ ଲକ୍ଷଣ ।

## (୪) ପଲ୍‌ସେଟିଲା (Pulsatilla) :

ତଣ୍ଟି ଘଡ଼ଘଡ଼ ହୋଇ ସନ୍ଧ୍ୟା ଓ ରାତିରେ, ଘର ଭିତରେ ଓ ଶୋଇବା ଅବସ୍ଥାରେ କାଶ ଅଧିକ ଅନୁଭୂତ ହୋଇଥିଲେ; ସନ୍ଧ୍ୟାରେ ଶୁଖିଲା କାଶ ହୋଇ ସକାଳେ ବହୁତ ହଳଦିଆ ବା ସବୁଜ ରଙ୍ଗର କଫ ବାହାରୁ ଥିଲେ ଏହା ବ୍ୟବହାର୍ଯ୍ୟ । ଛାତି ବ୍ୟଥା ସହ ଓଜନିଆ ଭାବ, ପାଟି ଓ ଜିଭ ଶୁଖିଲା ଥିଲେ ହେଁ ତୃଷାହୀନତା, ରୋଗୀର ଖୋଲା ପବନ ପସନ୍ଦ ଇତ୍ୟାଦି ଏହି ଔଷଧର ଅନ୍ୟାନ୍ୟ ଲକ୍ଷଣ ।

## (୫) ନାଟ୍ରମ ସଲଫ (Nat Sulph) :

ଇପିକାକ ପରି ଏହା ପିଲାମାନଙ୍କର ବ୍ରୋଙ୍କାଇଟିସ୍ ରୋଗରେ ଅତ୍ୟନ୍ତ ଫଳପ୍ରଦ । ବର୍ଷାଋତୁରେ ଏହି ରୋଗ ହେଲେ କିମ୍ବା ବର୍ଷାରେ ଭିଜି ଅଧିକ କାଶ ହେଲେ; ଅର୍ଦ୍ଧ ରାତି ପରେ କାଶ ଓ ଶ୍ୱାସ କଷ୍ଟ ବୃଦ୍ଧି ପାଇଲେ ଏବଂ କାଶିବା ପରେ ପ୍ରଚୁର ହଳଦିଆ କଫ ବାହାରୁ ଥିଲେ ଏହା ବ୍ୟବହାର୍ଯ୍ୟ ।

## ଔଷଧ ସେବନ :

ସାମଞ୍ଜସ୍ୟ ଭିତ୍ତିରେ (Law of Similarity) ଔଷଧ ସ୍ଥିର କଲାପରେ ବୟସାନୁସାରେ ତାହାର ୬,୩୦ ବା ୨୦୦ ଶକ୍ତିରୁ ଥରକେ ୨/୩/୪ଟା ଗୁଳି ରୋଗର ପ୍ରକୋପ ଅନୁଯାୟୀ ୨/୪/୬ ଘଣ୍ଟା ବ୍ୟବଧାନରେ ସେବନ ପାଇଁ ଦିଆଯାଇଥାଏ । ଔଷଧ ବ୍ୟବହାର ପରେ ଆଶାନୁରୂପ ଫଳ ନମିଳିଲେ କିମ୍ବା ରୋଗୀର ଅବସ୍ଥାରେ ଅବନତି ଘଟିଲେ ତୁରନ୍ତ ଶିକ୍ଷିତ ହୋମିଓପାଥି ଡାକ୍ତରଙ୍କ ସହ ପରାମର୍ଶ କରିବା ଉଚିତ ।

---

ଡାକ୍ତର ଅଭିମନ୍ୟୁ ହୋମିଓପାଥି ଭେଷଜ
ମହାବିଦ୍ୟାଳୟ, ଭୁବନେଶ୍ୱର ।



*ରାଜ୍ୟ ସୂଚନା ଭବନଠାରେ ମନ୍ତ୍ରୀ ଶ୍ରୀ ଶରତ କୁମାର କର କବିଚନ୍ଦ୍ର କାଳିଚରଣ ପଟ୍ଟନାୟକଙ୍କ ଜୟନ୍ତୀ ଉତ୍ସବକୁ ଉଦ୍‌ଘାଟନ କରୁଛନ୍ତି ।*

# ବୈଦିକ ଯୁଗରେ ନାରୀ ଶିକ୍ଷା ଓ ସ୍ୱାଧୀନତା

• ଶ୍ରୀମତୀ ମିନତି ଷଡ଼ଙ୍ଗୀ

ସୃଷ୍ଟିର ଦୁଇଟି ଦିଗ । ନାରୀ ଓ ପୁରୁଷ । ନାରୀ ପ୍ରକୃତି ଓ ନର ପୁରୁଷର ପ୍ରତୀକ । ପୁରୁଷ ଓ ପ୍ରକୃତିର ମିଳନରେ ଏ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି । ଏ ସୃଷ୍ଟିରେ ମାଆ ହେଉଛି ମାୟା ଓ ପିତା ପରବ୍ରହ୍ମ ସ୍ୱରୂପ । ମାୟା ନ ଥିଲେ ପରମେଶ୍ୱରଙ୍କୁ ଚିହ୍ନିବା ଅସମ୍ଭବ । ମାୟା ଭଗବାନଙ୍କର ଆକାର, ପରବ୍ରହ୍ମ ହେଉଛି ଭଗବାନଙ୍କର ନାମ । ଏହି ଆକାର ଓ ନାମ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । କିଏ କାହାଠାରୁ ଅଲଗା ହୋଇ ନପାରେ । ଭାରତୀୟ ସଂସ୍କୃତି, ପ୍ରତ୍ୟେକ ଯୁଗରେ ନିଜର କଳା, ସ୍ଥାପତ୍ୟ, ସାହିତ୍ୟ, କାବ୍ୟ, କବିତା ଓ ନାଟକାଦି ମାଧ୍ୟମରେ ନାରୀ ଶକ୍ତିର ମହନୀୟତାକୁ ସ୍ୱୀକାର କରି ଆସିଛି । ବିଶ୍ୱବିଖ୍ୟାତ କବି କାଳିଦାସ "ରଘୁବଂଶ" ମହାକାବ୍ୟର ଆରମ୍ଭରେ ମହାଦେବଙ୍କର ଅର୍ଦ୍ଧନାରୀଶ୍ୱର ରୂପକୁ ହିଁ ସ୍ତୁତି କରିଛନ୍ତି ।

"ବାଗର୍ଥାବିବ ସମ୍ପୃକ୍ତୌ ବାଗର୍ଥ ପ୍ରତିପତ୍ତୟେ
ଜଗତ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ" ।

ଅର୍ଥାତ୍–ଶବ୍ଦ ଓ ଅର୍ଥ ପରି ପରସ୍ପର ସଂଶ୍ଲିଷ୍ଟ ଜଗନ୍ମାତା ପାର୍ବତୀ ଓ ଜଗତ୍‌ପିତା ପରମେଶ୍ୱରଙ୍କୁ ବନ୍ଦନା କରୁଛି । ସ୍ତ୍ରୀ ହେଉଛି ଅର୍ଦ୍ଧାଙ୍ଗିନୀ, ପୁରୁଷର ସର୍ବଶ୍ରେଷ୍ଠ ଘନିଷ୍ଠ ଓ ବିଶ୍ୱସ୍ତ ସାଥୀ ଓ ସ୍ନେହମୟୀ ଜନନୀ । ଭାରତୀୟ ସମାଜରେ ବିବାହର ଆଦର୍ଶ ଓ ଚିନ୍ତାଧାରା ଅନୁଯାୟୀ ମନୁଷ୍ୟ ଶରୀରର ଦକ୍ଷିଣ ଭାଗ ହେଉଛି ପତି ଓ ବାମ ଭାଗ ହେଉଛି ସ୍ତ୍ରୀ । ତେଣୁ ସ୍ତ୍ରୀକୁ ବାମା ବା ବାମାଙ୍ଗୀ ବୋଲି କୁହାଯାଇଥାଏ । ବ୍ୟକ୍ତିକୁ ନେଇ ପରିବାର ପରିବାରକୁ ନେଇ ସମାଜ ଓ ସମାଜକୁ ନେଇ ରାଷ୍ଟ୍ରର ପରିକଳ୍ପନା । ତେଣୁ, ପ୍ରତ୍ୟେକ ବ୍ୟକ୍ତିବିଶେଷର ଉନ୍ନତିରେ ରାଷ୍ଟ୍ରୀୟ ଉନ୍ନତି ସମ୍ଭବ । ନାରୀ, ସମାଜର ଜଣେ ବ୍ୟକ୍ତି, ତେଣୁ ପୁରୁଷଙ୍କ ସଦୃଶ ସେ ମଧ୍ୟ ସମାଜର ପ୍ରତ୍ୟେକଟି ସୁବିଧା ଓ ସୁଯୋଗ ପାଇବା ପାଇଁ ହକ୍‌ଦାର ।

ଶିକ୍ଷା, ପ୍ରତ୍ୟେକ ବ୍ୟକ୍ତି ବିଶେଷଙ୍କର ଆବଶ୍ୟକତା ପୂର୍ଣ୍ଣ କରେ । ମହାତ୍ମା ଗାନ୍ଧୀଙ୍କ ଭାଷାରେ– "ଶିଶୁର ଦେହ, ମନ ଓ ଆତ୍ମାରେ ଥିବା ଶ୍ରେଷ୍ଠତ୍ୱର ପରିପ୍ରକାଶ କରାଇବା ହେଉଛି ଶିକ୍ଷା ; ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ– "ମନୁଷ୍ୟ ମଧ୍ୟରେ ପ୍ରଥମରୁ ରହିଥିବା ଉତ୍କର୍ଷର ଅଭିବ୍ୟକ୍ତି ହେଉଛି ଶିକ୍ଷାର ଉଦ୍ଦେଶ୍ୟ" । ମୋଟ ଉପରେ ମାନବକୁ, ମାନବ ରୂପେ ଗଢ଼ି ତୋଳିବା ପାଇଁ ଶିକ୍ଷାର ଆବଶ୍ୟକତା ଯେ ନିଶ୍ଚିତ ଭାବରେ ରହିଛି ତାହା ନିଃସନ୍ଦେହରେ କୁହା ଯାଇପାରେ । ମାନବ ବ୍ୟକ୍ତିତ୍ୱର ପୂର୍ଣ୍ଣାଙ୍ଗ ବିକାଶ ସାଧନ କରାଇବା ଉଦ୍ଦେଶ୍ୟରେ ଯୁଗକୁ ଯୁଗ ଶିକ୍ଷାର ରୂପରେଖରେ ବାହ୍ୟ ପରିବର୍ତ୍ତନ ଘଟାଯାଉଥିଲେ ହେଁ ଏହାର ମୂଳ ଲକ୍ଷ୍ୟ ଓ ଅଭିପ୍ରାୟରେ କୌଣସି ପରିବର୍ତ୍ତନ ହୋଇନଥାଏ । ତେଣୁ ସମାଜରେ ଉଭୟ ନାରୀ ଏବଂ ପୁରୁଷର ସର୍ବାଙ୍ଗୀନ ବିକାଶ ନିମନ୍ତେ ଶିକ୍ଷାର ମହତ୍ତ୍ୱ ସହଜରେ ଅନୁମେୟ । ଅଧିକନ୍ତୁ ଭାରତ ପରି ଏକ ବିକାଶଶୀଳ ରାଷ୍ଟ୍ରରେ ନାରୀଶିକ୍ଷାର ଗୁରୁତ୍ୱ ଏତେ ବେଶୀ ଯେ ତାହା ଚିନ୍ତା କରି ହୁଏନା । ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ସଭ୍ୟତା ଓ ସଂସ୍କୃତିର ପରମ୍ପରା, ପରିବାର ମାଧ୍ୟମରେ ହିଁ ପ୍ରବାହିତ ହୋଇ ଆସିଛି । ପରିବାର ହିଁ ବ୍ୟକ୍ତିଗତ ଓ ସାମାଜିକ ଉତ୍ଥାନର ପୃଷ୍ଠଭୂମି ଏବଂ ଏହି ପରିବାରର ସର୍ବମୟକର୍ତ୍ତ୍ରୀ ରୂପେ ନାରୀ ହିଁ ଅଗ୍ରଗଣ୍ୟା । ଭାବୀ ବଂଶଧରମାନଙ୍କର ଜନ୍ମଦାତ୍ରୀ ହେଉଥିବା ହେତୁ ସେହି ନାରୀ ଶିକ୍ଷିତା ହେବା ସର୍ବାଦୌ ବାଞ୍ଛନୀୟ । ପରିବାରରୂପି ପ୍ରାସାଦର ମୂଳଦୁଆ ଯେତେ ଦୃଢ଼ ଓ ଶକ୍ତିଶାଳୀ ହୋଇଥାଏ, ଗୃହ ସେତିକି ମଜଭୁତ ଓ ଦୀର୍ଘସ୍ଥାୟୀ ହୋଇଥାଏ । ଭବିଷ୍ୟତ ନାଗରୀକମାନଙ୍କୁ ସେ ଦେଶର ସଭ୍ୟତା ଓ ସଂସ୍କୃତିର ଉପଯୁକ୍ତ ଦାୟାଦଭାବରେ ଗଢ଼ିତୋଳିବା ଦାୟିତ୍ୱ ଯେଉଁ ମାତୃଜାତି ଉପରେ ଆବହମାନ କାଳରୁ ନ୍ୟସ୍ତ, ସେ ଯଦି ଅଶିକ୍ଷିତା, ଅବହେଳିତା ଓ ଅସୁରକ୍ଷିତା ହୁଏ ତେବେ ରାଷ୍ଟ୍ରୀୟ ଉନ୍ନତି ଅସମ୍ଭବ । ତେବେ, କି ପ୍ରକାର ଶିକ୍ଷା ଓ ସ୍ୱାଧୀନତା ପ୍ରକୃତରେ ନାରୀ ସମାଜର ହିତକାରୀ ତାହାହିଁ ବିଚାର୍ଯ୍ୟ । ଭାରତବର୍ଷରେ ନାରୀ, ସବୁଦିନେ ଗୃହଲକ୍ଷ୍ମୀ ରୂପେ, ଧର୍ମ ପତ୍ନୀ ରୂପେ ତୀର୍ଥଯାତ୍ରାର ସହଚରୀ ରୂପେ ଓ ସ୍ନେହମୟୀ ଜନନୀ ଭାବରେ କେଉଁ ଆଦିମ କାଳରୁ ସମ୍ମାନିତା ହୋଇ ଆସୁଛି । ସମଗ୍ର ବିଶ୍ୱରେ ନୂତନ ଓ ପୁରାତନ ହୋଇ, ଯେତେ ଯେତେ ମାନବ ସଭ୍ୟତା ଗଢ଼ି ଉଠିଛି, କୌଣସି ସଭ୍ୟତା, ମାତୃଜାତିକୁ ଏକକାଳୀନ ଏହି ଦୃଷ୍ଟିରେ ଦେଖି ନ'ଥାଆନ୍ତି । କିନ୍ତୁ ଦୁଃଖ ଓ ପରିତାପର ବିଷୟ ଆଧୁନିକ ଭାରତବର୍ଷରେ ନାରୀପ୍ରତି ସମାଜର ଦୃଷ୍ଟିଭଙ୍ଗୀର ଅନେକାଂଶରେ ପରିବର୍ତ୍ତନ ଘଟିଛି । ଯଦିଓ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି, ପ୍ରତିବର୍ଷ ଲକ୍ଷ ଲକ୍ଷ ଝିଅ ଏହି ଶିକ୍ଷାନୁଷ୍ଠାନମାନଙ୍କରୁ କୃତକାର୍ଯ୍ୟ ହୋଇ ସ୍ୱାବଲମ୍ବୀ ହେବାର ଯୋଗ୍ୟତା ଅର୍ଜନ କରିପାରୁଛନ୍ତି । ତଥାପି କେଜାଣି କେଉଁ ଯାଗାରେ ଭୁଲ୍ ରହିଯାଇଛି, ଯେଉଁ କାରଣରୁ ନାରୀ ତା'ର ଆଦର୍ଶ ଓ ଗୌରବ ଭୁଲି ଯାଉଛି । ସ୍ୱାଧୀନ ଭାରତ, ନାରୀମାନଙ୍କୁ ଅନେକାଂଶରେ ଅର୍ଥନୈତିକ ଦିଗରେ ସ୍ୱାବଲମ୍ବୀ କରାଇ ପାରିଛି । ପୁରୁଷମାନଙ୍କ ସହିତ ସମାନତାଳ ଦେଇ ଆଜି ଭାରତୀୟନାରୀ ନିଜକୁ ସମାଜର ପ୍ରତ୍ୟେକ ବିଭାଗ ପାଇଁ ଯୋଗ୍ୟ କରିପାରିଛି । ସେଥିପାଇଁ ଆଜିର ଭାରତରେ ନାରୀମାନେ ଡାକ୍ତର, ଇଞ୍ଜିନିୟର, ଅଧ୍ୟାପିକା, ଆଇନଜ୍ଞ ସଙ୍ଗୀତଜ୍ଞ, ଶିଳ୍ପୀ, ବ୍ୟବସାୟୀ ଏପରିକି ପ୍ରଶାସନିକ ଅଫିସର ଭାବରେ ମଧ୍ୟ କାର୍ଯ୍ୟ ତୁଲାଉଛନ୍ତି । ମନ୍ତ୍ରୀ, ପ୍ରଧାନମନ୍ତ୍ରୀ ଓ ରାଜ୍ୟପାଳ ଭାବରେ ଶାସନ ଦଣ୍ଡ ଧାରଣ କରୁଛନ୍ତି । ନାରୀଶିକ୍ଷାର ବହୁଳ ପ୍ରସାର ସତ୍ତ୍ୱେ ଏ ଦେଶର ନାରୀ, ଆଜିପର୍ଯ୍ୟନ୍ତ ନିଜକୁ ସ୍ୱାଧୀନ ବୋଲି ଭାବି ପାରିନାହିଁ । ଦୀର୍ଘ ଦୁଇଶହ ବର୍ଷର ପରାଧୀନତା ପରେ ଭାରତ ସ୍ୱାଧୀନ ହେବାର ସୁଦୀର୍ଘକାଳ କଟି ଗଲାଣି । ମାତ୍ର ଆଜି ବି ଭାରତୀୟ ନାରୀ ଯୌତୁକ, ସତୀଦାହ, ବାଲ୍ୟବିବାହ ପ୍ରଭୃତି କୁସଂସ୍କାର କବଳରୁ ରକ୍ଷା ପାଇପାରିନି । ଆଜିପର୍ଯ୍ୟନ୍ତ ନାରୀସୁରକ୍ଷା ନିମନ୍ତେ ନିତ୍ୟ ନୂତନ ଆଇନ୍‌ମାନ ପ୍ରଣୟନ କରାଯାଉଛି ତଥାପି ପ୍ରତ୍ୟେହ ନାରୀ ନିର୍ଯ୍ୟାତନାର କରୁଣ

କାହାଣୀ ସମ୍ବାଦପତ୍ରମାନଙ୍କର ପୃଷ୍ଠା ଅଳଙ୍କୃତ କରିଚାଲିଛି । ନାରୀ ଦିନ ପରେ ଦିନ ନିଜକୁ ନିଃସ୍ୱ ଅସହାୟ ଓ ଅଧିକରୁ ଅଧିକ ଅବଳା ବୋଲି ଭାବୁଛି । ଆଜି ପର୍ଯ୍ୟନ୍ତ ତଥାକଥିତ ଶିକ୍ଷିତ ସମାଜରେ କନ୍ୟା ଜନ୍ମକୁ ଏକ ଅଭିଶାପ ରୂପେ ଗଣନା କରାଯାଉଛି । ସବୁଠାରୁ କ୍ଷୋଭ ଓ ଲଜ୍ଜାର ବିଷୟ, ନାରୀହିଁ ନାରୀ ନିର୍ଯ୍ୟାତନା ମୁଖ୍ୟ କାରଣ ଭାବରେ ଦେଖା ଯାଉଛି । ତା'ନ ହେଲେ ବିଜ୍ଞାନର ଅଗ୍ରଗତି ହେତୁ ଗର୍ଭସ୍ଥ ସନ୍ତାନର ଲିଙ୍ଗ ନିର୍ଣ୍ଣୟ ହେବାପରେ, କନ୍ୟା ସନ୍ତାନକୁ ନଷ୍ଟ କରି ଦିଆଯାଉ ନ ଥାଆନ୍ତା । ଜନ୍ମଭିତ୍ତିକ ଜାତି ପ୍ରଥା ଏତେ ଭୟଙ୍କର ବ୍ୟାଧି ରୂପେ ଦେଖାଯାଉଛି ଯେ ଜାତି ଜାତି ମଧ୍ୟରେ ବିବାହ ଦୂରର କଥା ଜାତି ଜାତି ମଧ୍ୟରେ ସଦ୍‌ଭାବ ମଧ୍ୟ ଲୋପ ପାଉଛି । ବିବାହ, ଅନେକତ୍ର ପ୍ରହସନରେ ପରିଣତ ହେଉଛି । ଏ ସବୁ ଅନୁଧ୍ୟାନ କଲେ ସ୍ୱତଃ ମନରେ ପ୍ରଶ୍ନ ଉଠେ ନାରୀସମାଜର ଏ ଅଧଃପତନ ପାଇଁ ପ୍ରକୃତରେ କିଏ ଦାୟୀ ?????

ଗଭୀର ଭାବରେ ଜଣେ ଯଦି ଏଭଳି ପରିସ୍ଥିତିର ମୂଳକାରଣ ଖୋଜିବସେ ତେବେ ସର୍ବ ପ୍ରଥମେ ଦୃଷ୍ଟି ପଥାରୂଢ଼ ହୁଏ ଆଜିର ଶିକ୍ଷା । କାରଣ ଅଧୁନାତନ ଶିକ୍ଷା, କେବଳ ପଦ ପ୍ରତିଷ୍ଠା, ବାହ୍ୟାଡ଼ମ୍ବର, ବ୍ୟକ୍ତିଗତ ସ୍ୱାର୍ଥ ସାଧନାର ସହାୟକ ହୋଇଛି । ବ୍ୟକ୍ତିଗତ ସଂକୀର୍ଣ୍ଣତାର କ୍ଷୁଦ୍ର ପରିସୀମା ମଧ୍ୟରୁ ବାହାରି, ସମାଜ ତଥା ରାଷ୍ଟ୍ରୀୟ ହିତ ସାଧନ କରିବା, ଆଉ ଶିକ୍ଷିତା ନାରୀମାନଙ୍କ ପକ୍ଷରେ ସମ୍ଭବ ହେଉନାହିଁ । ନିଜ ଦେଶର ସଭ୍ୟତା ଓ ସଂସ୍କୃତିକୁ ପାଶୋରି ପାଶ୍ଚାତ୍ୟ ଜଗତର ଅନ୍ଧ ଅନୁକରଣ ଦ୍ୱାରାହିଁ ଶିକ୍ଷାର ମାନ ଆଜି ନିମ୍ନଗାମୀ ହେବାରେ ଲାଗିଛି । ଆର୍ଥିକ ପ୍ରଗତି ସମ୍ଭବ ହୋଇଥିଲେ ମଧ୍ୟ ମାନସିକ ଓ ଆଧ୍ୟାତ୍ମିକ ଦାରିଦ୍ର୍ୟ ଆଜି ନାରୀ ସମାଜକୁ ଆକ୍ରାନ୍ତ କରିଛି । ସମ୍ମୁଖରେ କୌଣସି ନୂତନ ଆଦର୍ଶ ନରଖି ଅତୀତର ଆଦର୍ଶ ଓ ପରମ୍ପରାକୁ ସମ୍ପୂର୍ଣ୍ଣରୂପେ ଜଳାଞ୍ଜଳି ଦେବାଦ୍ୱାରା ଆଜି ବିଂଶ ଶତାବ୍ଦୀର ଭାରତୀୟନାରୀ ସ୍ୱାଧୀନ ଭାରତରେ ରହି ପରାଧୀନତାର ଶୀକାର ହେଉଛି ।

ପ୍ରକୃତ ଶିକ୍ଷିତ ବ୍ୟକ୍ତି, ସେ ନାରୀ ହେଉ ବା ପୁରୁଷ ହେଉ, ନିଜର ସିମୀତ ଜୀବନକାଳ ମଧ୍ୟରେ ମାନବ ଜନ୍ମର ସାର୍ଥକତା ଉପଲବ୍ଧି କରି ନିଜକୁ ଈଶ୍ୱରଙ୍କର ଏକ ସାର୍ଥକ ସୃଷ୍ଟି ବୋଲି ପ୍ରମାଣିତ କରିପାରେ । ନିଜର ମାନବୀୟ ଗୁଣାବଳୀଦ୍ୱାରା ବ୍ୟକ୍ତିଗତ ସ୍ୱାର୍ଥରୁ ମୁକ୍ତ ହୋଇ ରାଷ୍ଟ୍ରୀୟ ଉନ୍ନତି କଳ୍ପେ ପ୍ରାଣତ୍ୟାଗ ମଧ୍ୟ କରିଥାଏ । ତା'ର ଶିକ୍ଷା ବହୁଜନ ସୁଖାୟ, ବହୁଜନ ହିତାୟ ଚ, ଅର୍ଥାତ୍ ଶିକ୍ଷା, ଅନେକ ଲୋକଙ୍କର ସୁଖ ଓ ମଙ୍ଗଳ ନିମନ୍ତେ ଉଦ୍ଦିଷ୍ଟ । ଆଧୁନିକ ଭାରତରେ ନାରୀଶିକ୍ଷା ଓ ସ୍ୱାଧୀନତାର ସ୍ଲୋଗାନ ଶୁଣିଲେ ମନେହୁଏ ସତେ ଯେମିତି ଭାରତୀୟ ନାରୀ ଯୁଗେ ଯୁଗେ ଶିକ୍ଷାର ଆଲୋକରୁ ବଞ୍ଚିତା ! ଅଥବା ସତେ ଯେମିତି ଭାରତରେ ନାରୀ ପୁରୁଷର ଭୋଗବିଳାସର ସାମଗ୍ରୀ ! ଏ ଦେଶରେ ସବୁସମୟରେ କନ୍ୟାଜନ୍ମ ଏକ ଅଭିଶାପ ରୂପେ ପରିଗଣିତ ହେଉଥିଲା । ସତେ କ'ଣ ଯୌତୁକ ପ୍ରଥା ଏ ଦେଶର ଏକ ପ୍ରାଚୀନ ପରମ୍ପରା । ବିଧବା ବିବାହ 'ପରି ମହନୀୟ ଆଦର୍ଶ କ'ଣ ଏ ଦେଶପାଇଁ ସ୍ୱପ୍ନ ! ସତେ କ'ଣ ପ୍ରତ୍ୟେକ ଯୁଗରେ ଭାରତୀୟ ନାରୀ ଶିକ୍ଷାର ଆଲୋକରୁ ବଞ୍ଚିତା 'ହୋଇ କେତେକ ଅନ୍ଧବିଶ୍ୱାସ ଓ କୁସଂସ୍କାରର ପରିବାହିକା ଥିଲା ! ଏହିପରି ଅନେକ ପ୍ରଶ୍ନତରଙ୍ଗ ମସ୍ତିଷ୍କକୁ ଭାରାକ୍ରାନ୍ତ କରିବା ସ୍ୱାଭାବିକ । ମାତ୍ର ପ୍ରାଚୀନ ଭାରତୀୟ ସଭ୍ୟତା ଓ ସଂସ୍କୃତିର ପୃଷ୍ଠା ଯଦି ଉନ୍ମୋଚନ କରାଯାଏ, ଏ ଦେଶର ନାରୀ କ'ଣ ଥିଲା ଓ ଆଜି କେଉଁ ଅବସ୍ଥାରେ ଆସି ପହଞ୍ଚିଛି, ତାହାର ଏକ ସ୍ପଷ୍ଟ ପ୍ରତିଛବି ଚକ୍ଷୁ ସମ୍ମୁଖରେ ଭାସିଉଠେ ।

ଆଜକୁ ହଜାର ହଜାର ବର୍ଷ ପୂର୍ବେ ଏହି ଭାରତବର୍ଷରେ ଏକ ମାନବ ସଭ୍ୟତା ଗଢ଼ିଉଠିଥିଲା; ଯେତେବେଳେ କି ସଭ୍ୟ ସୁଶିକ୍ଷିତ ବୋଲି କୁହାଯାଉଥିବା ସର୍ବାଧୁନିକ ପାଶ୍ଚାତ୍ୟ ଜଗତ ଆବିଷ୍କୃତ ମଧ୍ୟ ହୋଇ ନ ଥିଲା । କୌଣସି ନିର୍ଦ୍ଦିଷ୍ଟ ସମୟସୀମା ଅତିକ୍ରାନ୍ତ କରିଥିବା ଏହି ସଭ୍ୟତା, ନାରୀଶିକ୍ଷା, ନାରୀପ୍ରଗତି ଓ ସ୍ୱାଧୀନତାର ସୁବର୍ଣ୍ଣମୟ ଯୁଗ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ସିନ୍ଧୁ, ବ୍ରହ୍ମପୁତ୍ର ଓ ସରସ୍ୱତୀ ନଦୀର ଅବବାହିକାରେ ଗଢ଼ି ଉଠିଥିବା ଏହି ସର୍ବପ୍ରାଚୀନ ମାନବ ସଭ୍ୟତା ପ୍ରତ୍ୟେକ କ୍ଷେତ୍ରରେ, ପ୍ରାଚୀନ ଗ୍ରୀକ୍ ରୋମୀୟ ତଥା ଅତ୍ୟାଧୁନିକ ପାଶ୍ଚାତ୍ୟ ସଭ୍ୟତାଠାରୁ ମଧ୍ୟ ଯଥେଷ୍ଟ ଉନ୍ନତ ମାର୍ଜ୍ଜିତ ଓ ପ୍ରଗତିଶୀଳ ଥିଲା । ସେ ଥିଲା ବୈଦିକ ସଭ୍ୟତା ଅଥବା ଋଷି ସଭ୍ୟତା ବିଶ୍ୱର ସର୍ବପ୍ରାଚୀନ ସାହିତ୍ୟ ରୂପେ ପରିଗଣିତ । 'ବେଦ' ହିଁ ଏ ସଭ୍ୟତାର ସବୁଠାରୁ ନିର୍ଭରଶୀଳ ଓ ପ୍ରାମାଣିକ ଗ୍ରନ୍ଥ । ମାନବୀୟ ଚିନ୍ତାଧାରାର ସର୍ବୋତ୍କୃଷ୍ଟ ସଂକଳନ 'ବେଦ' ତଥା ଏହା ଉପରେ ଆଧାରିତ ବୈଦିକ ସଭ୍ୟତା ଓ ସଂସ୍କୃତି ଏକ ପୂର୍ଣ୍ଣାଙ୍ଗ ଓ ପୂର୍ଣ୍ଣବିକଶିତ ମାନବ ସଭ୍ୟତା ରୂପେ ଆଜି ମଧ୍ୟ ବିଶ୍ୱ ଦରବାରରେ ଅପ୍ରତିଦ୍ୱନ୍ଦ୍ୱୀ । ଏହାକୁ ପୂର୍ଣ୍ଣାଙ୍ଗ କୁହାଯିବାର ଅର୍ଥ ସମାଜର ଦୁଇଟି ଅଙ୍ଗ, ନାରୀ ଓ ପୁରୁଷଙ୍କର ସମକାଳୀନ ବିକାଶ । ଏହାକୁ ପୂର୍ଣ୍ଣବିକଶିତ କୁହାଯିବାର ଅର୍ଥ–ମାନବ ବ୍ୟକ୍ତିତ୍ୱର ପାଞ୍ଚୋଟି ଦିଗ, ଯଥା–ଶାରୀରିକ, ମାନସିକ, ବୌଦ୍ଧିକ, ଭାବଗତ ଓ ଆଧ୍ୟାତ୍ମିକତାର ସମକାଳୀନ ବିକାଶ । ତେଣୁ ଶିକ୍ଷା, ପ୍ରତି ବ୍ୟକ୍ତିବିଶେଷଙ୍କ ଉତ୍କର୍ଷ ସାଧନ ନିମନ୍ତେ ନାରୀ ପୁରୁଷ, ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କପାଇଁ ସମାନ ଭାବରେ ପ୍ରଯୁଜ୍ୟ ଥିଲା । ଭାରତ ଇତିହାସର ମଧ୍ୟବର୍ତ୍ତୀ ଯୁଗଟି ନାରୀ ଶିକ୍ଷା ଓ ପ୍ରଗତି କ୍ଷେତ୍ରରେ ଅନେକ ପଛରେ ପଡ଼ିଥିଲେ ମଧ୍ୟ ସର୍ବପ୍ରାଚୀନ ବୈଦିକଯୁଗ ବିଶ୍ୱନାରୀ ସମାଜର ଚିରନ୍ତନ ଆଦର୍ଶ ରୂପେ ସ୍ୱୀକୃତି ଲାଭ କରିଛି । ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ନିଜ ପ୍ରତିଭାର ଉନ୍ମେଷ ନିମନ୍ତେ । ଆଧ୍ୟାତ୍ମିକ କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ଦେବା ନିମନ୍ତେ ଓ ଭବିଷ୍ୟତର ନାଗରୀକମାନଙ୍କୁ ଉପଯୁକ୍ତ ମଣିଷ କରି ଗଢ଼ି ତୋଳିବା ନିମନ୍ତେ ନାରୀର ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ ଏ କଥା ସମ୍ଭବତଃ ବୈଦିକ ଋଷିଗଣ ଉପଲବ୍ଧି କରିଥିଲେ । ତେଣୁ ସେମାନେ ନାରୀଶିକ୍ଷା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ତତ୍‌କାଳୀନ ଶିକ୍ଷା ପଦ୍ଧତି ପୁଅ ଓ ଝିଅ ଉଭୟଙ୍କ ପାଇଁ ସମାନ ଭାବରେ ପ୍ରଯୁଜ୍ୟ ଥିଲା, ଯଦିଓ ଝିଅମାନଙ୍କର ସୁବିଧା ନିମନ୍ତେ କେତେକ କ୍ଷେତ୍ରରେ ପରିବର୍ତ୍ତନ କରାଯାଉଥିଲା । ଶିକ୍ଷା ଥିଲା ସର୍ବସାଧାରଣଙ୍କ ପାଇଁ 'କରମୁକ୍ତ' ଓ 'ବାଧ୍ୟତାମୂଳକ' । ମାନବ ଜୀବନକୁ ଚାରିଭାଗରେ ବିଭକ୍ତ କରି ଶିକ୍ଷା ଗ୍ରହଣର ସମୟଟିକୁ 'ବ୍ରହ୍ମଚର୍ଯ୍ୟାଶ୍ରମ' ନାମରେ ନାମିତ କରାଯାଉଥିଲା । ଏହି ବ୍ରହ୍ମଚର୍ଯ୍ୟାଶ୍ରମଟି ଥିଲା ସବୁଠାରୁ ଶୃଙ୍ଖଳିତ, କଷ୍ଟକର ଓ କଠିନ ସାଧନାର ସମୟ । ଏହି ବ୍ରହ୍ମଚର୍ଯ୍ୟାଶ୍ରମରେ ଝିଅମାନଙ୍କୁ ମଧ୍ୟ ପ୍ରବେଶ କରିବାକୁ

ପଢୁଥିଲା । ଏହାର ପ୍ରମାଣ–"ବ୍ରହ୍ମଚର୍ଯ୍ୟେଣ ହି କନ୍ୟା ଯୁବାନାଂ ଉନ୍ଦତେ ପତିମ୍" । ଶିକ୍ଷାର ଲକ୍ଷ୍ୟ ଥିଲା 'ସ୍ୱଗିତିକ ମହତ୍ତ୍ୱ' ଓ ଶିକ୍ଷାଦାନ ଏକ ଗଠନ ମୂଳକ ପବିତ୍ର କର୍ମ ରୂପେ ପରିଗଣିତ ହେଉଥିଲା । ଶିକ୍ଷକଗଣ ସମାଜରେ ସର୍ବୋଚ୍ଚ ସମ୍ମାନର ଅଧିକାରୀ ଥିଲେ । ଗୁରୁମାନଙ୍କ ନିମନ୍ତେ ଅଧ୍ୟୟନ ଅଧ୍ୟାପନ ଓ ଆଧ୍ୟାତ୍ମିକ ସାଧନା ହିଁ ମୂଳକର୍ମ ଥିଲା । ଶିକ୍ଷାଦାନର ସ୍ଥାନ ବା ଗୁରୁକୁଳାଶ୍ରମଗୁଡ଼ିକ 'ମାନବ ନିର୍ମାଣ କାରଖାନା' ଥିଲା । ଉପନୟନାଦି ସଂସ୍କାର, ବେଦାଧ୍ୟୟନ ଓ ବ୍ରହ୍ମଚର୍ଯ୍ୟ ଉଭୟ ସ୍ତ୍ରୀ ଓ ପୁରୁଷ ନିମନ୍ତେ ଉଦ୍ଦିଷ୍ଟ ଥିଲା । ସାଧାରଣତଃ ଆଠ ବର୍ଷ ବୟସରେ ଉପନୟନାଦି ସଂସ୍କାର କରାଯାଉଥିଲା । "ବୀରମିତ୍ରୋଦୟ ସଂସ୍କାର ପ୍ରକାଶ"ରେ ଲେଖାଯାଇଛି, "ପୁରାତନ କାଳରେ କୁମାରୀମାନଙ୍କ ନିମନ୍ତେ ମୌଞ୍ଜୀମେଖଳା ପରିଧାନ, ବେଦାଧ୍ୟୟନ ଓ ଉପନୟନ ତଥା ସାବିତ୍ରୀପ୍ରଦାନ ବାଧ୍ୟତାମୂଳକ ଥିଲା । ଛାତ୍ର ଛାତ୍ରୀମାନେ ଉପନୟନ ପରେ ହିଁ ବେଦାଧ୍ୟୟନ ଓ ବୈଦିକ ମନ୍ତ୍ର ଉଚ୍ଚାରଣ କରିବାର କ୍ଷମତା ଅର୍ଜନ କରୁଥିଲେ । ସେତେବେଳେ ଆବାସିକ ବିଦ୍ୟାଳୟ'ର ବ୍ୟବସ୍ଥା ଥିଲା ଓ ଛାତ୍ରଛାତ୍ରୀମାନେ ଗୁରୁଗୃହରେ ରହି ଅଧ୍ୟୟନ କରୁଥିଲେ । ୧୨ ବର୍ଷ ପର୍ଯ୍ୟନ୍ତ ଅଧ୍ୟୟନ ଚାଲୁଥିଲା । ଝିଅମାନଙ୍କ ପ୍ରତି ଏହି ନିୟମ ପ୍ରୟୋଗ କରାଯାଉଥିଲେ ମଧ୍ୟ ସ୍ଥାନେ ସ୍ଥାନେ ଗୃହ ଶିକ୍ଷକ ନିଯୁକ୍ତି ଦିଆଯାଇ ଶିକ୍ଷାଦାନର ବ୍ୟବସ୍ଥା କରାଯାଉଥିଲା । ବ୍ରହ୍ମଚର୍ଯ୍ୟାଶ୍ରମ ଏକ ସାଧନାର ସମୟ ହେତୁ ଏକ ସରଳ ସୁନ୍ଦର ନିରାଡ଼ମ୍ବର ପରିବେଶ ମଧ୍ୟରେ ଆଶ୍ରମବାସୀ ଜୀବନ ବିତାଉଥିଲେ । ଶିକ୍ଷାରେ ଶାରୀରିକ ପରିଶ୍ରମର ମୂଲ୍ୟ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଥିବା ହେତୁ ଛାତ୍ର ଛାତ୍ରୀମାନେ ଆଶ୍ରମର ଦୈନନ୍ଦିନ କାର୍ଯ୍ୟ ସ୍ୱହସ୍ତରେ ସମ୍ପାଦନ କରି ସ୍ୱାଧ୍ୟାୟ ଓ ଧ୍ୟାନାଦି ଅଭ୍ୟାସରେ ସମୟ ଅତିବାହିତ କରୁଥିଲେ । ମସ୍ତକରେ ଜଟା, କଟିରେ ମୌଞ୍ଜୀ ମେଖଳା ପରିଧାନ ଥିଲା, ମୃଗଚର୍ମ ବଲ୍କଳ । ହସ୍ତରେ ଦଣ୍ଡ ଧାରଣ ପୂର୍ବକ ଭିକ୍ଷାବୃତ୍ତି କରି ଜୀବିକା ନିର୍ବାହ କରୁଥିଲେ । ସ୍ତ୍ରୀମାନେ ଯଜ୍ଞୋପବୀତ ଧାରଣ କରୁଥିବାର ପ୍ରମାଣ ଅନେକତ୍ର ଦେଖାଯାଏ । ନ୍ୟାୟ ପ୍ରଣେତା ଗୋଭିଲ ବିବାହ ନିୟମ ପ୍ରଣୟନ କରିବାକୁ ଯାଇ ଲେଖିଛନ୍ତି– "ଯଜ୍ଞୋପବୀତ ଧାରଣ କରିଥିବା କନ୍ୟାକୁ ବର ଅନୁସରଣ କରିବ" । ଶିକ୍ଷାର ବିଭିନ୍ନ ବିଭାଗ ଥିଲା ଓ ପ୍ରତି ବିଭାଗରେ ସ୍ୱତନ୍ତ୍ର ଅଧ୍ୟକ୍ଷଗଣ ଅଧ୍ୟାପନା ଦାୟିତ୍ୱରେ ଥିଲେ । ମାତ୍ର ବେଦ ବେଦାଙ୍ଗ ଉପନିଷଦ ଓ ଧର୍ମଶାସ୍ତ୍ରଗୁଡ଼ିକ ସମସ୍ତଙ୍କ ପାଇଁ ବାଧ୍ୟତା ମୂଳକ ଥିଲା । ଶିଷ୍ୟ ନିଜ ଇଚ୍ଛାନୁସାରେ ଗୁରୁଚୟନ କରୁଥିବା ସ୍ଥଳେ ଗୁରୁ ମଧ୍ୟ ପରୀକ୍ଷା କରି ଉପଯୁକ୍ତ ବ୍ୟକ୍ତିକୁ ହିଁ ଶିଷ୍ୟ ରୂପେ ଗ୍ରହଣ କରୁଥିଲେ । ସ୍ତ୍ରୀ ଶିକ୍ଷା ସମ୍ପର୍କରେ ନ୍ୟାୟ ପ୍ରଣେତା 'ହାରିତ' କହିଛନ୍ତି 'ବୈଦିକ ଯୁଗରେ ଦୁଇ ପ୍ରକାର ଶିକ୍ଷିତା ନାରୀ ହେଉଥିଲେ । 'ବ୍ରହ୍ମବାଦିନୀ' ଓ 'ସଦ୍ୟୋଦ୍‌ବାହ' । ଯେଉଁମାନେ ବିବାହ ପର୍ଯ୍ୟନ୍ତ ଶିକ୍ଷା ଗ୍ରହଣ କରୁଥିଲେ ସେମାନଙ୍କୁ 'ସଦ୍ୟୋଦ୍‌ବାହ' ଓ ଯେଉଁମାନେ ଅବିବାହିତ ରହି ସାରା ଜୀବନ ଅଧ୍ୟୟନ, ଅଧ୍ୟାପନ ଓ ଆଧ୍ୟାତ୍ମିକ ସାଧନାରେ ମନନିବେଶ କରୁଥିଲେ ସେମାନଙ୍କୁ 'ବ୍ରହ୍ମବାଦିନୀ' କୁହାଯାଉଥିଲା । ବେଦରେ ଅନ୍ୟୁନ ୨୭ ଜଣ ନାରୀଙ୍କ ନାମୋଲ୍ଲେଖ ରହିଛି । ସେଥିମଧ୍ୟରୁ ଉଷା, ଅଦିତି, ଇନ୍ଦ୍ରାଣୀ, ସୂର୍ଯ୍ୟା ଆଦି ପୂର୍ଣ୍ଣ ଦେବତ୍ୱ ଯୁକ୍ତ ହୋଇଥିବା ସ୍ଥଳେ ପୃଥିବୀ, ରାତ୍ରି, ସରସ୍ୱତୀ, ଅରଣ୍ୟାନୀ ଆଦି ଆଂଶିକ ଦେବତ୍ୱ ଯୁକ୍ତ । ବୈଦିକ ଋଷିଗଣ ଏହି ମାତୃଶକ୍ତିମାନଙ୍କର ଆରାଧନା ଓ ବନ୍ଦନାରେ ଅନେକ ସୂକ୍ତ ରଚନା କରିଯାଇଛନ୍ତି । ଋଗ୍ ବେଦରେ ଏହି ମାତୃଶକ୍ତିଗଣ ମାନବର ପ୍ରାଣଦାୟିନୀ ମାତା ରୂପେ ଆରାଧିତା । ବିଶ୍ୱାମିତ୍ର ଋଷିଙ୍କର ସରସ୍ୱତୀ ନଦୀ ପ୍ରତି ପ୍ରାର୍ଥନା–"ହେ ମାତା ସରସ୍ୱତୀ ତୁମେ ଦେବୀ, ତୁମେ ମାତା ଓ ତୁମେ ନଦୀ ରୂପେ ଆରାଧ୍ୟା । ତେଣୁ ତୁମକୁ ମୋର ପ୍ରଣାମ" । ଏହା ବ୍ୟତୀତ କେତେକ ସୂକ୍ଷ୍ମ ମାନବୀୟ ଗୁଣାବଳୀ ଯଥା–ଶ୍ରୀ, ମେଧା, ଦକ୍ଷିଣା ଶ୍ରଦ୍ଧା, ସ୍ୱସ୍ତି, ସ୍ୱାହା, ସ୍ୱଧା ଆଦିଙ୍କଠାରେ ମଧ୍ୟ ଦେବତ୍ୱର ଉତ୍ତରଣ ପରିଲକ୍ଷିତ ହୁଏ । ପରବର୍ତ୍ତୀ କାଳରେ 'ଦେବୀ ସ୍ତୁତି'ରେ ଏହା ସ୍ଥାନ ପାଇଛି । ଏମାନଙ୍କୁ ଛାଡ଼ି ବେଦରେ ପ୍ରାୟ ନଅ, ଦଶ ଜଣ ସ୍ତ୍ରୀ ଋଷିଙ୍କର ନାମ ଦେଖିବାକୁ ମିଳେ ଯେଉଁମାନେ ମନ୍ତ୍ରମାନବୀ ଓ ଋଗ୍ ବେଦରେ ଅନେକ ସୂକ୍ତ ରଚନା କରିଛନ୍ତି । ସେମାନଙ୍କ ମଧ୍ୟରେ ବିଶ୍ୱବାରା, ଅପାଲା ଘୋଷା ମୁଖ୍ୟ ଓ ଲୋପାମୁଦ୍ରା, ଗୋଧା, ଶାଶ୍ୱତୀ, ରୋମଶା, ସିକତା, ବିଭାବରୀ ଆଦି ଗୌଣ । ଋଗ୍ ବେଦର ଦଶମ ମଣ୍ଡଳରେ ୧୨୫ଟି ସୂକ୍ତ 'ଦେବୀସୂକ୍ତ' ନାମରେ ନାମିତ ଓ ବାକ୍ ସରସ୍ୱତୀଙ୍କ ଦ୍ୱାରା ରଚିତ । ଏହି ନାରୀ ଋଷିମାନଙ୍କ ଦ୍ୱାରା ରଚିତ ସୂକ୍ତଗୁଡ଼ିକ ନାରୀ ହୃଦୟର ସ୍ୱତଃସ୍ଫୂର୍ତ୍ତ ଭାବାବେଗ ଉଦ୍‌ବେଳନ । ଏହି ସୁଲଳିତ, ସୁମଧୁର, ଲଳିତକାନ୍ତ କୋମଳ ଓ ଉଚ୍ଚ ଦାର୍ଶନିକ, ଚିନ୍ତାଧାରା ସମନ୍ୱିତ ସୂକ୍ତାବଳୀ ପ୍ରମାଣିତ କରେ ଯେ ପୃଥିବୀର ସର୍ବ ପ୍ରାଚୀନ ମାନବଜାତି ନାରୀ ସମାଜକୁ ଏକ ମର୍ଯ୍ୟାଦାପୂର୍ଣ୍ଣ ଆସନ ପ୍ରଦାନ କରି ସେମାନଙ୍କର ବ୍ୟକ୍ତିଗତ ଉତ୍କର୍ଷତା ପ୍ରତିପାଦନ ନିମନ୍ତେ ସମସ୍ତ ପ୍ରକାର ସୁବିଧା ଓ ସୁଯୋଗ ଦେଇଥିଲା । ନାରୀ ଶିକ୍ଷାର ଚରମ ଉତ୍କର୍ଷତା ପ୍ରତିପ୍ରଦାନକାରୀ ଏହି ବୈଦିକ ସୂକ୍ତଗୁଡ଼ିକ ବାସ୍ତବିକ୍ ବିଶ୍ୱ ସାହିତ୍ୟର ଅମୂଲ୍ୟ ନିଧି ସଦୃଶ । ଉପଯୁକ୍ତ ଶିକ୍ଷା ଓ ସୁଯୋଗ ପାଇଲେ ନାରୀ ସବୁ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିପାରେ । ସଂସ୍କୃତିର ପାରମ୍ପରିକ ମୂଲ୍ୟବୋଧ ରକ୍ଷା କରିବା ସହିତ ଆଧ୍ୟାତ୍ମିକ ଜଗତରେ ପୁରୁଷର ସହାୟକ ହୋଇ ନୂତନ ଦିଗ୍‌ଦର୍ଶନ ଦେଇପାରେ । ଏହାର ପ୍ରମାଣ ଦେଇଛନ୍ତି ସେହିଭଳି କେତେଜଣ ବିଦୁଷୀ ରମଣୀ । ଯେଉଁ ଉଚ୍ଚ ଆଧ୍ୟାତ୍ମିକ ଓ ଦାର୍ଶନିକ ଚିନ୍ତାଧାରାପାଇଁ ଭାରତ ବିଶ୍ୱ ଇତିହାସରେ ଅମର ତାହା ଉପନିଷଦୀୟ ଦର୍ଶନ ଓ ସୃଷ୍ଟିତତ୍ତ୍ୱ, ବ୍ରହ୍ମଚିନ୍ତନ ଓ ଆତ୍ମସ୍ୱରୂପ ଉପରେ ଅଧିଷ୍ଠିତ । ଏହା ବେଦର ଜ୍ଞାନକାଣ୍ଡ । ଏ କ୍ଷେତ୍ରରେ ମଧ୍ୟ ତତ୍କାଳୀନ ନାରୀର ପ୍ରଭାବ ସମଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରତ୍ୟହ ଋଷି ତର୍ପଣରେ ଯେଉଁ କେତେଜଣ ସ୍ତ୍ରୀ ଋଷିମାନଙ୍କୁ ଜଳଦାନ କରାଯାଏ ସେମାନଙ୍କ ମଧ୍ୟରେ ଗାର୍ଗୀ, ପ୍ରତିଥେୟୀ, ସୁଲଭା, ମୈତ୍ରେୟୀ ଆଦି ପ୍ରଧାନ । ଏମାନେ ଖାଲି ଋଷି ନୁହଁନ୍ତି, ଦାର୍ଶନିକ ଓ ବ୍ରହ୍ମଜ୍ଞାନୀ ମଧ୍ୟ । ସେମାନଙ୍କର ଅକାଟ୍ୟ ଯୁକ୍ତି ନିକଟରେ ପ୍ରସିଦ୍ଧ ଋଷିମାନେ ମଧ୍ୟ ପରାଜୟ ବରଣ କରିଛନ୍ତି । ବୈଦିକ ଯୁଗର ଜଣେ ଶ୍ରେଷ୍ଠ ଋଷି 'ଯାଜ୍ଞବଲ୍କ୍ୟ'ଙ୍କର ଅନ୍ୟତମ ନାରୀ 'ମୈତ୍ରେୟୀ' ସ୍ୱାମୀଙ୍କ ଦ୍ୱାରା ପ୍ରଦତ୍ତ ସାଂସାରିକ ଭୋଗ ବାସନାକୁ ତୁଚ୍ଛ ଜ୍ଞାନକରି ବ୍ରହ୍ମଜ୍ଞାନର ମାର୍ଗ ସ୍ୱୀକାର କରିଥିଲେ । ବିଦୁଷୀ ଗାର୍ଗୀଙ୍କର ନାମ 'ବୃହଦାରଣ୍ୟକ ଉପନିଷଦ'ରେ ଦେଖିବାକୁ ମିଳେ । ରାଜର୍ଷି ଜନକଙ୍କ ରାଜସଭାରେ ଯେଉଁ କେତେଜଣ ଋଷି ମହର୍ଷି ଯାଜ୍ଞବଲ୍କ୍ୟଙ୍କୁ

ବ୍ରହ୍ମଜ୍ଞାନ ସମ୍ବନ୍ଧୀୟ ପ୍ରଶ୍ନ କରିବାରେ ସମର୍ଥ ହୋଇଥିଲେ, ସେମାନଙ୍କ ମଧ୍ୟରେ ଏକମାତ୍ର 'ଗାର୍ଗୀ' ଜଣେ ନାରୀ ହେଲେ ମଧ୍ୟ ଦୁଇଥର ପ୍ରଶ୍ନ କରିବାର ସୌଭାଗ୍ୟ ଲାଭ କରିଥିଲେ। ଋଷି ବାଚ୍‌କ୍ନୁଙ୍କ କନ୍ୟା ଗାର୍ଗୀ ଯଥାର୍ଥରେ ଜଣେ ବ୍ରହ୍ମବାଦିନୀ ଥିଲେ। 'ସୁଲଭା' ନାମରେ ଅନ୍ୟଜଣେ ଦାର୍ଶନିକ ମହିଳା ଯୋଗଶାସ୍ତ୍ରରେ ଏତେ ଦୂର ପାରଙ୍ଗମ ଥିଲେ ଯେ ରାଜା ଜନକ ତାଙ୍କର ଅଗାଧ ଜ୍ଞାନ ଦ୍ୱାରା ପରାସ୍ତ ହୋଇଥିଲେ।

ଋଗ୍ ବେଦରେ 'ବଧ୍ରୁମତୀ' ଓ ବିଷ୍ପଲା ନାମକ ଦୁଇଟି ନାରୀ ଚରିତ୍ରର ପରିଚୟ ମିଳେ, ଯେଉଁମାନେକି ସିଧା ସୈନ୍ୟ ବାହିନୀରେ ଯୋଗ ଦେଇ ପ୍ରତ୍ୟକ୍ଷ ସମରରେ ଅଂଶ ଗ୍ରହଣ କରିଥିଲେ। ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ପ୍ରାଚୀନ ଭାରତରେ ଯୁଦ୍ଧବିଦ୍ୟା ମଧ୍ୟ ନାରୀଶିକ୍ଷାର ଏକ ଅଂଶ ଥିଲା ଓ ସୈନ୍ୟ ବାହିନୀରେ ନାରୀମାନଙ୍କୁ ଗ୍ରହଣ କରାଯାଉଥିଲା। ଧାର୍ମିକ ଶିକ୍ଷା ସହିତ ନୃତ୍ୟ, ସଙ୍ଗୀତ, ବାଦ୍ୟଯନ୍ତ୍ର, ସୂକ୍ଷ୍ମ ଗୃହକଳା ଆଦି ନାରୀ ଶିକ୍ଷାର ବିଷୟବସ୍ତୁ ଥିଲା। ବୈଦିକ ଯଜ୍ଞରେ ସ୍ତ୍ରୀମାନଙ୍କର ସଙ୍ଗୀତ ଗାୟନ ସାମବେଦୀୟ ଶିକ୍ଷା ମାଧ୍ୟମରେ ଦିଆଯାଉଥିଲା। ସ୍ତ୍ରୀମାନଙ୍କର ସଙ୍ଗୀତ ଓ ବାଦ୍ୟଯନ୍ତ୍ରରେ ଅଂଶ ଗ୍ରହଣ କରିବାର ପ୍ରମାଣ ପରବର୍ତ୍ତୀ କାଳରେ ସ୍ମୃତି ଶାସ୍ତ୍ରମାନଙ୍କରେ ମିଳେ। ଋଗ୍ ବେଦରେ ନାରୀମାନଙ୍କର ନୃତ୍ୟପ୍ରତି ଆଗ୍ରହ ଥିବାର ପ୍ରମାଣ ମିଳେ। କେତେକ କଷ୍ଟକର ବାଦ୍ୟଯନ୍ତ୍ର, ଯଥା–ତାଲୁକବୀଣା, ଅପଘଟାଳିକା, କାଣ୍ଡବୀଣା ଇତ୍ୟାଦିର ବ୍ୟବହାର ନାରୀମାନେ କରୁଥିବାର ମହାଭାରତରେ ପ୍ରମାଣ ମିଳେ। ଖାଲି ଏତିକି ନୁହେଁ ଜାଣିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ଯେ ବୈଦିକ ଯୁଗରେ କେତେକ ନାରୀ ଶିଳ୍ପଶାସ୍ତ୍ରରେ ପାରଙ୍ଗମ ଥିଲେ। ସେମାନେ ଧନୁଶର ତିଆରି, ଲୁଗାବୁଣା ଆଦି କର୍ମ ସହିତ କୃଷିକର୍ମନିପୁଣା ଥିଲେ। ବେଦରେ 'ଇଷୁକର୍ତ୍ତ୍ୟଃ' ଶବ୍ଦର ବ୍ୟବହାର ଏହାର ଶ୍ରେଷ୍ଠ ପ୍ରମାଣ।

ଏତଦ୍ ବ୍ୟତୀତ, ଅନେକ ନାରୀ 'ସୁବକ୍ତା' ଭାବରେ ସାଂସ୍କୃତିକ ସମାରୋହମାନଙ୍କରେ ଭାଷଣ ଦେବାର ଲକ୍ଷ୍ୟ କରାଯାଇଛି। ଋଗ୍ ବେଦରେ ବୁଦ୍ଧିଜୀବୀମାନଙ୍କର ସଭାକୁ 'ବିଧାତା' କୁହାଯାଉଥିଲା ଏବଂ ଏହି ସଭାରେ ଜଣେ ସଦ୍ୟ ବିବାହିତା ନାରୀ ମଧ୍ୟ ଉଚ୍ଚ ସ୍ୱରରେ ନିଜର ବକ୍ତବ୍ୟ ପ୍ରଦାନ କରିପାରୁଥିଲା। ଏଥିରୁ ସହଜରେ ଅନୁମାନ କରାଯାଇପାରେ ଯେ ବୈଦିକ ଯୁଗର ନାରୀ ନାମ ଅବଳା ଥିଲା କିମ୍ବା ତାଙ୍କୁ ପର୍ଦ୍ଦା ଆଢୁଆଳରେ ରହିବା ପାଇଁ ବାଧ କରାଯାଉଥିଲା। ବରଂ ତତ୍କାଳୀନ ନାରୀ ପାରିବାରିକ, ସାମାଜିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଆଦି ସମସ୍ତ କ୍ଷେତ୍ରରେ ପୁରୁଷଙ୍କ ସହିତ ସମାନ ତାଳ ଦେଇ ଗତି କରୁଥିଲା। ସମାଜରେ 'କନ୍ୟାଜନ୍ମ' ଏକ ଅଭିଶାପ ନହୋଇ ବରଂ ଆଶୀର୍ବାଦ ରୂପେ ପରିଗଣିତ ହେଉଥିଲା। ଋଗ୍ ବେଦରେ ବିବାହ ସମୟରେ ନବଦମ୍ପତିଙ୍କୁ ଆଶୀର୍ବାଦ କରିବା ଛଳରେ କୁହାଯାଇଛି–"ପୁତ୍ର ଓ କନ୍ୟାମାନଙ୍କୁ ପାର୍ଶ୍ୱରେ ରଖି ସମସ୍ତ ଅଳଙ୍କାର ବିଭୂଷିତ ହୋଇ ଦୁଇ ବରବଧୂ ପୂର୍ଣ୍ଣାୟୁ ଭୋଗ କରନ୍ତୁ" ।ନାରୀ ଏକାକୀ କିମ୍ବା ପୁରୁଷଙ୍କ ସହିତ ଯଜ୍ଞ କର୍ମରେ ଅଂଶ ଗ୍ରହଣ କରିପାରୁଥିଲା। ପରାଶରଙ୍କ ଗୃହ୍ୟ ସୂତ୍ରରେ ଏହାର ପ୍ରମାଣ ମିଳେ–"ଏଠାରେ ସ୍ତ୍ରୀମାନଙ୍କ ଦ୍ୱାରା ମନ୍ତ୍ରପାଠ "ପୁରୁଷ ସ୍ତ୍ରୀ ସମସ୍ତଙ୍କର ମନ୍ତ୍ରପାଠ"। ନାରୀ ଶିକ୍ଷା ଓ ସ୍ୱାଧୀନତାର ବହୁଳ ବିକାଶ ସହିତ ବିବାହ କ୍ଷେତ୍ରରେ ମଧ୍ୟ ନାରୀ ସ୍ୱାଧୀନତା ଅକ୍ଷୁଣ୍ଣ ରହିଥିଲା। ବୈଦିକ ଯୁଗରେ ଆଠ ପ୍ରକାର ବିବାହବିଧି ପ୍ରଚଳିତ ଥିଲା। ଶିକ୍ଷିତାନାରୀ, ଆବଶ୍ୟକ ସ୍ଥଳେ, ସ୍ୱଇଚ୍ଛାରେ ପତିବରଣ କରୁଥିଲେ। 'ପ୍ରଜାପତ୍ୟ, ବ୍ରହ୍ମ, ଦୈବ, ଆର୍ଶ, ଗାନ୍ଧର୍ବ, ରାକ୍ଷସ, ଅସୁର ଓ ପୈଶାଚ' ଏହିଭଳି ଆଠ ପ୍ରକାର ବିବାହ ମଧ୍ୟରୁ 'ପ୍ରଜାପତ୍ୟ' ଓ 'ଗାନ୍ଧର୍ବ' ବିବାହ ସବୁଠାରୁ ବେଶୀ ପ୍ରଚଳିତ ଥିଲା। ପାରିବାରିକ ଜୀବନରେ ଶିକ୍ଷିତା ନାରୀର ଭୂମିକା ସମ୍ପର୍କରେ ବୈଦିକ ସମାଜ ଏକ ମହତ୍ ଓ ଉଦାର ମନୋଭାବର ପରିଚୟ ପ୍ରଦାନ କରେ। କାରଣ ନାରୀ ପରିବାରର ସାମ୍ରାଜ୍ଞିନୀ ଓ ସର୍ବମୟ କର୍ତ୍ତ୍ରୀ ରୂପେ ସମ୍ମାନିତା ଥିଲା। ଉଚ୍ଚ ଶିକ୍ଷିତା ହେଲେ ମଧ୍ୟ ଗୃହର ପ୍ରତିଟି କର୍ମ ଶୃଙ୍ଖଳାର ସହିତ ସମାପନ କରି ମାତୃ ରୂପରେ ସମସ୍ତଙ୍କର ସେବାକାରିଣୀ ଥିଲା। ଖାଲି ସେତିକି ନୁହେଁ ପତିର ସହଧର୍ମିଣୀ, ସହକର୍ମିଣୀ ରୂପେ ଓ ଶିଶୁମାନଙ୍କର ପ୍ରଥମ ଶିକ୍ଷାଦାତ୍ରୀ ରୂପେ ପବିତ୍ର କର୍ମକୁ ଜୀବନରେ କାର୍ଯ୍ୟକାରୀ କରୁଥିଲେ। ସେଥିପାଇଁ ବୈଦିକ ସମାଜ ନାରୀକୁ ମାନବ ସମାଜର ମଙ୍ଗଳକାରିଣୀ ରୂପେ ପୂଜା କରୁଥିଲା। ନୂତନ ବଧୂର ଗୃହ ପ୍ରବେଶ ଶୁଭାବସରରେ ବୈଦିକ ଋଷିମାନଙ୍କର ପ୍ରାର୍ଥନା ଥିଲା–"ହେ ଗୃହପତ୍ନୀ ! ଗୃହ ମଧ୍ୟରେ ପ୍ରବେଶ କର, ଗୃହ ସାମ୍ରାଜ୍ଞୀଭାବେ ଉଦ୍‌ବୋଧନ ଦିଅ–ଋକ୍ ବେଦରେ ଲିଖିତ ଅଛି–"ଗୃହାନ୍ ଗଛ ! ଗୃହପତ୍ନୀ ଯଥାସୋ। ବ୍ଶିନୀ ବଦଥମ୍ ଆବଦାସି। ଋ–୧୦/୮୪/୨୬।

ଏତଦ୍ ବ୍ୟତୀତ ନାରୀର ଶିକ୍ଷା ସମାଜ କଲ୍ୟାଣରେ ନିହିତ ଥିଲା। 'ଯୌତୁକ' ପରି ଘୃଣ୍ୟ ପ୍ରଥାର ଲେଶମାତ୍ର ଚିହ୍ନ ନଥିବା ସ୍ଥଳେ କନ୍ୟା ଦାନକୁ ସହସ୍ର ଅଶ୍ୱମେଧର ପୁଣ୍ୟ ବୋଲି ମନେ କରାଯାଉଥିଲା। ବରଂ 'କନ୍ୟାସୁନା'ର ବ୍ୟବସ୍ଥା ଥିଲା। ନୂତନ ବଧୂକୁ ଗୃହର ମଙ୍ଗଳକାରିଣୀ ରୂପେ ସ୍ୱୀକାର କରାଯାଉଥିଲା। "ଏହି ବଧୂ ମଙ୍ଗଳ କାରିଣୀ, ସମସ୍ତେ ଏହାକୁ ଲକ୍ଷ୍ୟ କର"। ବଧୂକୁ ଗୃହର ସାମ୍ରାଜ୍ଞୀ ଭାବରେ ଆଶିର୍ବାଦ କରାଯାଉଥିଲା। "ଶ୍ୱଶୁରଙ୍କଠାରେ ସାମ୍ରାଜ୍ଞୀ ହୁଅ, ଶାଶୁଙ୍କଠାରେ ସାମ୍ରାଜ୍ଞୀ ହୁଅ, ନଣନ୍ଦ ଓ ଦିଅରମାନଙ୍କଠାରେ ସାମ୍ରାଜ୍ଞୀ ହୁଅ, ଋଗ୍‌ବେଦର ଏହି ସୂକ୍ତଗୁଡିକୁ ଅନୁଧ୍ୟାନ କଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡେ ଯେ ଏତେ ଆଦିମ ଯୁଗରୁ ଏତେ ସଭ୍ୟ, ସୁଶିକ୍ଷିତ ଓ ଉନ୍ନତ ମାନବୀୟ ଚିନ୍ତାଧାରା କିପରି ଗଛିତ ହୋଇ ରହିଥିଲା!। ବାଲ୍ୟ ବିବାହ ପରି କରୁଣ ଓ କଳଙ୍କିତ ପ୍ରଥା ସେତେବେଳେ ପ୍ରଚଳିତ ନ ଥିଲା। ଉପଯୁକ୍ତ ଶିକ୍ଷା ଗ୍ରହଣ ପରେ ହିଁ ଝିଅମାନେ ଗୃହସ୍ଥାଶ୍ରମରେ ପ୍ରବେଶ କରୁଥିଲେ। ସବୁଠାରୁ କୌତୂହଳ ଓ ବିସ୍ମୟକର କଥା–'ବିଧବା ବିବାହ' ଯାହାକୁ ଆଧୁନିକ ଭାରତବର୍ଷ ଲିଖିତ ସ୍ୱୀକୃତ ଦେଇଥିଲେ ମଧ୍ୟ ସମାଜ ସ୍ୱୀକୃତି ଦେଇନାହିଁ। ସେହିପରି ଏକ ମାନବୀୟ ପ୍ରଥାକୁ ମଧ୍ୟ ବୈଦିକ ସମାଜ ସ୍ୱୀକାର କରିବାକୁ ପଛେଇ ନଥିଲା। ଅର୍ଥବ ବେଦରେ ଉଲ୍ଲେଖ କରାଯାଇଛି–"ଯିଏ ପୂର୍ବପତି ହରେଇ ଅନ୍ୟପତି ବରଣ କରିବାକୁ ଇଚ୍ଛୁକ ସେ ପାଞ୍ଚ ଥାଳି ଅନ୍ନ ସହିତ ଛାଗ ଦାନ କଲେ ତା'ର ପତି ବିଯୋଗ ଘଟେ ନାହିଁ"

ଉପରୋକ୍ତ ସାମାନ୍ୟ କେତୋଟି ଉଦାହରଣ ବୈଦିକ ନାରୀ ସମାଜର ଗୌରବମୟ ଅଧ୍ୟାୟକୁ ଉଜ୍ଜୀବିତ କରେ। ସମ୍ଭବତଃ

ବୈଦିକ ସମାଜ, ମାତୃଜାତିକୁ ସମାଜର ମାନଦଣ୍ଡ ରୂପେ ସ୍ୱୀକାର କରିଥିଲା । 'ମାତୃଦେବୋ ଭବ' । ମାତାକୁ ଦେବତାଜ୍ଞାନ କର । କଥିତ ଅଛି–"ଜଣେ ଆଚାର୍ଯ୍ୟ ଶହେ ଉପାଧ୍ୟାୟଙ୍କ ସମକକ୍ଷ ହୋଇଥିବା ସ୍ଥଳେ ଜଣେ ପିତା ସହସ୍ର ଆଚାର୍ଯ୍ୟଙ୍କ ସହ ସମାନ । ଜଣେ ମା ସହସ୍ରାଧିକ ପିତାଙ୍କଠାରୁ ମଧ୍ୟ ଊର୍ଦ୍ଧ୍ୱରେ" ।

ଯେତେ ଶିକ୍ଷିତା ହେଲେ ମଧ୍ୟ ଏ କଥା ସତ୍ୟ ଯେ ନାରୀ ତା'ର ସର୍ବଶ୍ରେଷ୍ଠ ରୂପ ମାତୃ ରୂପରେ ହିଁ ଆରାଧ୍ୟା । ତାହାହିଁ ତା'ର ଦିବ୍ୟ ସୌନ୍ଦର୍ଯ୍ୟ ଯାହା ବିଶ୍ୱର ସମସ୍ତ ସୌନ୍ଦର୍ଯ୍ୟକୁ ଏକତ୍ରିତ କଲେ ମଧ୍ୟ ତୁଳନୀୟ ନୁହେଁ । ମା'ର ଶିଶୁ ପ୍ରତି ଚୁମ୍ବନକୁ ବେଦରେ ଦିବ୍ୟ ପ୍ରେମର ଝଲକରୂପେ ବର୍ଣ୍ଣିତ ହୋଇଛି । ନାରୀର ମଧୁର ହସକୁ ଆଶୀର୍ବାଦ ରୂପେ ଓ ସତୀତ୍ୱକୁ ଦୈବୀ ସତ୍ତା ରୂପେ କଳ୍ପନା କରାଯାଇଛି । ପତ୍ନୀକୁ ଗୃହଦେବୀ ରୂପେ ଓ ସମାଜର ମେରୁଦଣ୍ଡ ରୂପେ ସ୍ୱୀକାର କରାଯାଇ ତା'ର ମହନୀୟତା ପ୍ରତିପାଦନ କରାଯାଇଛି । 'ସୁଭଗେ' ! 'କଲ୍ୟାଣୀ' ! ଇତ୍ୟାଦି ଶବ୍ଦ ସାହାଯ୍ୟରେ ସମ୍ବୋଧନ କରାଯାଇ ତା'ର ଗୁଣିତିକ ବୈଶିଷ୍ଟ୍ୟ ପ୍ରତି ଗୁରୁତ୍ୱ ଦିଆଯାଇଛି । ମୋଟ ଉପରେ ବୈଦିକ ନାରୀଶିକ୍ଷା ପ୍ରକୃତ ଅର୍ଥରେ ସ୍ତ୍ରୀ ଜାତିର ସର୍ବାଙ୍ଗୀନ ଉନ୍ନତି କଳ୍ପେ, ନାରୀର ଶାରୀରିକ, ମାନସିକ ସ୍ଥିତିକୁ ଦୃଷ୍ଟି ଏବଂ ବୈଜ୍ଞାନିକ ପଦ୍ଧତିରେ କାର୍ଯ୍ୟ କାରୀ କରାଯାଉଥିଲା ।ଶିକ୍ଷାର ଏହି ପ୍ରଗତିର ସ୍ରୋତ ପରବର୍ତ୍ତୀ କାଳରେ ରାମାୟଣ, ମହାଭାରତ ଆଦି ଐତିହାସିକ କାବ୍ୟର ନାରୀ ଚରିତ୍ରମାନଙ୍କଠାରେ ଦେଖିବାକୁ ମିଳେ । ମହାକବି କାଳିଦାସ ପାର୍ବତୀ, ଶକୁନ୍ତଳା, ସୁଦକ୍ଷିଣା, ଇନ୍ଦୁମତୀ ଆଦି ନାରୀ ଚରିତ୍ରଗୁଡ଼ିକ ମଧ୍ୟ ଏହାର ଅନୁସରଣକାରୀ । ସୀତା, ଦ୍ରୌପଦୀ, କୁନ୍ତୀ, ଗାନ୍ଧାରୀ, ସାବିତ୍ରୀ, ପରି ନାରୀ ଚରିତ୍ର ମାନଙ୍କ ସହିତ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ବାଣଭଟ୍ଟଙ୍କର 'ମହାଶ୍ୱେତା' ଚରିତ୍ର ଭବଭୂତିଙ୍କର 'ଉତ୍ତର ରାମ ଚରିତ'ରେ ଥିବା ମୈତ୍ରେୟୀ ଓ ଶଙ୍କରାଚାର୍ଯ୍ୟଙ୍କ ସହିତ ବାକ୍ ଯୁଦ୍ଧରେ ଲିପ୍ତ ଉଭୟ ଭାରତୀ' ମଧ୍ୟ ବୈଦିକ ଯୁଗର ଅନୁସରଣକାରୀ ।

ବୈଦିକ ଋଷିଗଣ ଖାଲି ମାନବ ଶରୀର ନିର୍ମାଣକାରୀ ଦେହମାତା ପ୍ରତି ନୁହେଁ ବରଂ, ଗୋମାତା, ଦେଶମାତା ଭୂମାତା ଓ ବେଦମାତା ପ୍ରତି ମଧ୍ୟ ସମଧିକ କୃତଜ୍ଞତା ଜ୍ଞାପନ କରିଛନ୍ତି । ଯେହେତୁ ଏମାନେ ସମସ୍ତେ ପ୍ରତ୍ୟେକ ମାନବର ପ୍ରାଣଦାୟିନୀ ଶକ୍ତି । ଯଥାର୍ଥରେ କୁହାଯାଇଛି "ଯେଉଁ ଦେଶର ନାରୀମାନେ ଶିକ୍ଷିତା, ସ୍ୱାସ୍ଥ୍ୟବତୀ, ସୁଖୀ ଓ ପବିତ୍ର ହୁଅନ୍ତି, ସେ ଦେଶର ପୁରୁଷମାନେ ମଧ୍ୟ ପରିଶ୍ରମୀ, ସଚ୍ଚୋଟ, କର୍ମଠୁଖର, ପବିତ୍ର ଓ ସୁଖୀ ହୁଅନ୍ତି" । ପରିବାରର ଭିତ୍ତିଭୂମି ପ୍ରକୃତ ନାରୀଜାତି, ଖାଲି ସୁନ୍ଦର ନୁହେଁ, ସମାଜର, ଜାତିର ଦେଶର ତେଣୁ ସ୍ୱୟଂ ମନୁଷ୍ୟତ୍ୱର ସ୍ତମ୍ଭ । ଏହି ଦୃଷ୍ଟିରୁ ବିଚାର କଲେ ପ୍ରତ୍ୟେକ ଦେଶ ଓ ସମାଜର କର୍ତ୍ତବ୍ୟ ସେ ଦେଶର ପ୍ରତ୍ୟେକ ଝିଅକୁ ସୁଶିକ୍ଷିତା କରାଇବା । ଖାଲି ବହିଲବ୍ଧ ବିଶ୍ୱବିଦ୍ୟାଳୟ ଶିକ୍ଷା କିମ୍ବା କର୍ମ 'ସଂସ୍ଥାନ ଯୋଗାଣ କରିବା ଶିକ୍ଷା ନୁହେଁ ବରଂ ମୂଲ୍ୟବୋଧ ଭିତ୍ତିକ ଶିକ୍ଷା, ଯାହା ବ୍ୟକ୍ତି, ପରିବାର, ସମାଜ, ରାଷ୍ଟ୍ର ତଥା ବିଶ୍ୱର କଲ୍ୟାଣ ସାଧନ କରିବ । ପ୍ରକୃତ ଶିକ୍ଷା, ଜ୍ଞାନ ବିଜ୍ଞାନ ମଧ୍ୟ ଦେଇ ମୁକ୍ତିର ମାର୍ଗ ଦର୍ଶନ କରାଏ । ଏହି ମାର୍ଗରେ ଗଲେ ବ୍ୟକ୍ତି କୂପମଣ୍ଡୁକତ୍ୱର ସଂକୀର୍ଣ୍ଣତାରୁ ମୁକ୍ତି ପାଏ । ସୀମିତ ଜୀବନକାଳ ମଧ୍ୟରେ ଅସୀମର ପରିକଳ୍ପନା କରିପାରେ । ବୈଦିକ ଯୁଗର ନାରୀଶିକ୍ଷା ସଂକ୍ଷେପରେ କହିବାକୁ ଗଲେ ଜ୍ଞାନ, କର୍ମ ଓ ଭକ୍ତିର ତ୍ରିବେଣୀ ସଂଗମ । ଯେଉଁଠାରେ ଅବଗାହନକରି ପ୍ରାଚୀନ ଭାରତର ନାରୀକୁଳ ଅଜ୍ଞାନତା, କୁସଂସ୍କାର, ଅନ୍ଧବିଶ୍ୱାସ, ସଂକୀର୍ଣ୍ଣତା, ସ୍ୱାର୍ଥପରତା ଆଦି ହୀନଭାବରୁ ମୁକ୍ତିଲାଭ କରି ଏକ ସୁନ୍ଦର ମାନବ ସମାଜ ଗଠନ କରି ପାରିଥିଲେ ।

ଆଜି ବିଂଶ ଶତାବ୍ଦୀର ଶେଷଭାଗ ଉପସ୍ଥିତ ଓ ଭାରତୀୟ ସମାଜ ଜାତିଗତ, ଧର୍ମଗତ ଓ ଭାଷାଗତ ବିଭାଜନରେ ଆତଙ୍କିତ । ସ୍ୱାଧୀନ ଭାରତର ନାରୀ ଆଜି ଅସହାୟ । ପାଶ୍ଚାତ୍ୟ ଶିକ୍ଷାର କ୍ଷଣିକ ଚମକାରୀତାକୁ ଅନ୍ଧ କରି ଦେଇଛି । ଯାହାର କୁପରିଣାମ ଏ ଦେଶର ଭାବୀ ବଂଶଧରଙ୍କ ଉପରେ ପଡୁଛି । ନିଜ ଦେଶର ଗୌରବମୟ ପରମ୍ପରା, ଜୀବନ ଦାୟିନୀ ଶାସ୍ତ୍ର ସମୂହ ସୀତା ସାବିତ୍ରୀର ତ୍ୟାଗ ଓ ଆଦର୍ଶ । ଜୀବନକୁ ସରସ ସୁନ୍ଦର କରି ଗଢ଼ି ତୋଳିବାର କଳା ଓ କୌଶଳ ସବୁଥିରୁ ବଞ୍ଚିତା ଭାରତୀୟ ନାରୀ ଅବଳା ପଦବାଚ୍ୟା ନ ହେବ ତ ଆଉ କିଏ ହବ ? ଏ ସବୁର ଏକମାତ୍ର କାରଣ ଉଦ୍‌ଯୋଗର ଅଭାବ । ପ୍ରାଚୀନ ଭାରତର ଶିକ୍ଷା ପଦ୍ଧତିକୁ ଯଦି ନୂତନ ଭାବରେ ଶିକ୍ଷା ମାଧ୍ୟମରେ ବିଶେଷତଃ ନାରୀଶିକ୍ଷା ମାଧ୍ୟମରେ ପ୍ରତ୍ୟେକ ଝିଅଙ୍କ ପାଖରେ ପହଞ୍ଚେଇ ଦିଆଯାଏ, ତା'ହେଲେ ହୁଏତ ଏ ଦେଶର ସମସ୍ତ ସମସ୍ୟା ଆପେ ଆପେ ଲୋପ ପାଇଯିବ । ସର୍ବଶକ୍ତି ସ୍ୱରୂପିଣୀ ନାରୀ ତା'ର ଇଚ୍ଛାଶକ୍ତି ଓ କ୍ରିୟାଶକ୍ତିକୁ ଯଦି ଜାଗ୍ରତ କରାଏ ତା' ହେଲେ ଅସମ୍ଭବ ମଧ୍ୟ ସମ୍ଭବ ହେବ । ମନୁଙ୍କ ଭାଷାରେ "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା" ଯେଉଁଠାରେ ନାରୀ ପୂଜାପାଏ ସେଠାରେ ଦେବତାମାନେ ଆନନ୍ଦରେ ବିଚରଣ କରନ୍ତି । "ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବାସ୍ତତ୍ର ଫଳାଃ କ୍ରିୟାଃ" । ଯେଉଁଠାରେ ନାରୀ ପୂଜା ପାଏ ନାହିଁ ସେଠାରେ ସମସ୍ତ ଧାର୍ମିକ କାର୍ଯ୍ୟ ନିଷ୍ଫଳ" । ତେଣୁ ସମାଜରେ ନାରୀର ସ୍ଥାନ ଦେଖିଲେ ସେହି ସମାଜର ପ୍ରକୃତ ଅବସ୍ଥା ଜଣାପଡ଼େ । " The position of women in any society is a true index of its cultural and social level" ସ୍ୱାମୀ ବିବେକାନନ୍ଦ ତାଙ୍କର ଚିକାଗୋ ବକ୍ତୃତା ମାଳାରେ ଗୋଟିଏ ବିଶେଷ ସଭାରେ ପ୍ରାଚ୍ୟ ନାରୀମାନଙ୍କର ବର୍ତ୍ତମାନ ଓ ଭବିଷ୍ୟତ ସମ୍ବନ୍ଧରେ ନିମ୍ନଲିଖିତ ଭାବରେ ଆଲୋଚନା କରିଥିଲେ । "କୌଣସି ଜାତିର ଉନ୍ନତିର ଶ୍ରେଷ୍ଠ ମାପକାଠି ହେଉଛି ନାରୀମାନଙ୍କ ପ୍ରତି ତାହାର ମନୋଭାବ । ପ୍ରାଚୀନ ଗ୍ରୀସ୍‌ରେ ସ୍ତ୍ରୀ ଓ ପୁରୁଷଙ୍କ ମର୍ଯ୍ୟାଦାରେ କୌଣସି ପାର୍ଥକ୍ୟ ନଥିଲା, ପ୍ରତ୍ୟେକର ସମାଜରେ ସମାନ ଅଧିକାର ଥିଲା । କୌଣସି ଅବିବାହିତ ହିନ୍ଦୁ ପୁରୋହିତ ହୋଇପାରେ ନାହିଁ, କାରଣ ସେ ଅର୍ଦ୍ଧାଙ୍ଗ ଓ ଅସମ୍ପୂର୍ଣ୍ଣ । ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ହିଁ ପୂର୍ଣ୍ଣ ନାରୀତ୍ୱ । ବୋଧହୁଏ ପୃଥିବୀର ଅନ୍ୟାନ୍ୟ ଦେଶର ନାରୀମାନଙ୍କ ଅପେକ୍ଷା ହିନ୍ଦୁନାରୀମାନେ ଅଧିକ ଧର୍ମଶୀଳା ଓ ଆଧ୍ୟାତ୍ମିକ ଭାବସମ୍ପନ୍ନା । ଯଦି ଆମେ ଚରିତ୍ରର ଏହି ସକଳ ସଦ୍‌ଗୁଣ ରକ୍ଷା କରିବା ଏବଂ ଆମ ନାରୀମାନଙ୍କ ବୁଦ୍ଧିବୃତ୍ତିକୁ ପରିପୁଷ୍ଟ କରିବା, ତେବେ ଭବିଷ୍ୟତରେ ସେମାନେ ପୃଥିବୀର

ଆଦର୍ଶ ସ୍ଥାନୀୟା ହେବେ"। ସ୍ୱାମୀଜୀଙ୍କ ଏତାଦୃଶ ଉକ୍ତିରେ ପ୍ରଭାବିତ ହୋଇ ବିଦେଶିନୀ ମହିଳାମାନେ ମଧ୍ୟ ପ୍ରାଚ୍ୟ ମହିଳାଙ୍କୁ ଅନୁକରଣ କରିଥିଲେ।

ରାଜନୀତିକ ଦାସତ୍ୱ ଅପେକ୍ଷା ମାନସିକ ଦାସତ୍ୱ ଅଧିକ ଭୟଙ୍କର ଓ କ୍ଷତିକାରକ। ଭାରତୀୟ ନାରୀ ପାଶ୍ଚାତ୍ୟ ରାଷ୍ଟ୍ର କବଳରୁ ରାଜନୀତିକ ସ୍ୱାଧୀନତା ପାଇଲେ ମଧ୍ୟ ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିର ମାନସିକ ଦାସତ୍ୱ ବରଣ କରିଛି। ଏହାର ମୁଖ୍ୟ କାରଣ ହେଲା ଆତ୍ମ ସମ୍ମାନ ପ୍ରତି ସନ୍ଦେହ। ଜୀବନକୁ ମୂଲ୍ୟହୀନ ବୋଲି ଭାବିବା। ନିଜ ଦେଶର ସଭ୍ୟତା ପରମ୍ପରା ଓ ସଂସ୍କୃତିକୁ ଗୁରୁତ୍ୱ ନ ଦେବା।ତେବେ ଏକବିଂଶ ଶତାବ୍ଦୀ ବେଳକୁ ଯଦି ନାରୀଶିକ୍ଷା ପଦ୍ଧତିରେ କୌଣସି ପରିବର୍ତ୍ତନ ଅଣା ନଯାଏ ତା'ହେଲେ ଯେଉଁ ନୂତନ ଶାରୀରିକ ଓ ମାନସିକ ବ୍ୟାଧିରେ ଭାରତୀୟ ନାରୀ ଆଜି ଆକ୍ରାନ୍ତ ତାହାର କୁପରିଣାମ ସମଗ୍ର ଦେଶବାସୀଙ୍କୁ ଭୋଗ କରିବାକୁ ପଡ଼ିବ। ତେଣୁ ବେଳ ଥାଉଁ ଥାଉଁ ପ୍ରତିକାର ବାଞ୍ଛନୀୟ। ଏହି ନୂତନ ଶିକ୍ଷାଗତ ବ୍ୟାଧିର ଉପଶମ ନିମନ୍ତେ ପୁରାତନ ଚିକିତ୍ସା ପଦ୍ଧତି ଓ ଔଷଧ ପ୍ରୟୋଗ କଲେ କ୍ଷତି କ'ଣ ???

ମନେ ରଖିବାକୁ ହେବ ଶିକ୍ଷା ଓ ସ୍ୱାଧୀନତା ପରସ୍ପରର ପରିପୂରକ। ଜଣେ ପ୍ରକୃତ ଶିକ୍ଷିତା ନାରୀହିଁ ପ୍ରକୃତ ଅର୍ଥରେ ସ୍ୱାଧୀନତାର ସ୍ୱାଦ ଉପଭୋଗ କରିପାରେ। କାରଣ ସ୍ୱାଧୀନତାର ଅର୍ଥ ସ୍ୱେଚ୍ଛାଚାରିତା ନୁହେଁ। ଶିକ୍ଷିତାନାରୀ ଅଧିକାର ଅପେକ୍ଷା ଅଧିକ କର୍ତ୍ତବ୍ୟ ସଚେତନ ରହିବା ଉଚିତ୍। ସ୍ୱାଧୀନତାର ଅର୍ଥ ନୁହେଁ ନିଜକୁ ଯୁଗୋପଯୋଗୀ କରିବାକୁ ଯାଇ ନିଜର ଆତ୍ମସମ୍ମାନକୁ ଜଳାଞ୍ଜଳି ଦେବା ଅଥବା ନିଜ ଦେଶର ଗୌରବମୟ ସଭ୍ୟତା ସଂସ୍କୃତି ଓ ପରମ୍ପରାକୁ ଅବମାନନାକରି ଅନ୍ୟର ଅନ୍ଧ ଅନୁକରଣ କରିବା। ଭାରତୀୟ ସମାଜ ମଧ୍ୟ ମାତୃଜାତିକୁ ହୀନ ଦୃଷ୍ଟିରେ ନ ଦେଖି ସେମାନଙ୍କର ଅନ୍ତର୍ନିହିତ ସୁପ୍ତଶକ୍ତିକୁ ଶିକ୍ଷା ମାଧ୍ୟମରେ ଜାଗ୍ରତ କରାଇ ପାରିଲେ ଦେଶ ତଥା ବିଶ୍ୱର ମଙ୍ଗଳ ସମ୍ଭବ। କଥିତ ଅଛି ଜଣେ ପୁରୁଷ ଶିକ୍ଷିତ ହେଲେ ହୁଏତ ଜଣକୁ ଶିକ୍ଷିତ କରାଇ ପାରେ। ମାତ୍ର ଜଣେ ନାରୀ ଯଦି ଶିକ୍ଷିତା ହୁଏ ତା'ହେଲେ ପରିବାର, ସମାଜ, ରାଷ୍ଟ୍ର ତଥା ବିଶ୍ୱର କଲ୍ୟାଣ ସାଧିତ ହୁଏ। ଏକଥା ହଜାର ହଜାର ବର୍ଷ ତଳର ବୈଦିକ ଋଷିଗଣ ସାକ୍ଷାତ୍ ଉପଲବ୍ଧି କରିଥିଲେ। ସେଥିପାଇଁ ଲଜ୍ଜ୍ୟା ଓ ମର୍ଯ୍ୟାଦାର ରମଣୀୟ ଆବରଣ ତଳେ ସୁରକ୍ଷିତ ଥାଇ ବୈଦିକନାରୀ ଆଜି ପର୍ଯ୍ୟନ୍ତ ଭାରତ ତଥା ବିଶ୍ୱନାରୀ ସମାଜକୁ ନୂତନ ଆଲୋକ ଦେବାରେ ସମର୍ଥ। ଆଜି ଭାରତୀୟ ନାରୀକୁଳ ସେହି ଆଦର୍ଶକୁ ଅନୁଶୀଳନ ଓ ଅନୁସରଣ କରିପାରିଲେ ପ୍ରକୃତ ସ୍ୱାଧୀନତାର ସ୍ୱାଦ ଅନୁଭବ କରିବା ସହିତ ନିଜକୁ ସର୍ବଶକ୍ତିସ୍ୱରୂପିଣୀ ବୋଲି ପ୍ରତିଷ୍ଠିତ କରାଇ ପାରିବେ।

---

(୧) ରଘୁବଂଶମ୍ କାଳିଦାସ ପ୍ରଥମ ସର୍ଗ।

(୨) ବ୍ରହ୍ମଚର୍ଯ୍ୟାଶ୍ରମ, ଗୃହସ୍ଥାଶ୍ରମ, ବାନପ୍ରସ୍ଥାଶ୍ରମ ଓ ସନ୍ନ୍ୟାସ।

(୩) ବ୍ରହ୍ମଚର୍ଯ୍ୟ ଦ୍ୱାରାହିଁ କୁମାରୀକନ୍ୟା ଯୁବକ ପତିବରଣ କରି ପାରୁଥିଲା–"ଗୋଭିଲ"।

(୪) ପୁରା କଳ୍ପେ କୁମାରୀଣାଂ ମୌଞ୍ଜି ବନ୍ଧନ ମିଷ୍ୟତେ ଅଧ୍ୟାପନଞ୍ଚ ବେଦାନାଂ ସାବିତ୍ରୀ ବାଚନଂ ତଥା, "(ବୀରମି ତ୍ରୋଦୟ ସଂସ୍କାର ପ୍ରକାଶ–୪୦୨/୩)

(୫) ଦ୍ୱିବିଧା ସ୍ତ୍ରିୟୋ ବ୍ରହ୍ମବାଦୀନ୍ୟଃ ସଦ୍ୟୋଦବାହଶ୍ଚ (ହାରିତ)।

(୬) ଅମ୍ବି ତମେ ଦେବୀ ତମେ, ନଦୀ ତମେ ସରସ୍ୱତୀ–ଋ ୨/୪୧/୧୬।

(୭) ପ୍ରଣୋ ଦେବୀ ସରସ୍ୱତୀ–ଋ ୬/୬୧/୪।

(୮) ଯା ଦେବୀ ସର୍ବଭୂତେଷୁ ଶ୍ରଦ୍ଧା ରୂପେଣ ସଂସ୍ଥିତା– ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ।

(୮) (କ) ସତ୍ୟାୟନ ଶ୍ରୌତସୂତ୍ର–୧୬/୬/୨୧।
(ଖ) ସଂଖ୍ୟାୟନ ଶ୍ରୌତସୂତ୍ର–୧୭/୩/୧୪।
(ଗ) କାତ୍ୟାୟନ ଶ୍ରୌତସୂତ୍ର–୪/୬।

(୯) ଋଗ୍ ବେଦ–୧/୯/୪।

(୧୦) ସ୍ତ୍ରୀ ଧନୁଶର ନିର୍ମାଣକାରୀ।

(୧୧) "ପୁଣ୍ୟି ତା କୁମାରୀଣା, ବିଶ୍ୱମ୍ ଆୟୁର୍ ବ୍ୟଶ୍ନୁତଃ। ଉତା ହିରଣ୍ୟ ପେଶସା"–ଋ ୮/୩୧/୮।

(୧୨) "ଅତ୍ର ସ୍ତ୍ରୀଣାଂ ଅପି ମନ୍ତ୍ରପାଠଃ। ପୁରୁଷାଣାଂ ସ୍ତ୍ରୀଣାଂ ସର୍ବେଷାଂ ଅପି ମନ୍ତ୍ରପାଠଃ – ପରାଶର ଗୃହ୍ୟ ସୂତ୍ର ୨/୭।

(୧୩) ସୁମଙ୍ଗଳୀରିୟଂ ବଧୂ, ଇମାଂ ସମେତ ପଶ୍ୟତ– ଋ ୧୦/୩୫/୩୩।

(୧୪) ସାମ୍ରାଜ୍ଞୀ ଶ୍ୱଶୁରେ ଭବ। ସାମ୍ରାଜ୍ଞୀ ଶ୍ୱଶ୍ରାଂ ଭବ। ନନାନ୍ଦରି ସାମ୍ରାଜ୍ଞୀ ଭବ ସାମ୍ରାଜ୍ଞୀ ଅଧିଦେବେଷୁ। ଋ ୧୦/୮୫/୪୬।

(୧୫) ଯା ପୂର୍ବଂ ପତିଂ ବିତ୍ତ୍ୱାଥାନ୍ୟଂ ବିନ୍ଦତେପରମ୍ ପଞ୍ଚାଦନଂ ଚ ତାବଜଂ ଦଦାତୋ ନ ବିୟୋଷତଃ। ଅଥର୍ବ ୯/୫/୨୪।

(୧୬) ମନୁସ୍ମୃତି– ୩/୫୬।

(୧୭) ମହାଭାରତ– ୧୩/୪୫/୫।

(୧୮) ୨୩ ସେପ୍ଟେମ୍ବର "Chicago Daily Inter-Ocen" ସମ୍ବାଦପତ୍ରରେ ଉପର ଲିଖିତ ସଂକ୍ଷିପ୍ତ ବିବରଣୀ ପ୍ରକାଶିତ ହୋଇଥିଲା।

---

ସଂସ୍କୃତ ବିଭାଗ,
ସମ୍ବଲପୁର ବିଶ୍ୱବିଦ୍ୟାଳୟ,
ଜ୍ୟୋତିବିହାର, ବୁର୍ଲା।

# ଚିଲିକା

● କମଳାକାନ୍ତ ପଣ୍ଡା

ଏଠି ପାଣି ହିଁ ଜୀବନ
ଜୀବନ ହିଁ ପାଣି ଭିତରେ
ଖେଳେ ଚକା ଭଉଁରୀ ॥

ଝଲମଲ୍ ହେବାକୁ
ଡିଆଁରି ଯିବାକୁ ଉଲ ପାଏ ସୂର୍ଯ୍ୟ ।
ଦେଖୁ ଝିକ୍‌ମିକ୍ ଲହରୀ
ଡାକୁଥାଏ ହାତଠାରି
ଚିହ୍ନା ହେଉ ବା ଅଚିହ୍ନା ହେଉ
ସଭିଙ୍କୁ ।

ସେତ ସାଉଁଳି ଦେବାକୁ ମେଲି ଦେଇଛି
ଅମୃତ ପାପୁଲି ।
ହସୁଛି, ହସାଉଛି
ବାଣ୍ଟି ଦେଉଛି
କେଉଁ ମାୟା ଜବରରେ
ଶପଲ୍‌: ଆସର ଜମଉଛି
ବୈଠକଖାନାରେ ତ
ଟି. ଭିର ରଙ୍ଗୀନ ପରଦାରେ ।

ଦୁଃଖ ଶର ବଥିଲୁ
ଦେଖି ଦେଉଛି ଉଷୁମ ପାଣିରେ
ଦୁଃଖକୁ ନିଗାଡ଼ି
ଖୋଲେଇ ଦେଉଛି
ଚିନ୍ତୁଥାଏ ଦଣ
ବୈକଣ୍ଠ ଦୁଇ ଓଠ ଉପକୂଳେ ॥

ସେଦିନ ସେ ଶୁଣିଥିଲା
ଧଳା–କଳା ଘୋଡ଼ାର
ଖୁରା ଶବ୍ଦ ।

ତରଙ୍ଗକୁ ବିଜୟର ବାନା କରି
ଘୋଷଣା କରୁଥିଲା
ବିଜୟ ସୁନିଶ୍ଚିତ ।

ଦୁଃଖ ଦଣ୍ଡରେ
ଲହରୀ ପରେ ଲହରୀ
ପାଉଥିଲା ପହରି ।

କଳାପାହାଡ଼ମାନଙ୍କୁ
ଦେଖେଇ ଦେଉଥିଲା !

ଦେଖ, ଶୀତ ଆସିଛି
ହରେକ୍ ରଙ୍ଗ, ବର୍ଣ୍ଣାଢ୍ୟ
ଐକ୍ୟତାନର କିଚିରି ମିଚିରି
ଠୁଳ ହୋଇଛି
ସାରା ପୃଥିବୀ ଯେମିତି ଏଇଠି ।

ହଲଚଲ କରନି
କରନି ଲୁଆଚୁଆ
ତାଳି ମାରନି ତୁମ ଖୁସି ପାଇଁ
ଆନ୍ଦୋଳିତ ହୋଇଯିବ
ତରଙ୍ଗ ଓ ନଭୋମଣ୍ଡଳ ।

ଛାତିରେ ବି ଝୁଲାଅନି
କ୍ୟାମେରା
ସେମାନେ ବୁଝିବେ
ତୁମେ ସବୁ ଆତତାୟୀ ।
ବିନ୍ଧୁଏ ରକ୍ତରେ ବି
ସିଞ୍ଚେଇ ଦିଅନି
ଉଦାର ଏ ବକ୍ଷ !
ମିମଣ୍ଟିସୁ ଇଚ୍ଛାକୁ ତୁମର
ଶାକାହାରୀ କର !
ପକ୍ଷୀଙ୍କର କଳରବ
ନିଦଭ ନିସ୍ତବ୍ଧ
ନାଉରୀର ମନଖୋଲା ଗୀତ
ଚବ୍‌ଚବ୍ ହାତ
ପାଣିକୁତ କରୁନି ଆଘାତ !
ହୁଏତ ପୁନରାବୃତ୍ତି ହୋଇପାରେ
କିମ୍ବଦନ୍ତୀର
ତୁମେ ବି ପାଇବି ପାର 'ଜାଣ' ॥

ଯେମିତି ଅନ୍ତର୍ନିହିତ ଭାବ ଭିତରେ
ମିଶିଯାଏ ସବୁ ଧର୍ମ
ସବୁ ଜୁଆ;
ଏଠି ସବୁ ଧର୍ମର ସମନ୍ୱୟ ଭିତରେ
ପ୍ରତିଫଳିତ
ଜଗା–କାଳିଆ ॥

ଇ–୨, ହୋମିଓପାଥିକ କଲେଜ ପରିସର,
ୟୁନିଟ୍–୩, ଭୁବନେଶ୍ୱର–୧ ।

# ଚେତନାର ତ୍ରିବେଣୀ

• ଶୁଭଶ୍ରୀ ତ୍ରିପାଠୀ

ଧର୍ମର ପରିଭାଷା ଅନ୍ଧବିଶ୍ୱାସ କିମ୍ବା ପାରମ୍ପରିକ ଉତ୍ସବର କୋଳାହଳ ମଧ୍ୟରେ ସୀମିତ ନୁହେଁ । ଧର୍ମୀୟ ଚେତନା ଏକ ଆଶାତୀତ ଉଜ୍ଜ୍ୱଳ ଦିବ୍ୟ ଅନୁଭୂତି । ଧର୍ମ ଓ ଆଧ୍ୟାତ୍ମିକତା ହିଁ ଭାରତୀୟ ଜାତୀୟ ଜୀବନର ସାଙ୍ଗୀତିକ ସ୍ୱର । ଏହି ପବିତ୍ର ଆର୍ଯ୍ୟାବର୍ତ୍ତରେ ଋଗ୍‌–ବେଦର ମହନୀୟ ଆଦର୍ଶ "ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି"ର ଆଦର୍ଶ ପରିଲକ୍ଷିତ । ବିଭିନ୍ନ ଧର୍ମର ଚିନ୍ତା ଓ ଚେତନାରୁ ଉଚ୍ଛିତ ଭାବ ତରଙ୍ଗରେ ଭାରତୀୟ ସାଂସ୍କୃତିକ ଭାବଧାରା ତରଙ୍ଗାୟିତ । ଉଦାର ଧର୍ମଧାରଣା ଆଧ୍ୟାତ୍ମିକ ମୂଲ୍ୟବୋଧର ଚିରନ୍ତନ ସତ୍ୟକୁ ପରିପ୍ରଶ୍ରୟ କରେ । କିନ୍ତୁ ଏହି ଧର୍ମପୀଠ ପୁଣ୍ୟମୟୀ ଶାନ୍ତିକାମୀ ଭାରତରେ ଆଜି ଧର୍ମଗତ କନ୍ଦଳକୁ ଭିତ୍ତି କରି ଏତେ ରକ୍ତାକ୍ତ ହତ୍ୟା, ଅମାନୁଷିକ କାର୍ଯ୍ୟକଳାପ ଓ ଧ୍ୱଂସର ତାଣ୍ଡବଲୀଳା କାହିଁକି ? ଧର୍ମକୁ ଆସ୍ତୁଧ କରି ସହନଶୀଳତା, ସହଯୋଗ ଓ ଭ୍ରାତୃଭାବର ବାତାବରଣ ସୃଷ୍ଟି ପରିବର୍ତ୍ତେ ଏତେ ଉତ୍ତେଜନା, ବିଭେଦ ଓ ବିବାଦର ଘନଘଟା କାହିଁକି ? ଏ ଦେଶର ମହାନତା ଓ ଧର୍ମୀୟ ଚିନ୍ତନର ଆଧ୍ୟାତ୍ମିକ ମହାସାଗର ମଧ୍ୟରେ ସବୁ ଜାତି, ଭାଷା ଓ ଧର୍ମର ଅପୂର୍ବ ସମ୍ମିଶ୍ରଣ ଘଟି ବିଶ୍ୱ ମାନବିକ ଚିନ୍ତା ଓ ମୂଲ୍ୟବୋଧର ଉଦ୍ରେକ ଘଟିଛି । ବେଦ, ଉପନିଷଦ ଓ ଭଗବଦ୍‌ଗୀତାର ବାଣୀରେ, ପବିତ୍ର କୋରାନ୍ ଓ ବାଇବେଲ୍‌ର ପୃଷ୍ଠାରେ, ଆଦିଗ୍ରନ୍ଥ ଓ ଧମ୍ମପଦର ପଂକ୍ତିରେ ତ୍ୟାଗ, ପାରସ୍ପରିକ ପ୍ରେମ, ଅଭାବ, ନୈତିକତାବୋଧ ଓ ଧର୍ମ ସମନ୍ୱୟର ଆଦର୍ଶ ଯୁଗ ଯୁଗ ଧରି ମନୁଷ୍ୟ ଜାତିକୁ ଦିଗ୍‌ଦର୍ଶନ ଦେଇଆସିଛି । ତେଣୁ ସାମ୍ପ୍ରତିକ ପରିପ୍ରେକ୍ଷୀରେ ଦେଖାଯାଉଥିବା ରାମ ଜନ୍ମଭୂମି–ବାବରୀ ମସ୍‌ଜିଦ୍ ବିବାଦ, ସାମ୍ପ୍ରଦାୟିକ ଦଙ୍ଗା ଓ କନ୍ଦଳ, ସବର୍ଣ୍ଣ–ଅସବର୍ଣ୍ଣ ବିଭେଦ, ସଂକୀର୍ଣ୍ଣ ଧର୍ମଧାରଣାକୁ ପର୍ଯ୍ୟାଲୋଚନା କଲେ ସ୍ପଷ୍ଟ ଜଣାଯାଏ ଯେ ଧର୍ମର ଅନ୍ତର୍ନିହିତ ସତ୍ୟକୁ ଉଦ୍‌ଘାଟନ କରିବାର ପ୍ରକୃଷ୍ଟ ସମୟ ଉପନୀତ । ଧର୍ମ ମନୁଷ୍ୟର ଜୀବନକୁ ପରିମାର୍ଜିତ, ଋତିମନ୍ତ କରି ଏକ ମୁକ୍ତ ଜୀବନ ଯାପନ ପାଇଁ ସ୍ୱର୍ଗୀୟ, ବାଧାମୁକ୍ତ ପଥର ନିର୍ଦ୍ଦେଶ ଦିଏ । ଧର୍ମଗତ ସହନଶୀଳତା ଓ ପରଧର୍ମ ପ୍ରତି ବିଦ୍ୱେଷହୀନତା ଭାରତୀୟ ସଂସ୍କୃତିର ମୂଳମନ୍ତ୍ର । ଧର୍ମୀୟ ଉଦାରତାର ମହାପ୍ଲାବନ–ଭୂମି ଏ ଦେଶ ।

ସଦ୍‌ଭାବ, ତ୍ୟାଗ, ତିତିକ୍ଷା ଓ ସମନ୍ୱୟର ଉଜ୍ଜ୍ୱଳ ଦୃଷ୍ଟାନ୍ତରେ ଭାରତୀୟ ଇତିହାସ ଋଦ୍ଧିମନ୍ତ । ଯଦିଓ ଇଂରେଜ ଶାସକମାନଙ୍କର ଚକ୍ରାନ୍ତ ଓ ବିଭାଜନ ନୀତି ଯୋଗୁଁ ଭାରତବର୍ଷ ବିଭାଜିତ ହେଲା, ତଥାପି ମୁଷ୍ଟି ଅନ୍ତଃ ଦୃଷ୍ଟିସମ୍ପନ୍ନ ଭାରତୀୟଙ୍କର ଆନ୍ତରିକ କାମନାରେ ସଂହତି ଓ ସାମ୍ପ୍ରଦାୟିକ ସଦ୍‌ଭାବର ସଫଳ ଅଭିବ୍ୟକ୍ତି ସ୍ପଷ୍ଟ ପରିଲକ୍ଷିତ । ଏପରିକି ଭାରତ ବିଭାଜନ ସମୟରେ ଅମୃତସରର ସ୍ୱର୍ଣ୍ଣ ମନ୍ଦିରରେ ମୁଖ୍ୟ ସଙ୍ଗୀତଜ୍ଞମାନେ ଥିଲେ ମୁସଲମାନ । ବେଙ୍ଗଲର ଆଫ୍‌ଗାନ୍ ଶାସକ ପାରାଗଲ ଖାଁ ପ୍ରତିଦିନ ସନ୍ଧ୍ୟାରେ ଭକ୍ତି ଓ ଶ୍ରଦ୍ଧାର ସହ ମହାଭାରତ ଶୁଣୁଥିଲେ । ବୀଜାପୁରର ସୁଲତାନ ମହାବିନାୟକ ପ୍ରଭୁ ଗଣେଶଙ୍କଠାରୁ ସମସ୍ତ ପ୍ରେରଣା ଲାଭ କରିଥିଲେ । ମହାମତି ପ୍ରାଣନାଥ, ଆଉରଙ୍ଗଜେବ୍‌ଙ୍କର ଜିଜିୟାକୁ ବିରୋଧ କରିଥିଲେ ହେଁ, ତାଙ୍କର ନିଜାନନ୍ଦ ସମ୍ପ୍ରଦାୟର ମନ୍ଦିରରେ କୌଣସି ମୂର୍ତ୍ତି ନ ଥିଲା, ମାତ୍ର ହିନ୍ଦୁ ଓ ମୁସଲିମ୍ ଧର୍ମର ପବିତ୍ର ଗ୍ରନ୍ଥଗୁଡ଼ିକ ପୂଜା ପାଉଥିଲା । ରାଷ୍ଟ୍ରୀୟ ସ୍ୱୟଂସେବକ ସଙ୍ଘର ଡକ୍ଟର ହେଡ଼ଗେୱାରଙ୍କ ନାଗପୁରଠାରେ ଥିବା ସମାଧି ମନ୍ଦିରର ନିର୍ମାତା ଥିଲେ ଜଣେ ମୁସଲମାନ । ମୁସଲ୍‌ମାନ ପୀରଙ୍କ ନାମରେ ଅନେକ ହିନ୍ଦୁ ଜମିବାଡ଼ି ଖଞ୍ଜି ଦେଇଥିବାର ଏବଂ ହିନ୍ଦୁ ଦେବାଦେବୀଙ୍କ ସେବା ପୂଜା ପାଇଁ ଧାର୍ମିକ ମୁସଲ୍‌ମାନମାନେ ସମ୍ପତ୍ତି ଦାନ କରିଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । ପଣ୍ଡିତ ଗୋପବନ୍ଧୁ ଉଲ୍ଲେଖ କରିଛନ୍ତି ଯେ – "ମୂଳକଥା, ହିନ୍ଦୁ, ମୁସଲ୍‌ମାନ ଏତେ ଦୀର୍ଘ କାଳ ଏପରି ଭାବରେ ଏକତ୍ର ରହିଲେଣି ଯେ, ସେମାନଙ୍କର ଭେଦଭାବ ସ୍ୱାଭାବିକ ପ୍ରକ୍ରିୟାରେ କ୍ରମେ କ୍ଷୀଣ ହୋଇଯିବାର କଥା" । ମାତ୍ର ଦୁଃଖର ବିଷୟ, ଯେ କୌଣସି କାରଣରୁ ହେଉ, ସାମ୍ପ୍ରଦାୟିକ ବିବାଦ ଯେ ଭାରତ ଜାତୀୟ ଏକତାରେ ଅନ୍ତରାୟ ଏବଂ ଭାରତ ଉନ୍ନତିରେ ବାଧା, ଏହା କେହି ଅସ୍ୱୀକାର କରିବେ ନାହିଁ । ସମୂହ ଉନ୍ନତିରେ ସମ୍ପ୍ରଦାୟର ଓ ବ୍ୟକ୍ତିବିଶେଷର କଲ୍ୟାଣ ନ ଦେଖିପାରିବାଯାଏ, ଏକା ହିନ୍ଦୁ ମୁସଲ୍‌ମାନ ମଧ୍ୟରେ କାହିଁକି, ଭାରତର କ୍ଷୁଦ୍ର ବୃହତ, ଅସଂଖ୍ୟ ସମ୍ପ୍ରଦାୟ ମଧ୍ୟରେ ଏପରିକି ଅସଂଖ୍ୟ ଶ୍ରେଣୀ, ଶାଖା, ପ୍ରଶାଖା, ମଧ୍ୟରେ ଏପରି ବିବାଦ ଗ୍ଲାଇଥିବ ।

ଧର୍ମ ମନୁଷ୍ୟ ଜୀବନର ପ୍ରତିଟି କ୍ଷେତ୍ରରେ ତା'କୁ ଉଚିତ୍ ମାର୍ଗର ସନ୍ଧାନ ଦେଇଥାଏ । ଧର୍ମ ସହ ରାଜନୀତି, ଶିକ୍ଷା, ଭାଷା, ଭାବ ସବୁ କିଛିର ନିବିଡ଼ ସମ୍ପର୍କ ରହିଛି । ଧର୍ମ ପ୍ରତ୍ୟେକ ସଂସ୍କୃତିର ଏକ ମୁଖ୍ୟ ଉପାଦାନ । ସମସ୍ତ ଧର୍ମଗ୍ରନ୍ଥ ନୈତିକ, ମାନବିକ ଓ ଆଧ୍ୟାତ୍ମିକ ନୀତିର ଏକ ଏକ ଅମୂଲ୍ୟ ଭଣ୍ଡାର । ଶିଖ୍ ଧର୍ମର ଗୁରୁ ଗ୍ରନ୍ଥ ସାହେବ କେବଳ ଏକ ଧର୍ମଗ୍ରନ୍ଥ ନୁହେଁ, ବରଂ ଉଚ୍ଚକୋଟୀର ଏକ ସାହିତ୍ୟିକ ମୂଲ୍ୟବୋଧପୂର୍ଣ୍ଣ ପୁସ୍ତକ । ଗୁରୁ ନାନକ, ତେଗ୍ ବାହାଦୁର, ଗୁରୁ ଗୋବିନ୍ଦ ସିଂ ପ୍ରମୁଖ କେବଳ ଧର୍ମଗୁରୁ ନୁହଁନ୍ତି, ବରଂ ଭାରତର ଜଣେ ଜଣେ ଜାତୀୟ ବୀର, ଯେଉଁମାନଙ୍କର ଜୀବନାଦର୍ଶ ଯୁଗ ଯୁଗ ଧରି ପ୍ରେରଣା, ଉତ୍ସାହ, ସେବା ଓ ତ୍ୟାଗ ଧର୍ମରେ ମାନବ ଜାତିକୁ ଉଦ୍‌ବୁଦ୍ଧ କରି ଆସୁଛି ଓ କରୁଥିବ ମଧ୍ୟ । ରାମ ଓ କୃଷ୍ଣ କେବଳ ଧର୍ମର ପ୍ରତୀକ ନୁହନ୍ତି, ବରଂ ଭାରତୀୟ କଳା, ସଙ୍ଗୀତ ଓ ପରମ୍ପରାର ଜୀବନ୍ତ ବିଗ୍ରହ । ରାମାୟଣ ଓ ମହାଭାରତକୁ କେବଳ ଧର୍ମୀୟ ଚେତନାର ବାର୍ତ୍ତାବହ କହିଲେ ଠିକ୍ ହେବ ନାହିଁ, କାରଣ ଇଣ୍ଡୋନେସିଆ, ମାଲେସିଆ, ଥାଇଲାଣ୍ଡ ଆଦି ଅନେକ ଦକ୍ଷିଣ–ଏସୀୟ ରାଷ୍ଟ୍ରର ମୁସଲ୍‌ମାନମାନେ ମଧ୍ୟ ଏହି ଗ୍ରନ୍ଥ ଦୁଇଟିକୁ ସେମାନଙ୍କର ସଂସ୍କୃତିର ଏକ ଅଙ୍ଗ ରୂପେ ଗ୍ରହଣ କରନ୍ତି ।

ସାମାଜିକ ଓ ଶୈକ୍ଷିକ ପ୍ରଗତି କ୍ଷେତ୍ରରେ ଧର୍ମର ଭୂମିକା ଅନସ୍ୱୀକାର୍ଯ୍ୟ । ଏପରିକି ଧର୍ମ ସମସ୍ତ ନୈତିକ ଓ ମାନବିକ ମୂଲ୍ୟବୋଧର ଭିତ୍ତିଭୂମି, ଯାହା କି ରାଷ୍ଟ୍ରର ଶାସନ କ୍ଷେତ୍ରରେ ଏକ

ସୁସ୍ଥ ରାଜନୀତି ଓ ଗଣତନ୍ତ୍ର ପ୍ରତିଷ୍ଠା ପାଇଁ ଏକାନ୍ତ ଆବଶ୍ୟକ । ତେବେ ମନେ ରଖିବାକୁ ହେବ ଯେ, ଧର୍ମୀୟ ଓ ଆଧ୍ୟାତ୍ମିକ ଆଦର୍ଶରେ ରାଜନୀତିକୁ ପରିଶୁଦ୍ଧିତ କରିବା ଗୋଟିଏ କଥା ଏବଂ ସଂକୀର୍ଣ୍ଣ ଧର୍ମଧାରଣା ଓ ଧର୍ମାନ୍ଧତାର ବଶବର୍ତ୍ତୀ ହୋଇ ରାଜନୀତିକୁ କଳୁଷିତ କରିବା ତାହାଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପ୍ରକୃତ ଧର୍ମର ସ୍ୱରୂପ ନିରୂପଣ କରି, ଆପାର ସର୍ବବ୍ୟାପତ୍ୱକୁ ହୃଦୟଙ୍ଗମ କଲେ ହିଁ ଆଧ୍ୟାତ୍ମିକତାର ମହାପ୍ଲାବନ ଯୋଗୁଁ ସମାଜରେ ଏକ ନବଚେତନାର ଉନ୍ମେଷ ଘଟିବ । ମହାଜାତୀୟ ଭାବଧାରା ପ୍ରତ୍ୟେକ ଦେଶବାସୀର ଅନ୍ତରରେ ଆଲୋଡ଼ନ ସୃଷ୍ଟି କରିବ । ପ୍ରତ୍ୟେକ ଧାର୍ମିକ ଜନତାର କର୍ଣ୍ଣ କୁହରରେ ପ୍ରତିଧ୍ୱନିତ ହେବ ସ୍ୱାମୀ ବିବେକାନନ୍ଦଙ୍କର ମହନୀୟ ଉଦ୍‌ଘୋଷଣା – "ସମସ୍ତ ପ୍ରକାର ଧର୍ମଦ୍ୱନ୍ଦ୍ୱ, ସ୍ୱାଧୀନତା ନାମରେ ବ୍ୟକ୍ତିଗତ ସ୍ୱେଚ୍ଛାଚାର, ଜାତୀୟତା ନାମରେ ପରସ୍ପର ଲୋଲୁପତା, ଧର୍ମ ନାମରେ ପର ଧର୍ମ ପ୍ରତି ଅଯଥା ଆକ୍ରମଣ ପରିତ୍ୟାଗ କରିବାକୁ ହେବ । ପ୍ରତ୍ୟେକର ଜାତିଗତ, ଧର୍ମଗତ, ସମାଜଗତ ସ୍ୱାତନ୍ତ୍ର୍ୟ ରକ୍ଷା କରି ପରସ୍ପର ଭାବ ବିନିମୟ ହେବ ଆମର ଧର୍ମ ।

ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କର ଅପପ୍ରଚାର, ଅନ୍ୟ ଧର୍ମର ବ୍ୟକ୍ତିଙ୍କ ଉପରେ ଅଯଥା ଦୋଷାରୋପ ଆଦି ସାମ୍ପ୍ରତିକ ସମାଜରେ ସାମ୍ପ୍ରଦାୟିକତାକୁ ପ୍ରୋତ୍ସାହିତ କରୁଛି । ଧର୍ମୀୟ ଅନ୍ଧ ବିଶ୍ୱାସ, କୁସଂସ୍କାର ଓ ରକ୍ଷଣଶୀଳ ମନୋବୃତ୍ତିର ପରିଣତି ସ୍ୱରୂପ ଆତଙ୍କର ଶିହରଣ ଖେଳିଯାଉଛି ସମାଜ ବକ୍ଷରେ । ଧର୍ମକୁ କେନ୍ଦ୍ରକରି ପାଶବିକ ବର୍ବରୋଚିତ ହତ୍ୟାକାଣ୍ଡ ଓ ରକ୍ତାକ୍ତ ସଂଘର୍ଷର ବିଭୀଷିକା ଆଜି ଶାନ୍ତିର ସୌଧକୁ ଭାଙ୍ଗି ଚୂରମାର କରି ଦେଶର ଅଖଣ୍ଡତାକୁ ବିପନ୍ନ କରୁଛି । ଏହି ପରିପ୍ରେକ୍ଷୀରେ ହୃଦୟର ସଂହତି ସ୍ଥାପନ ଦ୍ୱାରା ସମାଜକୁ ଓ ଜାତିକୁ ଏହି ବିପର୍ଯ୍ୟୟରୁ ରକ୍ଷା କରିବା ସମସ୍ତଙ୍କର ପରମ ଧର୍ମ । ଧର୍ମ ସମନ୍ୱୟର ଅଗ୍ନି ମନ୍ତ୍ରରେ ଦୀକ୍ଷିତ ହୋଇ ଭାରତୀୟ ସଂସ୍କୃତିର ମହନୀୟତାକୁ ରକ୍ଷା କରିବା ପ୍ରତ୍ୟେକ ଜାତୀୟତାବାଦୀ ଭାରତୀୟର କର୍ତ୍ତବ୍ୟ । ଲାଲା ଲଜପତ୍ ରାୟଙ୍କ ଭାଷାରେ- "ଯେଉଁ ଭାରତ ମାତା ନାନକ, ଅଶୋକ, ହର୍ଷ ଓ ବିକ୍ରମାଦିତ୍ୟଙ୍କୁ ନେଇ ଗୌରବାନ୍ୱିତା, ସେ ମଧ୍ୟ ନିଜାମୁଦ୍ଦିନ ଚିସ୍ତି, ଆକବର, ଶେରସାହା ଓ ଶାହାଜାହାନଙ୍କୁ ପାଇ ଧନ୍ୟା ।" ବାସ୍ତବିକ୍ ଟୋଡରମଲ୍ଲଙ୍କୁ ପାଇ ଯେଉଁ ଭାରତ ଆନନ୍ଦିତା, ସେ ମଧ୍ୟ ଆବୁଲଫାଜଲ୍‌ଙ୍କ ପରି ଜ୍ଞାନୀ ବ୍ୟକ୍ତିଙ୍କର ସ୍ପର୍ଶ ଲାଭ କରି ଆମୋଦିତା । ଯେଉଁ ଭାରତ ମାତା ବାଲ୍ମୀକି, କାଳିଦାସ ଓ ତୁଳସୀ ଦାସଙ୍କର ଜନ୍ମପୀଠ, ସେ ମଧ୍ୟ ଅମୀର ଖୁସ୍ରୁ, ମୀର୍ଜା ଗାଲିବ୍‌ଙ୍କ ପରି ସୁଯୋଗ୍ୟ ସନ୍ତାନଙ୍କୁ ବକ୍ଷରେ ଧାରଣ କରିଥିଲା । ଯେଉଁ ଭାରତ ଭୂମିରେ ହାଲି, ଇକ୍‌ବାଲ୍‌ଙ୍କ ପରି ବିଶ୍ୱବିଖ୍ୟାତ ମହାପୁରୁଷ ଜନ୍ମଗ୍ରହଣ କରି ଏ ଦେଶର ମହିମାକୁ ଶତଗୁଣିତ କରିଛନ୍ତି, ସେହି ଭାରତ ମାତା ସ୍ୱାମୀ ଦୟାନନ୍ଦ, ରାମମୋହନ ରାୟ ଓ ରବୀନ୍ଦ୍ରନାଥ ଟାଗୋରଙ୍କ ଭଳି ବରପୁତ୍ରମାନଙ୍କର ଅମୃତ ସ୍ପର୍ଶରେ ମହିମାନ୍ୱିତା ହୋଇଛି । ତେଣୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଆଜି ଆମ ସମସ୍ତଙ୍କୁ ହୃଦୟଙ୍ଗମ କରିବାକୁ ହେବ, ଆମେ ମଧ୍ୟ ସେହି ଏକ ଭାରତ ମାତାର ସନ୍ତାନ ।

ଏକ ସାମ୍ପ୍ରଦାୟିକ ସଦ୍ଭାବମଣ୍ଡିତ ରାଜ୍ୟର ସ୍ୱପ୍ନିଳ ସୌଧକୁ ସାକାର ରୂପ ଦେବାକୁ ହେଲେ, "ବସୁଧୈବ କୁଟୁମ୍ବକମ୍"ର ମହାମନ୍ତ୍ରରେ ଅଭିମନ୍ତ୍ରିତ ହେବାକୁ ପଡ଼ିବ । ଧର୍ମୀୟ ମାନବବାଦ, ଭ୍ରାତୃଭାବ ଓ ଜାତୀୟ ଚେତନାର ଉତ୍ତରଣ ପାଇଁ "ଧର୍ମ ହିଁ ଏକମାତ୍ର ସତ୍ୟ – ଏହି ଚିରନ୍ତନ ବାଣୀକୁ ଉପଲବ୍ଧି କରି ପରିପ୍ରଚାର କରିବାକୁ ହେବ । ତାହାହେଲେ ପ୍ରତ୍ୟେକ ଧର୍ମର ପତାକା ଉପରେ ଲିଖିତ ହେବ – "ବିବାଦ ନୁହେଁ, ସହାୟତା; ବିନାଶ ନୁହେଁ, ପରସ୍ପରର ଭାବ ଗ୍ରହଣ; ମତ ବିରୋଧ ନୁହେଁ, ସମନ୍ୱୟ ଓ ଶାନ୍ତି ।"

ବାସ୍ତବିକ, ଧର୍ମ ମାନବିକ ସଂପ୍ରୀତି, ବିଶ୍ୱପ୍ରେମ ଓ ମହାଜାତୀୟ ଚେତନା – ଏହି ତିନି ମହାସ୍ରୋତର ତ୍ରିବେଣୀ ସଙ୍ଗମ ।

---

ମାର୍ଫତ୍-ଶ୍ରୀ ଅଭିମନ୍ୟୁ ତ୍ରିପାଠୀ,
ପଟ୍ଟାପୋଲ, ବକ୍ସିବଜାର, କଟକ-୧ ।



ତୁଳସୀ ଭବନଠାରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓଙ୍କ ଜୟନ୍ତୀ ପାଳନ ଅବସରରେ ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ପୁଷ୍ପାଞ୍ଜଳି ଅର୍ପଣ କରୁଛନ୍ତି ।

# ରାଗାନୁଗା ପ୍ରେମଭକ୍ତି ଉପାସକ ଅଭିମନ୍ୟୁ

• ଶ୍ରୀ ଚିତ୍ତରଞ୍ଜନ ଦାଶ

ଓଡ଼ିଆ ରୀତିଯୁଗୀୟ ସାହିତ୍ୟରେ ଯେଉଁ କେତେଜଣ ମୁଷ୍ଟିମେୟ କବି ଲେଖନୀ ଚାଳନା କରି ଉତ୍କଳର ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ ଓ ଗୌରବାନ୍ୱିତ କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ଅଭିମନ୍ୟୁ ସାମନ୍ତସିଂହାର ଅନ୍ୟତମ । ରୀତିଯୁଗର କବି ଉପେନ୍ଦ୍ର ଭଞ୍ଜ ଓ କବି ଦୀନକୃଷ୍ଣଙ୍କର ଅନ୍ୟତମ ପ୍ରତିନିଧି ଭାବରେ ଅଭିମନ୍ୟୁଙ୍କ ପରି ଶକ୍ତିଶାଳୀ ଏବଂ ପ୍ରତିଭାବାନ କବି ଓଡ଼ିଆ ସାହିତ୍ୟରେ ବିରଳ । ଏମାନଙ୍କ ମଧ୍ୟରେ ଦୀନକୃଷ୍ଣ ଅଗ୍ରଦୂତ ହେଲେ ହେଁ କାବ୍ୟର ସାବଲୀଳତା ଭିତରେ ସେ ନିଜକୁ ବେଶୀ ପ୍ରକାଶିତ କରିଥାନ୍ତି । ଉପେନ୍ଦ୍ର ଭଞ୍ଜ ବର୍ଣ୍ଣନା ଓ ଅର୍ଥ ଭିତରେ କାବ୍ୟର ଲଳିତ ଦିଗଟିକୁ ପ୍ରକାଶ କରିଥାନ୍ତି । କିନ୍ତୁ ଲାଳିତ୍ୟ, ଉପମା, ଅର୍ଥଗୌରବ, ରସ ଚେତନା, ଆଧ୍ୟାତ୍ମିକ ଭାବନା, ଅଳଙ୍କରଣ ପ୍ରବୃତ୍ତି ଇତ୍ୟାଦି ବାଦ୍ୟକୁ ଯେପରି ସରସ ଓ ପବିତ୍ର କରେ, ତାହା ରହିଛି ବିଦଗ୍ଧ କବି ସାମନ୍ତସିଂହାରଙ୍କ ଅମାୟିକ ପ୍ରତିଭା ଭିତରେ । ତେଣୁ ତାଙ୍କର କବିତ୍ୱ, ଜୀବନଦର୍ଶନ, ଶୈଳୀ, ପାଣ୍ଡିତ୍ୟ ତଥା ରସିକତ୍ୱର ବିଚାରରେ ସାମନ୍ତସିଂହାରଙ୍କର କବି ପ୍ରତିଭା ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହୋଇପାରିଛି ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା କବି ସାମନ୍ତସିଂହାରଙ୍କର ବାଲ୍ୟଗୁରୁ ଥିଲେ । ତାଙ୍କର ବ୍ୟକ୍ତିତ୍ୱ, କବିତ୍ୱ ଏବଂ ଭକ୍ତିଭାବନା ପରବର୍ତ୍ତୀ ସମୟରେ ଅଭିମନ୍ୟୁଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇ ଥିବାର ଜଣାଯାଏ । ସଦାନନ୍ଦ ମଧ୍ୟ ଏକାଧିକ କାବ୍ୟ କବିତାର ଲେଖକ ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ପ୍ରିୟ ଶିଷ୍ୟ ଅଭିମନ୍ୟୁ ମଧ୍ୟ ଗୁରୁଙ୍କର ପ୍ରଭାବରେ କୃଷ୍ଣଭକ୍ତ ସାଜି ରାଧାକୃଷ୍ଣ ଲୀଳା ବିଷୟକ କାବ୍ୟ ରଚନାରେ ପ୍ରବୃତ୍ତ ହୋଇଥିଲେ । ଏହାର ଫଳ ସ୍ୱରୂପ ତାଙ୍କ ଲେଖନୀରୁ ଷୋଳ ଛାନ୍ଦ ବିଶିଷ୍ଟ 'ସ' ଆଦ୍ୟ ନିୟମରେ ଲିଖିତ କ୍ଷୁଦ୍ର କାବ୍ୟ "ସୁଲକ୍ଷଣା", ଚଉଷଠି ଛାନ୍ଦ ବିଶିଷ୍ଟ 'ପ୍ରେମକଳା', 'ପ୍ରେମ ଚିନ୍ତାମଣି', 'ପ୍ରୀତି ଚିନ୍ତାମଣି', 'ପ୍ରେମ ତରଙ୍ଗିଣୀ' ଓ ସର୍ବଶ୍ରେଷ୍ଠ କୃତି 'ବିଦଗ୍ଧ ଚିନ୍ତାମଣି' ଆତ୍ମପ୍ରକାଶ ଲାଭ କରିଥିଲା ।

ରୀତିଯୁଗୀୟ ସାହିତ୍ୟାଦର୍ଶକୁ ଅନୁସରଣ କରି ଅତ୍ୟନ୍ତ ଚତୁରତାର ସହିତ କବି ଅଭିମନ୍ୟୁ ସାମନ୍ତସିଂହାର 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ ତା'ର ମହତ୍ୱ ପ୍ରତିପାଦନ କରିଛନ୍ତି । କାବ୍ୟକଳା ଦୃଷ୍ଟିରୁ ବିଚାର କଲେ ଓଡ଼ିଆ ରୀତିଯୁଗର ସାହିତ୍ୟ କ୍ଷେତ୍ରରେ 'ବିଦଗ୍ଧ ଚିନ୍ତାମଣି' ଏକ ଆକସ୍ମିକ ସୃଷ୍ଟି ନ ହେଲେ ମଧ୍ୟ, ଅଧିକନ୍ତୁ ସାହିତ୍ୟ ସୃଷ୍ଟି ସାଧନାର ଏକ ସୁବିସ୍ତୃତ ପରମ୍ପରାରେ ଅଭିମନ୍ୟୁଙ୍କ ସଚେତନ ମାନସରେ ଏହା ଏକ ରସାଳ ଓ ଛବିଳ କାବ୍ୟ ସମ୍ପଦ । ଏହା କବିଙ୍କର ପରିଣତ ବୟସର ରଚନା ହେଲେ ମଧ୍ୟ ସିଦ୍ଧହସ୍ତତାର ପରିଚୟ ପ୍ରଦାନ କରେ । କେବଳ ସେତିକି ନୁହେଁ ଏହି କାବ୍ୟର ପ୍ରଥମ ଛାନ୍ଦ କାବ୍ୟର ମୁଖଶାଳା । ସେଥିରେ ତାଙ୍କର କବିତ୍ୱ, ବହୁ ଶାସ୍ତ୍ରଦର୍ଶିତା, ଧର୍ମମତ, କାବ୍ୟିକ ଆଦର୍ଶ ବିଷୟରେ ସ୍ପଷ୍ଟ ଧାରଣା କରିହୁଏ । "ଶାଁ ନିର୍ମଳ ଧୋବା ଦୁଠ"ରୁ ଜଣାଗଲା ପରି କବିଙ୍କର ପ୍ରତିଭା ସାଧନାର ସଫଳ ଚିତ୍ରଣ ଓ ରୂପାୟନ ହିଁ ପ୍ରଥମ ଛାନ୍ଦରୁ କରିହୁଏ । ଏଠାରେ 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ କବି ଅଭିମନ୍ୟୁଙ୍କର ରାଗାନୁଗା ଭକ୍ତି କିପରି ଭକ୍ତ ଚିତ୍ତକୁ ଅନୁରଣିତ କରି ରସସିକ୍ତ କରେ ତାହା ଉପରେ ଆଲୋକପାତ କରୁଛି ।

କବିକୃତ ସମଗ୍ର କାବ୍ୟ ସମ୍ଭାର ମଧ୍ୟରୁ 'ବିଦଗ୍ଧ ଚିନ୍ତାମଣି' ସର୍ବଶ୍ରେଷ୍ଠ କାବ୍ୟ ଭାବେ ପାଠକମାନଙ୍କ ନିକଟରେ ଆଦୃତ ହୋଇଛି । ଏଥିରେ କବିଙ୍କର କବିତ୍ୱ–ପ୍ରତିଭା ସମୀଚୀନ ଭାବରେ ପ୍ରତିଭାତ ହୋଇଛି । ଏଥିରେ ଲୀଳାବିହାରୀ ଶ୍ରୀକୃଷ୍ଣ ପରମ ଭଗବତ୍ ଶକ୍ତି ରୂପରେ ଚିତ୍ରିତ ହୋଇଛନ୍ତି । କବି ହେଉଛନ୍ତି ଓଡ଼ିଶାର ଶ୍ରେଷ୍ଠ ଗୌଡ଼ୀୟ ବୈଷ୍ଣବ କବି ଓ ତାଙ୍କ ରଚିତ 'ବିଦଗ୍ଧ ଚିନ୍ତାମଣି' ଗୌଡ଼ୀୟ ଧର୍ମର ଶ୍ରେଷ୍ଠ କାବ୍ୟ ଗ୍ରନ୍ଥ । ଜଣେ ନିଛକ ଗୌଡ଼ୀୟ ମତବାଦୀ ରୂପେ କବି ନିଜକୁ ନିଜ କାବ୍ୟରେ ପରିଚିତ କରାଇ ଯାଇଛନ୍ତି । ତା'ର ପରିଚୟ ମାତ୍ର ନଅବର୍ଷ ବୟସରୁ ଏହି ପ୍ରତିଭାବାନ କବିଙ୍କର ଗୌଡ଼ୀୟ ଧର୍ମ ପ୍ରତି ଆସକ୍ତି ପ୍ରକାଶ ପାଇଛି ତାଙ୍କର ନିମ୍ନୋକ୍ତ କବିତାଂଶରେ–

"କର୍ମଙ୍ଗୀ ଗଛର ଛାଇ ଗୋ ମୋର ହୁଁ ଗୋ
କରମ ଯାହାର ସୁଫଳ ହୋଇବ କୃଷ୍ଣକୁ ଲଭିବ ସେହି ଗୋ
ମୋର ହୁଁ ଗୋ ।
ଗଞ୍ଜେଇ ଗଛର ଛାଇ ଗୋ ମୋର ହୁଁ ଗୋ
ବେଣୁ ବିନୋଦିଆ ଯେଣେ ଯାଉଥାଇ
ତେଣେ ଦୁରି ପଡୁଥାଇ ଗୋ
ମୋର ହୁଁ ଗୋ ।"

କବିଙ୍କର ଗୌଡ଼ୀୟ ଧର୍ମ ପ୍ରତି ଆସକ୍ତିର ମୁଖ୍ୟ କଥା ହେଲା ପ୍ରେମଭକ୍ତି । ଏହାର ଭିତ୍ତି ସୁପ୍ରାଚୀନ । ଚୈତନ୍ୟ ଏହି ପ୍ରେମଭକ୍ତିକୁ ଆନ୍ଦୋଳନରେ ପରିଣତ କରିଥିଲେ । ପରବର୍ତ୍ତୀ ସମୟରେ ଅନ୍ୟ ଗୋସ୍ୱାମୀମାନେ ଏହି ଧର୍ମର ତାତ୍ତ୍ୱିକ ବ୍ୟାଖ୍ୟା କରିଥିଲେ । କବି ଅଭିମନ୍ୟୁ ଥିଲେ ନିଷ୍ପାପର ଶୁଦ୍ଧ ରାଗାନୁଗା ଭକ୍ତି ଉପାସକ । ତାଙ୍କର ପ୍ରତ୍ୟେକ ଗ୍ରନ୍ଥଗୁଡ଼ିକ ରାଧାକୃଷ୍ଣ ଲୀଳାତ୍ମକ ରଚନାର ବର୍ଣ୍ଣନାରେ ଶତ ମୁଖରିତ । ଶୁଦ୍ଧ ରାଗାନୁଗା ପ୍ରେମଭକ୍ତି ପରମ୍ପରା ପ୍ରାଚୀନ ନ ହେଲେ ମଧ୍ୟ ଅପ୍ରାଚୀନ ନୁହେଁ । 'ରାଗ' ଶବ୍ଦଟିର ଅର୍ଥ ହେଉଛି ଆସକ୍ତି । ଯେଉଁ ଆସକ୍ତି ଯୋଗୁଁ ଆମେ ସଂସାର ସହିତ ଜଡ଼ିତ ହୋଇପଡୁ, ସେହି ଆସକ୍ତି ହିଁ ଅଭିମନ୍ୟୁଙ୍କୁ ରାଧାକୃଷ୍ଣ ଲୀଳାତ୍ମକ ଗ୍ରନ୍ଥ ରଚନା କରାଇବାରେ ସମର୍ଥ କରାଇଛନ୍ତି । ଏହି ଆସକ୍ତି ଭକ୍ତ ହୃଦୟରେ ମୁକ୍ତିର ପଥ ମଧ୍ୟ ଦେଖାଇଥାଏ ।

ଭାରତବର୍ଷରେ ବୈଷ୍ଣବ ଧର୍ମର ପରମ୍ପରା ଅତି ପ୍ରାଚୀନ । ଅଷ୍ଟମ ଶତାବ୍ଦୀ ବେଳକୁ ଦାକ୍ଷିଣାତ୍ୟରେ ବୈଷ୍ଣବ ଧର୍ମର ପ୍ରାବଲ୍ୟ ଘଟିଥିଲା । ତାହା କାଳକ୍ରମେ ପଞ୍ଚସଖା ଯୁଗରୁ ପ୍ରାବଲ୍ୟତା ଲାଭ କରି ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସ୍ଥିତିକୁ ବଜାୟ ରଖିଥିଲା ।

ଫଳରେ ବୈଷ୍ଣବ ଗ୍ରନ୍ଥମାନଙ୍କରେ ଏହି ପ୍ରେମ ଭକ୍ତି ଦୁଇ ଭାଗରେ ବିଭକ୍ତ ହୋଇଗଲା । ଏହା ହେଉଛି ବୈଧୀ ଓ ରାଗାନୁଗା ଭକ୍ତି । ଶାସ୍ତ୍ରର ବିଭିନ୍ନ ବିଧିବିଧାନ ଅନୁଯାୟୀ ପୂଜା ଅର୍ଚ୍ଚନା କରିବା ବୈଧୀ ଭକ୍ତିରେ ସଂଶ୍ଳିଷ୍ଟ । କିନ୍ତୁ ରାଗାନୁଗା ଭକ୍ତି କୌଣସି ବିଧିବିଧାନର ଅପେକ୍ଷା ରଖେନାହିଁ । ସମଗ୍ର 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ ରାଧାକୃଷ୍ଣଙ୍କ ଅପ୍ରାକୃତ ପ୍ରେମଲୀଳାର ପ୍ରକଟନ ହିଁ ଏହାର ମୁଖ୍ୟ କଥାବସ୍ତୁ । ସେ ସମ୍ପ୍ରଦାୟ କାବ୍ୟରେ କୌଣସି ସ୍ଥଳରେ ଜଗନ୍ନାଥଙ୍କୁ ସ୍ଥାନ ଦେଇ ନାହାନ୍ତି । ମହାଭାବ ସ୍ୱରୂପିଣୀ ରାଧା ଓ ରସିକ ଶେଖର କୃଷ୍ଣଙ୍କର ପ୍ରେମ ମୂର୍ତ୍ତିକୁ ଧ୍ୟାନ କରି ପ୍ରଥମ ଛାନ୍ଦରେ ପ୍ରଥମ ପଦରେ ଲେଖିଛନ୍ତି :–

'ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ।" (ବି:ଚି:)

ପୁନଶ୍ଚ ପ୍ରେମଭକ୍ତିର ମୁଖ୍ୟ ତତ୍ତ୍ୱ କୃଷ୍ଣଙ୍କର ପୂର୍ଣ୍ଣ ବ୍ରହ୍ମତ୍ୱ ଯଥା ଶ୍ରୀମଦ୍ ଭାଗବତ ବର୍ଣ୍ଣିତ "ଏତେ ଚାଂଶ କଳା ପୁଂସ କୃଷ୍ଣସ୍ତୁ ଭଗବାନ ସ୍ୱୟଂ"ର ପ୍ରଭାବ ସାମନ୍ତସିଂହାରଙ୍କ ଉପରେ ପ୍ରତିଫଳିତ ହୋଇଛି । ତେଣୁ ସେ ଲେଖିଲେ–

"ଈଶ୍ୱର ସ୍ୱତନ୍ତ୍ର ସ୍ୱୟଂ ଭଗବାନ ତୁହି
ଲୀଳାମୟ ସର୍ବଶକ୍ତିବନ୍ତ ତତ୍ତ୍ୱ ବିହି ।" (ବି:ଚି:)

ରାଧାକୃଷ୍ଣଙ୍କର ଅଲୌକିକ ପ୍ରେମଭକ୍ତିକୁ ଦେଖାଇବାକୁ ଯାଇ କବି ଅଭିମନ୍ୟୁ ଲୌକିକ ଜଗତରୁ ଉଦାହରଣ ଆଣି ରାଧାକୃଷ୍ଣଙ୍କ ପ୍ରେମର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । କୃଷ୍ଣ ଓ ରାଧା ହେଉଛନ୍ତି ପ୍ରକୃତି ଓ ପୁରୁଷର ପ୍ରତୀକ । ଏମାନେ ଗୋଟିଏ ଅଙ୍ଗରେ ଦୁଇଟି ଅଂଶ ମାତ୍ର । ଜୀବ ଏବଂ ପରମର ମିଳନ ପରି ରାଧାକୃଷ୍ଣଙ୍କର ପ୍ରେମଲୀଳା ସର୍ବଥା ସ୍ୱୀକୃତ ହୋଇଥାଏ । ତେଣୁ ରାଧାକୃଷ୍ଣଙ୍କର ପ୍ରେମ କେବଳ ଜଳ ଓ ମୀନ ପରି ନିବିଡ଼ । ରାଧାକୃଷ୍ଣଙ୍କର ଏହି ଅଲୌକିକ ପ୍ରେମଲୀଳାକୁ ଚୈତନ୍ୟ ଚରିତାମୃତ, ଭକ୍ତି ରସାମୃତ, ସିନ୍ଧୁ ଜୀବ ଗୋସ୍ୱାମୀର ପ୍ରୀତିସନ୍ଦର୍ଭ ଓ ଚଣ୍ଡୀ ଦାସ, ବିଦ୍ୟାପତି ପ୍ରଭୃତି କବିମାନେ ବହୁ ରୂପରେ ବର୍ଣ୍ଣନା କରି ଯାଇଛନ୍ତି । ଏ ସମସ୍ତ ପ୍ରଭାବରେ ଅଭିମନ୍ୟୁ ମଧ୍ୟ ବିଦଗ୍ଧ ଚିନ୍ତାମଣିର ୩୯, ୪୨, ୯୨ ଓ ୯୪ ଛାନ୍ଦରେ ପ୍ରେମତତ୍ତ୍ୱକୁ ବିଶ୍ଳେଷଣ କରିଛନ୍ତି ।

ରାଗାତ୍ମିକା ଓ ରାଗାନୁଗା ଭକ୍ତି ଦୁଇଟି ପୃଥକ୍ ମାର୍ଗ । ରାଗାନୁଗା ଭକ୍ତି ସମ୍ପର୍କରେ ରୂପ ଗୋସ୍ୱାମୀ "ଭକ୍ତି ରସାମୃତ ସିନ୍ଧୁ" ଗ୍ରନ୍ଥରେ ଲେଖିଛନ୍ତି– "ବ୍ରଜବାସୀଜନଙ୍କ ମଧ୍ୟରେ ବିରାଜମାନା" ଭକ୍ତିକୁ ରାଗାତ୍ମିକା କୁହାଯାଏ । କାରଣ ଏମାନେ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତିର ବିକାଶ । ରାଗାତ୍ମିକା ଭକ୍ତିକୁ ରୂପ ଗୋସ୍ୱାମୀ ଉକ୍ତ ଗ୍ରନ୍ଥରେ କାମରୂପା ଓ ସମ୍ବନ୍ଧରୂପା ଭେଦରେ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଏହି ଭକ୍ତିର ଅନୁସରଣକୁ ରାଗାନୁଗା ଭକ୍ତି କୁହାଯାଇଥାଏ ।

ରାଗାତ୍ମିକା ଭକ୍ତି ପରି ରାଗାନୁଗା ଭକ୍ତିକୁ ମଧ୍ୟ ରୂପ ଗୋସ୍ୱାମୀ "ଭକ୍ତି ରସାମୃତ ସିନ୍ଧୁ"ରେ ଦୁଇ ଭାଗରେ ବିଭକ୍ତ କରିଛନ୍ତି । (୧) ସମ୍ବନ୍ଧାନୁଗା ଓ (୨) କାମାନୁଗା । ସମ୍ବନ୍ଧରୂପା ରାଗାତ୍ମିକା ଭକ୍ତିର ଆଶ୍ରୟ ବା ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଭାବର ଅନୁଗମନ ସ୍ୱୀକାର କରି ଯେଉଁ ଭଜନ କରାଯାଏ, ତାହାର ନାମ ସମ୍ବନ୍ଧାନୁଗା କାମାନୁଗା । (ଭକ୍ତି ରସାମୃତ ସିନ୍ଧୁ ୧/୨/୧୫୯–୧୬୦) ସେହିପରି ନିଜ ସୁଖ ଇଚ୍ଛାରେ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାର ଇଚ୍ଛା ଯେଉଁ ଭକ୍ତିରେ ନିହିତ ତାହା କାମାନୁଗା ନାମରେ ଅଭିହିତ । ମୋଟ ଉପରେ କହିବାକୁ ଗଲେ ସମ୍ବନ୍ଧରୂପା ରାଗାତ୍ମିକା ଭକ୍ତିର ଅନୁଗାମୀ ରାଗାନୁଗା ଭକ୍ତିକୁ ସମ୍ବନ୍ଧାନୁଗା ଓ କାମରୂପା ରାଗାତ୍ମିକା ଭକ୍ତିର ଅନୁଗାମୀ ରାଗାନୁଗା ଭକ୍ତିକୁ କାମାନୁଗା କୁହାଯାଇଥାଏ ।

ଭକ୍ତିର ଅପର ନାମ ହେଉଛି ଭଗବଦ୍ ପ୍ରୀତି । ଏହି ଭଗବଦ୍ ପ୍ରୀତି କ୍ରମେ ପରିବର୍ଦ୍ଧିତ ହୋଇ ଭାବଭକ୍ତି ବା ରତି ପର୍ଯ୍ୟନ୍ତ ଗତି କରିଥାଏ । ଭକ୍ତି ରସାମୃତ ସିନ୍ଧୁରେ କୁହାଯାଇଛି– "ରତି ନିରନ୍ତର ଉଷ୍ଣ ସ୍ୱଭାବ ହେଲେ ବି ପ୍ରବଳତର ଆନନ୍ଦରୂପିଣୀ, ଲକ୍ଷଣ ପ୍ରକାଶ କଲେ ମଧ୍ୟ କୋଟି ଚନ୍ଦ୍ରଠାରୁ ସ୍ୱାଦମୟୀ" । (ଭା:ର:ସି: ୧/୩/୩୧) ବୈଷ୍ଣବ ଶାସ୍ତ୍ରରେ ରତିକୁ ୪ ପ୍ରକାର ବିଭକ୍ତ କରାଯାଇଛି । ତାହା ହେଉଛି ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ କାନ୍ତା ରତି । ଦାସ୍ୟ ରାଗାତ୍ମିକା ରତିର ଶେଷ ସୀମା ପର୍ଯ୍ୟନ୍ତ, ସଖ୍ୟ ରତିର ସୀମା ଅନୁରାଗ ପର୍ଯ୍ୟନ୍ତ, ବାତ୍ସଲ୍ୟ ରତିର ସୀମା ଅନୁରାଗର ଶେଷ ପର୍ଯ୍ୟନ୍ତ ଓ କାନ୍ତା ରତିର ଶେଷ ସୀମା ମହାଭାବ ପର୍ଯ୍ୟନ୍ତ ବର୍ଦ୍ଧିତ ହୁଏ । ଶ୍ରୀଚୈତନ୍ୟ ପନ୍ଥୀ ବୈଷ୍ଣବ ବୃନ୍ଦ କାନ୍ତା ରତି କୈନ୍ଦ୍ରିକ ରାଗାତ୍ମିକା ଥିଲେ । ସେଥିପାଇଁ ସେମାନେ ନିଜକୁ ମଞ୍ଜରୀ ଭକ୍ତିର ଅନୁଗାମୀ କଳ୍ପନା କରି ଏହି ରାଗାନୁଗା ଭକ୍ତିର ଉପାସନା କରୁଥିଲେ । ଅଭିମନ୍ୟୁ ନିଜେ ମଧ୍ୟ ରାଗାନୁଗା ଭକ୍ତିମାର୍ଗର ଉପାସକ ଥିଲେ । ସେଥିପାଇଁ ବିଦଗ୍ଧ ଚିନ୍ତାମଣି ପ୍ରଥମ ଛାନ୍ଦରେ ସେ ନିଜକୁ କାନ୍ତା ପ୍ରେମରେ ନିମନ୍ତ୍ରିତ କରିଛନ୍ତି ।

ଓଷଧୀଶାନନ ହେ ମାଗୁଛି ପଦ ଧରି (ବି:ଚି)
ଓ କରିବି ଆଲୋ ଦାସୀ ଡାକିଲେ କିଶୋରୀ ହୋ ।୧୩।

ଭକ୍ତ ସର୍ବଦା ଶ୍ରୀହରିଙ୍କର ଧ୍ୟାନ ଓ ଦର୍ଶନରେ ନିମଗ୍ନ ଥାଏ । ଭକ୍ତ ତାହାକୁ ହୃଦୟରେ ସର୍ବଦା ଆଲିଙ୍ଗନ କରିବାକୁ ଚାହେଁ । ସେହି ଭଗବାନଙ୍କ ସେବାରେ ଆତ୍ମ ସମର୍ପଣ କରି ସେ ହୃଦୟରେ ଅପୂର୍ବ ଭାବର ଆସ୍ୱାଦନ କରେ । ସେହିପରି ଭକ୍ତ ଅଭିମନ୍ୟୁ ମଧ୍ୟ ଭଗବାନଙ୍କ ନିକଟବର୍ତ୍ତୀ ହେବାପାଇଁ ପ୍ରୟାସୀ । ସେଥିପାଇଁ ସେ ମଞ୍ଜରୀ ରୂପେ ସେବା କରି ମାଧୁର୍ଯ୍ୟକୁ ସେବା କରିବାକୁ ଚାହାନ୍ତି । କାରଣ ନାରୀଭାବ ହେଉଛି ଅହଂଶୂନ୍ୟ । ମନୁଷ୍ୟ ଅହଂଶୂନ୍ୟ ନ ହେଲେ ଭଗବାନଙ୍କ ନିକଟବର୍ତ୍ତୀ ହୋଇପାରିବ ନାହିଁ । ତେଣୁ କବି ଉପରୋକ୍ତ ଭକ୍ତିରେ ନାରୀଭାବ ପୋଷଣ କରିଛନ୍ତି ଏବଂ ଶ୍ରୀରାଧାଙ୍କର ଅନୁଗ୍ରହରୁ ମହାଭାବ ଲାଭ କରିବାକୁ ବ୍ୟାକୁଳିତ ହୋଇଛନ୍ତି । ସାଗର ବକ୍ଷରେ ନଦୀ ମିଶି ନିଜର ସତ୍ତା ହରାଇଲା ପରି ରାଧାକୃଷ୍ଣଙ୍କ ସହ ମିଶିଯିବା ପାଇଁ ପ୍ରବଳ ଉତ୍କଣ୍ଠା ପ୍ରକାଶ କରିଛନ୍ତି ।

ରାଧା ହେଉଛନ୍ତି ମହାଭାବ ସ୍ୱରୂପିଣୀ । ସେ ପ୍ରେମ ଆରାଧିକା ଓ ଅପ୍ରାକୃତ ପ୍ରେମର ବିଗ୍ରହ ରୂପିଣୀ ଭାବରେ ପରିକୀର୍ତ୍ତିତା । କୃଷ୍ଣଙ୍କ ପ୍ରତି ତାଙ୍କ ହୃଦୟରେ ଯେଉଁ ପ୍ରେମ ଭାବ ଜାତ ହୋଇଥିଲା ତାହା ରାଧାଙ୍କୁ ନିଜର କୁଳ, ଶୀଳ, ମାନ,

ଅପମାନ ଇତ୍ୟାଦିକୁ ଅତିକ୍ରମ କରି କୃଷ୍ଣଙ୍କ ସହିତ ମିଳିତ ହେବା ପାଇଁ ଯମୁନା କୂଳକୁ ନେଇଯାଇଛି । ଯାହା ହୃଦୟରେ ସବୁବେଳେ କୃଷ୍ଣ ଭାବ ତାଙ୍କଠାରୁ କୃଷ୍ଣ କେବେ ଦୂରରେ ରହି ନ ପାରନ୍ତି । ବାସ୍ତବିକ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଭାଷାରେ– "କୃଷ୍ଣ ବିନା ରାଧା ଏବଂ ରାଧା ବିନା କୃଷ୍ଣଙ୍କର ଅନ୍ୟ କେହି ଆଶ୍ରୟ ନାହିଁ ।" ସେ ପୁନଶ୍ଚ କହିଛନ୍ତି– ଯାହାର ବର୍ଣ୍ଣ ନାହିଁ ସେ କୃଷ୍ଣ, ଦାର୍ଶନିକଙ୍କ ମତରେ ସେ ବର୍ଣ୍ଣର ଅଭାବ । ସୁତରାଂ କୃଷ୍ଣ ଅରୂପ ଏବଂ ରାଧା ତାହାଙ୍କର ପ୍ରଭା । କୃଷ୍ଣ ପୁରୁଷ ଏବଂ ରାଧା ପ୍ରକୃତି । କୃଷ୍ଣ ଇଚ୍ଛାମୟ– ରାଧିକା ତାହାଙ୍କର କର୍ମସାଧିକା ।"

(ଉତ୍କଳ ସାହିତ୍ୟ, ୨୮ଶ ଭାଗ , ସପ୍ତମ ସଂଖ୍ୟା)

ମୋଟ ଉପରେ ରାଧାଙ୍କ ହୃଦୟ ମଧ୍ୟରେ ସର୍ବଦା ଶ୍ରୀକୃଷ୍ଣଙ୍କ ରୂପ ନର୍ତ୍ତନ କରୁଥାଏ । ରାଧା କୃଷ୍ଣଙ୍କ ବିନା ବଞ୍ଚିବା ଅସମ୍ଭବ । ସେଥିପାଇଁ ଅତ୍ୟନ୍ତ ସାହସିନୀ ହୋଇ ସେ ଘୋଷଣା କରିଛନ୍ତି–

"ବାଜୁ ଦୂଷଣ ଘୋଷଣ
ହେଲେ ହେବ ପଛେ ନାନା କଷଣ ଗୋ
ମୁଁ ତ କଲିଣି ନିନ୍ଦା ଭୂଷଣ ।
ସଜନୀ ଗୋ ।ଘୋଷା।
ଭୟକୁ ତେଜି ବହନ
ବେଗେ ଦେଖାଅ ସେ କାମ ମୋହନ ଗୋ
ହେଳା କଲେ ତ ହେଲି ଦହନ ।
ସଜନୀ ଗୋ ।ଘୋଷା।      (ବି:ଚି: ୪୮ ଛାନ୍ଦ)

ଏହା ହିଁ ରାଗର ପରମ ପ୍ରକାଶ । କବିଙ୍କ ଅନ୍ତର ସବୁବେଳେ ମଞ୍ଜରୀ ରୂପେ ରସସିକ୍ତ ଥିଲା । ସେଇଥି ପାଇଁ ତାଙ୍କ ରଚନାର ଧାରା ଅତ୍ୟନ୍ତ ସରଳ, ସାବଲୀଳ ପଦାବଳୀ ତଥା ମଧୁର ରସର ଅବତାରଣାରେ ଭରପୁର ହୋଇଥିଲା ।

କେବଳ ସେତିକି ନୁହେଁ ବ୍ରଜମଣ୍ଡଳୀର କାନ୍ତାରତି ବ୍ୟତୀତ ଦାସ୍ୟ, ସଖ୍ୟ ଓ ବାତ୍ସଲ୍ୟ ରତିର ରାଗାତ୍ମିକା ରୂପ କବି ଲେଖନୀରେ ସୁମଞ୍ଜୁଳ ରୂପ ଧାରଣ କରିଛି । ତନ୍ମଧ୍ୟରୁ ବାତ୍ସଲ୍ୟ ରତିର ଏକ ଉଦାହରଣ ଦିଆଯାଇପାରେ । ଯଥା:–

"ଧୀରେ ଯେନ କାନନରେ କୃଷ୍ଣ ବିକଶିତ
ବାତ୍ସଲ୍ୟ ମମତା ଘେନି ଭାଳୁଛନ୍ତି ମାତ
ମୋ କଳା ମାଣିକରେ ।"

କବି ଅଭିମନ୍ୟୁ ଗୌଡ଼ୀୟ ବୈଷ୍ଣବ ଥିବାରୁ କାବ୍ୟର ବିଭିନ୍ନ ସ୍ଥାନରେ ପ୍ରେମଭକ୍ତିର ବର୍ଣ୍ଣନା କରିଛନ୍ତି । ଏଥିରୁ ପ୍ରେମଭକ୍ତି ପ୍ରତି ତାଙ୍କର କିପରି ଏକାନ୍ତ ନିଷ୍ଠା ଥିଲା ତାହା ସ୍ପଷ୍ଟ ବାରି ହୋଇ ପଡ଼େ । ତେଣୁ ସେ ପୁନଶ୍ଚ ପ୍ରଥମ ଛାନ୍ଦରେ ଲେଖିଛନ୍ତି–

"ଡାକି ମୁଁ କହୁଛି ରାଗମାର୍ଗ ଭକ୍ତ ଜନେ
ତେରି କର୍ଣ୍ଣ ସସ୍ନେହତା କର ମୋ ବଚନେ ।"

ସୁତରାଂ ଅଭିମନ୍ୟୁ ଥିଲେ ନିଷ୍ଠାପର ରାଗାନୁଗା ଭକ୍ତି ଉପାସକ । ଏପରି ନିଷ୍ଠାପରତା ପ୍ରେମତତ୍ତ୍ୱର ବିଶ୍ଳେଷଣ ତାଙ୍କ "ବିଦଗ୍ଧ ଚିନ୍ତାମଣି" କାବ୍ୟକୁ ବୈଷ୍ଣବ ଧର୍ମର ଏକ ଅମୂଲ୍ୟ ରତ୍ନ ସ୍ୱରୂପ ଗଠନ କରିପାରିଛି । ଅଧ୍ୟାପକ ନଟବର ସାମନ୍ତରାୟଙ୍କ ମତରେ– "ବିଦଗ୍ଧ ଚିନ୍ତାମଣି ବିଦଗ୍ଧ ମାଧବଠାରେ କଥାବସ୍ତୁ ପ୍ରସଙ୍ଗରେ ବହୁ ପରିମାଣରେ ଋଣୀ × × × × ରୂପ ଗୋସ୍ୱାମୀ ଯେଉଁ ନାଟକକୁ ପୂର୍ବାନୁରାଗର ଏକ ଅଭିନବ ସମ୍ପଦ କରିବାକୁ ଚେଷ୍ଟା କରିଥିଲେ, ସାମନ୍ତସିଂହାର ତାଙ୍କର ଅପୂର୍ବ ବସ୍ତୁ ନିର୍ମାଣେ ପ୍ରଜ୍ଞା ଓ କବି ହୃଦୟ ସାହାଯ୍ୟରେ ସେହି ବିଷୟ ବସ୍ତୁକୁ ପ୍ରାସଙ୍ଗିକ ଗ୍ରହଣ କରି ପୂର୍ବାନୁରାଗର ଏକ ଗୀତିମୟ ପ୍ରାଣ ପୂର୍ଣ୍ଣ ଅଭିବ୍ୟକ୍ତ ରୂପେ ଉପସ୍ଥାପିତ କରିପାରିଛନ୍ତି । ବିଦଗ୍ଧ ଚିନ୍ତାମଣିରେ ପୂର୍ବାନୁରାଗରେ ଯେଉଁ ଭାବଲୀଳା କଲ୍ଲୋଳ ଘାତ ପ୍ରତିଘାତ ପାଇ ନିତ୍ୟ ନୃତ୍ୟ ଚଞ୍ଚଳ, ସେଗୁଡ଼ିକ ଗୀତିମୟ ଅପୂର୍ବଛନ୍ଦ ବିନ୍ୟାସରେ ଜୀବନ୍ୟାସ ପାଇ ଓଡ଼ିଆଙ୍କ ହୃଦୟରେ ଚିର ଅମର । ପରସ୍ପରକୁ ଏପରି ଜନ୍ମାନ୍ତର ଦେଇ ଅମର କରାଇବା ପ୍ରାଚୀନ ଓଡ଼ିଆ କାବ୍ୟ ସାହିତ୍ୟରେ ଆଉ କେଉଁଠି ଅଛି ?" (ବିଦଗ୍ଧ ଚୂଡ଼ାମଣି, ଅଧ୍ୟାପକ ନଟବର ସାମନ୍ତରାୟ– ଝଙ୍କାର– ଏକମ ବର୍ଷ, ନବମ ସଂଖ୍ୟା ପୃ–୮୪୩–୮୫୦) । ମୋଟ ଉପରେ ଅଭିମନ୍ୟୁଙ୍କର କୃଷ୍ଣଲୀଳାତ୍ମକ ରଚନା ବିଦଗ୍ଧ ଚିନ୍ତାମଣି କେବଳ ହିଁ ରାଗାନୁଗା ଭକ୍ତିରେ ମୁଖରିତ ହୋଇଛି ।

ଗବେଷକ, ଓଡ଼ିଆ ବିଭାଗ,
କ୍ୱାର୍ଟର ନମ୍ବର ୨–ଆର୍‌ ବି, (ପ୍ଲଟ୍‌) ୫୭/୧୧,
ୟୁନିଟ୍‌–୯, କଟକ ।



ଜନ୍ମସ୍ଥଳୀ ନୀଳକଣ୍ଠପୁରଠାରେ ଆୟୋଜିତ ଶହୀଦ ବାଜି ରାଉତଙ୍କ ୬୫ତମ ଶ୍ରାଦ୍ଧୋତ୍ସବରେ
କାମାକ୍ଷାନଗର ବିଧାୟକ ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକଙ୍କ ଉଦ୍‌ବୋଧନ ।

# ଜାତି ଇତିହାସ ଜାତିର ନିର୍ଝର

• ଡକ୍ଟର ଦୁର୍ଗାଚରଣ ମହାନ୍ତି

ଜାତିର ଇତିହାସ ଯଥାର୍ଥରେ ଜାତୀୟ ପ୍ରେରଣାର ଉତ୍ସ । ଜାତୀୟ ଇତିହାସର ଅନୁଶୀଳନ ଦ୍ୱାରା ଜାତି ପ୍ରାଣରେ ଯେଉଁ କର୍ମ ପ୍ରେରଣା ସଞ୍ଚାରିତ ହୁଏ, ତାକୁ ସଫଳ କରି ସାରସ୍ୱତ କ୍ଷେତ୍ରରେ ବହୁ କର୍ମବୀର ଜାତୀୟ ଜୀବନର ବିକାଶ ସାଧନ କରନ୍ତି ।

ଇତିହାସ ଜାତୀୟତା ଗଠନରେ ପ୍ରଧାନ ସହାୟ, ଏହା ଦ୍ୱାରା ଜାତି ଦେଶାତ୍ମବୋଧ ଜ୍ଞାନ ଲାଭ କରେ । ସୁଦୂର ଅତୀତର ସ୍ମୃତି ଯେପରି ଏହାର ଜାଗରଣ କରାଏ, ଭବିଷ୍ୟତ ଉନ୍ନତିର ମାର୍ଗ ମଧ୍ୟ ସୂଚିତ ହୁଏ । ଲୋକ ମୁଖରେ ଉଦ୍‌ଜୀବିତ ହେଉଥିବା ଐତିହାସିକ ସ୍ମୃତି ସାହିତ୍ୟ ସୃଷ୍ଟିରେ ସମ୍ୟକ ସହାୟତା ପ୍ରଦାନ କରେ ।

ସ୍ୱଦେଶ ପାଣି ପବନ, ସ୍ୱଦେଶ ସ୍ୱାଭିମାନ, ସ୍ୱଦେଶୀୟ ସାମାଜିକ ନିୟମ, ସ୍ୱଦେଶ ଇତିହାସ, ଜାତୀୟ ସମସ୍ୟା ଓ ସମ୍ପର୍କକୁ ଯଦି ସାହିତ୍ୟ ପ୍ରତିଫଳିତ କରି ନପାରେ ସେ ସାହିତ୍ୟ ଯେତେ ଆଧୁନିକ ହେଲେ ମଧ୍ୟ ଗଣ ମାନସରେ ଆଶାନୁରୂପ ପ୍ରଭାବ ସୃଷ୍ଟି କରିପାରେ ନାହିଁ । ଡଃ କାହ୍ନୁଚରଣଙ୍କ ଭାଷାରେ "ମଣିଷ ନିଜକୁ ତା'ର ସାହିତ୍ୟରେ, ତା'ର କଳାରେ, ତା'ର ଶିଳ୍ପରେ ଅନୁକରଣ କରେ । ଯେଉଁଠି ଯେଉଁ ସାହିତ୍ୟରେ ସେ ନିଜକୁ ପାଏ, ତାକୁ ହିଁ ଆପଣାର କରିନିଏ । ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ, ଫକୀରମୋହନ, ଗୋପବନ୍ଧୁ – ସାହିତ୍ୟ ଏତେ ଆପଣାର ମନେହେବା ମୂଳରେ ଏହି ଚିରନ୍ତନ ଜିଜ୍ଞାସାଟା ହିଁ ସତ୍ୟ" । ବ୍ୟଷ୍ଟି ଓ ସମଷ୍ଟି ଉଭୟ ଆତ୍ମବାନ, ଉଭୟ ଏକ ସତ୍ତା । ସତ୍ତ୍ୱକୁ ବା ଏକ ଏକ ଶକ୍ତି । ବ୍ୟକ୍ତିର ଦେହ, ପ୍ରାଣ, ମନର ଅନ୍ତରାଳରେ ଯେପରି ଏକ ଚିନ୍ମୟ ଆତ୍ମପୁରୁଷ, ଏକ ଅନ୍ତରାତ୍ମା ବିଦ୍ୟମାନ ରହି ଜନ୍ମ ଜନ୍ମାନ୍ତରେ ତା'ର ବିବର୍ତ୍ତନ ଧାରା ନିୟନ୍ତ୍ରଣ କରିଚାଲିଥାଏ, ସେହିପରି ଆମ ଜାତୀୟ ଏବଂ ରାଷ୍ଟ୍ରୀୟ ଜୀବନର ଅନ୍ତରାଳରେ ନାନା ଘଟଣାବଳୀ ହିଁ ବହୁ ବିବିଧ ପରିସ୍ଥିତି ଏବଂ ବାହ୍ୟ ପରିବେଶ ସୃଷ୍ଟି କରେ । କିନ୍ତୁ ଏକ ଜାତୀୟ ଆତ୍ମା, ଜାତୀୟ ପୁରୁଷ (national soul) ବା ଗୋଷ୍ଠୀବଦ୍ଧ ଆତ୍ମା ଚିରକାଳ ବର୍ତ୍ତମାନ ଥାଏ । ଏହି ଜାତୀୟ ଅନ୍ତରାତ୍ମା ହିଁ ଜାତୀୟ ସ୍ୱଧର୍ମ ଓ ସାଧନା । ଏହାର ବହିଃପ୍ରକାଶ ହିଁ ଜାତୀୟ ଜୀବନର ପ୍ରଧାନ କର୍ତ୍ତବ୍ୟ ।

ସବୁ ଦେଶର ସାହିତ୍ୟ ଆଜି ଦେଶ, କାଳ, ପାତ୍ର ସହିତ ବିଶ୍ୱର ସକଳ ମାନବ ସମାଜ ପାଇଁ ନିଜ ଦାୟିତ୍ୱ ସମ୍ପାଦନ କରିବାକୁ ବଦ୍ଧପରିକର । ସାହିତ୍ୟ ଚିରକାଳ ଗତିଶୀଳ । ଗତିଶୀଳତା ସାହିତ୍ୟର ଧର୍ମ । ମୁକ୍ତଭାବ ସାହିତ୍ୟର ସୌନ୍ଦର୍ଯ୍ୟ । କାଳର ସ୍ରୋତ ପ୍ରବାହୀ ଚେତନାକୁ ନିଜ ଦେହରେ ପ୍ରତିବିମ୍ବିତ କରି ଆରେଇ ଚାଲେ ସାହିତ୍ୟ । ସମୟର ପ୍ରାଣ ସ୍ପନ୍ଦନକୁ ଅନୁଭବ କରିବାରେ ସାହିତ୍ୟର ସଫଳତା । ଜାତିର, ଜାତୀୟ ଆଚାର, ଯଥାର୍ଥ ଅନୁଭୂତିକୁ ନିଜ ଦେହରେ ପ୍ରତିଫଳିତ କରି ସ୍ୱଦେଶୀୟ ଭାବକୁ ଆଦିକ ମୂଳ ଦେଇ ସାହିତ୍ୟ ଗୌରବ ବିମଣ୍ଡିତ ହୁଏ । ଓଡ଼ିଆ ସାହିତ୍ୟର ପରିସର ଯେପରି ଦୀର୍ଘ ଓ ସମୃଦ୍ଧ ସେହିପରି ବ୍ୟାପକ । ଓଡ଼ିଶାର ସାମାଜିକ ଜୀବନ, ସାଂସ୍କୃତିକ ଚେତନା ତଥା ଐତିହାସିକ ବିବର୍ତ୍ତନ ଓଡ଼ିଆ ସାହିତ୍ୟର ପୃଷ୍ଠଭୂମି ରୂପେ ଦଣ୍ଡାୟମାନ ।

ଓଡ଼ିଆ ସାହିତ୍ୟର ପ୍ରଥମ ପ୍ରାଚୀନ ସୃଷ୍ଟି ଲୋକ ସାହିତ୍ୟ । ଚର୍ଯ୍ୟାଗୀତି ବା ତତ୍‌ପୂର୍ବରୁ ମୁଖେ ମୁଖେ ସୃଷ୍ଟି ହୋଇଥିବା ସାହିତ୍ୟଠାରୁ ଆରମ୍ଭକରି ଏଯାବତ୍ ଓଡ଼ିଆ ସାହିତ୍ୟର ଦିଗନ୍ତ ବିସ୍ତାରୀ ପରିଧିରେ ଏଇ ସତ୍ୟ ପ୍ରତୀୟମାନ କରି ହୁଏ । ଜୀବନ ଜିଜ୍ଞାସାର ଅପୂର୍ବ ସମନ୍ୱୟ ଓ ଜାତୀୟ ସୁଷମା ମଣ୍ଡିତ, ଦେଶୀୟ ସୌନ୍ଦର୍ଯ୍ୟ ଚିତ୍ର ଓଡ଼ିଆ ସାହିତ୍ୟରେ ଉପନ୍ୟାସ, କବିତା, ଗଳ୍ପ ଏବଂ ସମାଲୋଚନାର ସ୍ଥାନ ଗୁରୁତ୍ୱପୂର୍ଣ୍ଣ । ଏହାର ପରିସର ଆହୁରି ବ୍ୟାପକ, ବିସ୍ତୃତ ଏବଂ ବଳିଷ୍ଠ ହେବା ବାଞ୍ଛନୀୟ ।

ସବୁଜ ବନାନୀ, ପ୍ରାକୃତିକ ନିର୍ଝର ପୃଥିବୀକୁ ପୁଷ୍ଟ କରିଥାଏ ରସ, ଗନ୍ଧର ଆମୋଦରେ । ନିର୍ଝର ବାରି ସେଚନର ଫଳ ସ୍ୱରୂପ ଆତ୍ମପ୍ରକାଶ କରେ, ସୁବିସ୍ତୀର୍ଣ୍ଣ, ସୁଶ୍ୟାମଳ, ପ୍ରାକୃତିକ ଦୃଶ୍ୟାବଳୀ ବନ ପର୍ବତସ୍ଥ ବୃକ୍ଷ ଲତାଦି ମୁକ୍ତ ଝରଣାର ଆଲିଙ୍ଗନରେ ପରିବର୍ଦ୍ଧିତ, ପରିପୁଷ୍ଟ ଏବଂ ଗତିଶୀଳ ହୋଇଥାନ୍ତି । ସବୁଜ ବନାନୀ ପରି ଜାତିର ଇତିହାସ, ଜାତିର କୃତି, କୃଷି ଏବଂ ପ୍ରଗତି ସର୍ବାଦୌ ପ୍ରଣିଧାନଯୋଗ୍ୟ । ଜାତୀୟ ଐତିହ୍ୟ ଆଧୁନିକତାକୁ ଉଦ୍‌ବୁଦ୍ଧ କରେ, ପରିପୁଷ୍ଟ କରେ; ଜାତୀୟତା, ଜାତୀୟ ଏକତା । ଜାତିଆଣ ଭାବର ସମୃଦ୍ଧି ଘଟାଏ । ଯେଉଁ ଦେଶର ଯେଉଁ ଜାତିର ଇତିହାସ ଯେତେ ସମୃଦ୍ଧ, ଯେତେ ବ୍ୟାପକ, ସେ ଦେଶ ସେତେ ପ୍ରଗତିଶୀଳ, ସେ ଜାତି ସେତେ ଅଗ୍ରସର ।

ନାନା ବିଦ୍ରୋହ, ବିପ୍ଳବ, ସଂଘର୍ଷ ମତବାଦର ଶୋଭାଯାତ୍ରାରେ ସଂଶ୍ଳିଷ୍ଟ ହୋଇଥିବା ସାହିତ୍ୟକୁ ବିଶ୍ୱ ପ୍ରସାରୀ ନକଲେ ଏହାର ସର୍ବାଙ୍ଗରେ ବିଶ୍ୱମୟ ଚେତନାର ପ୍ରତିଫଳନ ନ ହେଲେ କୌଣସି ସାହିତ୍ୟ, କାଳଜୟୀ ସ୍ୱାକ୍ଷର ବହନ କରିବାକୁ ସମର୍ଥ ହୋଇ ନ ପାରେ ।

ଜାତିର ବିକାଶ ନ ହେଲେ ବ୍ୟକ୍ତିର ବିକାଶ ଅସମ୍ଭବ । ବ୍ୟକ୍ତିର ନିରାପତ୍ତା ତଥା ବିକାଶ ଉନ୍ନତ ଜାତି ଗଠନ ପାଇଁ ଅପରିହାର୍ଯ୍ୟ । ପ୍ରତ୍ୟେକ ଜାତି ତା'ର ବ୍ୟକ୍ତି ବିଶେଷଙ୍କଠାରୁ ନିର୍ଦ୍ଦିଷ୍ଟ ଆଚରଣ ଆଶା କରିଥାଏ ଏବଂ ଏହି ଜାତୀୟ ଆଚରଣ ହିଁ ଜାତୀୟ ସଂହତି ରକ୍ଷା କରି ଜାତିର ପ୍ରଗତି ପାଇଁ ସୋପାନ ପ୍ରସ୍ତୁତ କରେ । ମୋଟ ଉପରେ କହିବାକୁ ଗଲେ ଜାତୀୟ ଚରିତ୍ର ଗଠନ ପାଇଁ ବ୍ୟକ୍ତିର ଚରିତ୍ର ଗଠନ ସର୍ବାଦୌ କର୍ତ୍ତବ୍ୟ । ବ୍ୟକ୍ତି ବିଶେଷ ଜାତିର ପ୍ରତିନିଧିତ୍ୱ କରିବା ପାଇଁ ଜାତୀୟ ଦର୍ଶନକୁ ବଞ୍ଚାଇ ରଖିବା ଦରକାର । ନିଜର ତଥା ନିଜ ଜାତିର ଉନ୍ନତି ପାଇଁ ଜାତୀୟତାବୋଧ ପ୍ରତ୍ୟେକ ନାଗରିକର ଏକାନ୍ତ କାମ୍ୟ । ଜାତୀୟ ଆଚରଣ, ଶୃଙ୍ଖଳା, ଜାତୀୟ ଚରିତ୍ରଗଠନ, ଜାତୀୟତାବୋଧର ବିକାଶ ଲାଗି ନାଗରିକ ନିଷ୍ଠା ଏକାନ୍ତ

ଆବଶ୍ୟକ । ଅନେକ ଜାତିପ୍ରାଣ ବ୍ୟକ୍ତି, ଜାତି ପାଇଁ ପ୍ରାଣୋତ୍ସର୍ଗ କରି ଜାତିର ବିକାଶ ତଥା ସ୍ଥିତିକୁ ସୁଦୃଢ଼ କରିଛନ୍ତି । କାରଣ ପ୍ରତ୍ୟେକ ବ୍ୟକ୍ତିର ନୈତିକ ଆଚରଣକୁ ନେଇ ଜାତୀୟ ଆଚରଣର ପରିଚୟ ମିଳେ ।

ବିଭିନ୍ନ ସମୟରେ ଜାତିର ଘଡ଼ିସନ୍ଧି ମୁହୂର୍ତ୍ତରେ ଅନେକ ମନୀଷୀ ବାହାରି ଜାତିର ଉତ୍ତରଣ ତଥା ରକ୍ଷା ପାଇଁ ନିଜର ସମସ୍ତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଜାତି ଗଠନରେ ଲାଗି ପଡ଼ନ୍ତି । ତାଙ୍କର ପ୍ରଚେଷ୍ଟା ବଳରେ ଜାତିର ଜାଗ୍ରତି ନୂତନ ମୋଡ଼ ନିଏ । ଏହିଭଳି ନେତୃ ସ୍ଥାନୀୟ ବ୍ୟକ୍ତିବୃନ୍ଦ ଜାତିର ପୂଜ୍ୟ, ନମସ୍ୟ ଏବଂ ପ୍ରାତଃସ୍ମରଣୀୟ ହୋଇଥାନ୍ତି । ଏହି ଜାତୀୟ ଚରିତ୍ର ସାଧାରଣର ଦୃଷ୍ଟି ଆକର୍ଷଣ କରିଥାଏ । ଓଡ଼ିଆ ସାହିତ୍ୟର ରାଧାନାଥ, ମଧୁସୂଦନ, ଫକୀର ମୋହନ ଓ ଗୌରୀଶଙ୍କର ପ୍ରମୁଖ ବହୁ କୃତ ବିଦ୍ୟ ଲେଖକ ଓ କର୍ମୀ ଜାତିକୁ ଆତ୍ମବିଶ୍ୱାସଶୀଳ କରିବା ନିମନ୍ତେ ଉଦ୍ୟମ କରିଥିଲେ । ଓଡ଼ିଆର ଗୌରବପୂର୍ଣ୍ଣ ପ୍ରାଚୀନ ଇତିହାସ ଜାତିକୁ ପ୍ରେରଣା ଦାନ କରିବାକୁ ସମର୍ଥ । ତେଣୁ ଜାତୀୟ ଜୀବନରେ ଉତ୍ସାହ, ଉଦ୍ଦୀପନା ଆହରଣ କରିବାକୁ ହେଲେ ରାଧାନାଥ, ଫକୀରମୋହନ, ଗୋପବନ୍ଧୁ ପ୍ରମୁଖଙ୍କ ରଚନାବଳୀ ଅଧ୍ୟୟନ କରିବାକୁ ହୁଏ । ଉତ୍କଳର ଜରା ଜର୍ଜର ଦେଉଳ, ଐତିହାସିକ କୀର୍ତ୍ତୀସ୍ତୁପ କବିଙ୍କର ଚକ୍ଷୁରେ ଏକାନ୍ତ ଜୀବନ୍ତ ହୋଇ ଉଠିଛି । ରାଧାନାଥଙ୍କ "ଚିଲିକା", "ଦରବାର", "ବାରବାଟୀ" ଅତୀତର ଗୌରବ ଉଲ୍ଲେଖ କରି ଆଧୁନିକ ଉତ୍କଳର ଶୋଚନୀୟତା ବିଷୟରେ ପରୋକ୍ଷରେ ଦେଶବାସୀଙ୍କୁ ଆତ୍ମ–ସଚେତନ ହେବା ନିମନ୍ତେ ଇଙ୍ଗିତ ପ୍ରଦାନ କରିଛି ।

ରାଧାନାଥ ଯୁଗ ପରେ ସତ୍ୟବାଦୀ ଯୁଗର ଲେଖକମାନେ, ସଂଘର୍ଷମୟ ପରିସ୍ଥିତି ଦେଇ ଗତି କରୁଥିବା ଜାତିକୁ ନାନା ଆଶା ଓ ଆକାଙ୍କ୍ଷାରେ ପ୍ରାଣିତ କରି ଆତ୍ମମର୍ଯ୍ୟାଦା ସମ୍ପର୍କରେ ଅବହିତ କରିବାକୁ ଦୃଢ଼ ଉଦ୍ୟମ କଲେ । ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀ କର୍ମୀମାନଙ୍କର ସ୍ରଷ୍ଟା ଓ ପଥ ପ୍ରଦର୍ଶକ । ଉତ୍କଳରେ ଭାରତୀୟ ଜାତୀୟ ଆନ୍ଦୋଳନର ପୁଣ୍ୟ ପ୍ରବାହକୁ ପଥରୁଦ୍ଧ କରି ମହାଭାରତୀୟ ତରଙ୍ଗରେ ଉତ୍କଳର ପ୍ରବାହକୁ ମିଶାଇ, ଦେଶ ନିମନ୍ତେ ସେ ନିଜକୁ ନିୟୋଜିତ କରିଥିଲେ । ନେତୃତ୍ୱ ଗ୍ରହଣ କରିଥିଲେ । ନୂଆ ଯୁଗର ସତ୍ୟବାଦୀ ସାହିତ୍ୟକଙ୍କ ପ୍ରେରଣାର ଉତ୍ସ ତାଙ୍କଠାରେ ନିହିତ ଥିଲା ।

'ବନ୍ଦୀର' ଆତ୍ମକଥାରେ ଏକଥା ସୁସ୍ପଷ୍ଟ–

"ପୂର୍ବପୁରୁଷର ପବିତ୍ର ଶ୍ମଶାନ
ଦେଶର, ଜାତିର ଗଉରବ ଗାନ
ପୁଣ୍ୟ ଜନ୍ମମାଟି ପୁଣ୍ୟ ଦେବାଳୟ
ଉଦ୍ଧାରିବା ପାଇଁ କଲେ ତନୁକ୍ଷୟ
ମାନବ ଜୀବନ ହୁଅଇ ସଫଳ
ଏ ମହାଦୀକ୍ଷା କି ବୁଝିବ ଉତ୍କଳ ?"

ଏହି କବିତାଂଶରେ ଗୋପବନ୍ଧୁଙ୍କର ହୃଦୟର ଆକାଙ୍କ୍ଷା ରମଣୀୟ ଅଭିବ୍ୟକ୍ତିରେ ବେଶ୍ ପରିସ୍ଫୁଟ । ଗୋପବନ୍ଧୁଙ୍କ କବିତାର ଏହି ମହାମନ୍ତ୍ର ସମସାମୟିକ ଲେଖକମାନଙ୍କୁ ନୂତନ ଆଲୋକ ଓ ପ୍ରେରଣା ଦାନ କରିବାକୁ ସମର୍ଥ ହୋଇଛି । ଏହି ପ୍ରେରଣା ସତ୍ୟବାଦୀ ସାହିତ୍ୟରେ ଐତିହାସିକ ଅବତରଣ କରିବା ସଙ୍ଗେ ସଙ୍ଗେ ସମଗ୍ର ଭାବରେ ସମସାମୟିକ ସାହିତ୍ୟ ସୃଷ୍ଟିର ମୂଳମନ୍ତ୍ର । ବୈଦେଶିକ ଶାସନରୁ ଏ ଦେଶକୁ ସ୍ୱାଧୀନ କରିବା ନିମନ୍ତେ ଜାତୀୟ ଆନ୍ଦୋଳନରେ ଲମ୍ଫ ଦେବା ସଙ୍ଗେ ସଙ୍ଗେ ସତ୍ୟବାଦୀ ସାଧକବୃନ୍ଦ ନିଜ ସାହିତ୍ୟ ସୃଷ୍ଟି ମାଧ୍ୟମରେ ଦେଶ ଓ ଜାତିର ଅତୀତ ଗୌରବଗାନ କରି ଓଡ଼ିଆ ଜାତିକୁ ଜାତୀୟତାରେ ଉଦ୍‌ବୁଦ୍ଧ କରିବାକୁ ଇଚ୍ଛା କରିଥିଲେ । ଉତ୍କଳର ଅନ୍ୟତମ ବରେଣ୍ୟ ନେତା ମନସ୍ୱୀ ମଧୁସୂଦନ ଜାତୀୟ ଜୀବନରେ ଜାତି ଇତିହାସର ଉପଯୋଗିତା ବିଷୟ ମର୍ମସ୍ପର୍ଶୀ ଭାଷାରେ ସ୍ୱକୀୟ କବିତାଂଶରେ ପ୍ରକାଶ କରିଛନ୍ତି–

"ଜାତି ଇତିହାସ ଜାତିର ନିର୍ଝର
ତହୁଁ ବହେ ସଦା ଜାତି ପ୍ରାଣଧାର
ସେ ଧାରରୁ ନୀର ପିଉଛ ଯେ ନର
ସେହି ହେବ ଏକା ଜାତି କର୍ଣ୍ଣଧାର"

ଜାତିର ଇତିହାସ ଯଥାର୍ଥରେ ଜାତୀୟ ପ୍ରେରଣାର ଉତ୍ସ । ଜାତିର ଇତିହାସ ଅନୁଶୀଳନରେ ଜାତି ପ୍ରାଣରେ ଯେଉଁ କର୍ମ ପ୍ରେରଣା ସଞ୍ଚାରିତ ହୁଏ ତାକୁ ସଫଳ କରି ବହୁ କର୍ମବୀର ଜାତୀୟ ଜୀବନର ବିକାଶ ସାଧନ କରନ୍ତି । ଇତିହାସର ଉପଯୋଗିତାକୁ ମୁକ୍ତ କଣ୍ଠରେ ସ୍ୱୀକାର କରି "ବାରବାଟୀ ଦୁର୍ଗ" ଉପନ୍ୟାସିକାରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ଲେଖିଛନ୍ତି– "ଇତିହାସ ଜାତୀୟତା ଗଠନର ପ୍ରଧାନ ସହାୟ । ଏହା ଜାତୀୟ ଜୀବନତରିଙ୍ଗ । ଏହା ଦ୍ୱାରା ଜାତି ଆତ୍ମଜ୍ଞାନ ଲାଭ କରେ । ସୁଦୂର ଅତୀତର ସ୍ମୃତି ଯେପରି ଏହା ଜାଗରଣ କରାଏ । ଭବିଷ୍ୟତ ଉନ୍ନତିର ମାର୍ଗ ମଧ୍ୟ ସେହିପରି ଦେଖାଇ ଦିଏ ।"

"ବୀର ଭାରତ", "ଶାନ୍ତିଧାରା", "ଭାବେଭୋଳା"ରେ ଓଡ଼ିଆ ଜାତିର ଗୌରବୋଜ୍ଜ୍ୱଳ କାହାଣୀ ଖୋର୍ଦ୍ଧାର ପାଇକ ବିଦ୍ରୋହ "ବାରବାଟୀ ଦୁର୍ଗ"ରେ ଉତ୍କଳର ଗୌରବମୟ ଅତୀତର ସମୁଜ୍ଜ୍ୱଳ ଦୃଷ୍ଟାନ୍ତ, ମନୀଷୀ ନୀଳକଣ୍ଠଙ୍କର "କୋଣାର୍କ"ରେ ଉତ୍କଳର ସମୃଦ୍ଧ ନୌ–ବାଣିଜ୍ୟ, ବୀରତ୍ୱ, କଳାଗତ ଉତ୍କର୍ଷାଦିର ବର୍ଣ୍ଣନା ଦେଶବାସୀଙ୍କ ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ କରିଛି ଏବଂ ଦେଶ ଦଶ ପାଇଁ ସ୍ୱକୀୟ କର୍ତ୍ତବ୍ୟ ବିଷୟରେ ସଚେତନ କରିଛି ।

ଇତିହାସର ଭିତ୍ତିଭୂମି ଉପରେ ଦଣ୍ଡାୟମାନ ସାହିତ୍ୟ ସଂସ୍କୃତି ବାସ୍ତବିକ ଜୀବନ୍ତ, ଜାତୀୟ ଗୌରବ ସମୃଦ୍ଧ ଏବଂ ମହିମୋଜ୍ଜ୍ୱଳ । ଐତିହାସିକ ସ୍ମୃତି ଉପଜୀବିତ କରି ଏବଂ ଇତିହାସରୁ ଉତ୍କୃଷ୍ଟ ଉପାଦାନ ସଂଗ୍ରହ କରି ସ୍ୱଦେଶ, ସ୍ୱଧର୍ମ, ସ୍ୱଜାତି ପ୍ରତି ଅନୁରାଗ ରଖି ବଳିଷ୍ଠ ଆଶାବାଦର ସାହିତ୍ୟ ସୃଷ୍ଟି ହେଲେ ଜାତୀୟ ଜୀବନ ଉଦ୍‌ବୁଦ୍ଧ ହେବ । ଜନଜୀବନରେ ଜାତିପ୍ରେମ ବହ୍ନି ପ୍ରଜ୍ୱଳିତ କରି ଏହା ଜନ ସମାଜକୁ ଦିଗଦର୍ଶନ ଦେବ ।

---

**ସମ୍ପାଦକ,
ବେଙ୍ଗୁଳିନାନୀ,
ଭାସରସିଂହପୁର, ଆଠଗଡ଼, କଟକ ।**

# ପରିବ୍ୟାପ୍ତି

● ଡଃ ଉପେନ୍ଦ୍ର ପ୍ରସାଦ ନାୟକ

କାହାର ?
କାହାର ଏ ପାଦ ଶବ୍ଦ ??
କାହାର ଘୁମନ୍ତ ଛାଇ
କାହାର ଏ ଉଚ୍ଚାରଣ
ଶୁଭ୍ର ଶବ୍ଦ ବର୍ଣ୍ଣମୟ ଛଟା
କାହାର ଏ ସତ୍ୟ ବାଣୀ–ଜାତୀୟ ସଂଗୀତ
କାହାର ଏ ଦୀର୍ଘସ୍ୱର
ପରିବ୍ୟାପ୍ତ
ପଲ୍ଲବିତ ପ୍ରତିଧ୍ୱନୀ
ପରମିଶା ବ୍ୟାପିଛି ଜଗତ ?
କାହାର ଏ ସତ୍ୟ ବାଣୀ
ଜାତୀୟ ସଙ୍ଗୀତ !

କାହାର ଏ ତୁର୍ଯ୍ୟନାଦ
ଚଞ୍ଚଳ କାହାଣୀ ଭରା
ଜ୍ୟୋତିର୍ମୟ ଶୁଭ୍ର ଇତିହାସ
ଅନେକ ସଂଘର୍ଷ/ସଙ୍ଘାତ ଧାରେ
କାହାର ଏ ଆସ୍ଫାଳନ
କାହାର ସାହସ ?
କାହାର ଏ ସ୍ୱର୍ଣ୍ଣମୟ ଜାତି ଇତିହାସ ?

ସେ ମୋ ବାତ୍ସଲ୍ୟମୟୀ
ଶାଶ୍ୱତୀ ଜନନୀ
ଅନାବିଳ ସର୍ବଂସହା ପବିତ୍ର ପ୍ରତୀକ
ସନ୍ତାନର ସୁଖ ପାଇଁ
ଦେଇଛି ସେ ମରଣକୁ ଡାକ ।
ରକ୍ତର କବଚ ବାନ୍ଧି
ଅରଣ୍ୟରେ ବାରବାର ହୋଇଛି ଆଘାତ
ଅନେକ ବହିଛି ଲୁହ
ଯେପରି ଅଧୁରା ଲୁହେଁ ଗୋଟିଏ ମୁହୂର୍ତ୍ତ
ବିବର୍ଣ୍ଣ ବା ଅଚେତନ ହୋଇନାହିଁ ଦେହମନ
ଅନନ୍ତ ବିଶ୍ୱାସ ଗୋଲାପୀ ବସନ୍ତ
ତଥାପି ଅଧୀରା ଲୁହେଁ ଗୋଟିଏ ମୁହୂର୍ତ୍ତ ।
ତୁମି ମୋର ଜନ୍ମଦାତ୍ରୀ
ସର୍ବଂସହା ! ମାଆ ମୋର ହେ ଭାରତବର୍ଷ ।
ଅନେକ ଅତ୍ୟାଚାର ବକ୍ଷରେ ବହିଛି
ନିଶ୍ଚିନ୍ତ ହୋଇଛୁ କେବେ
ଏହି ଶାନ୍ତିମନାର
ମୋ ଦେହର ପ୍ରତି ଅଙ୍ଗ ପ୍ରତି ଜୀବକୋଷ
ପ୍ରବର୍ଦ୍ଧିତ ତୋ ଜୀବନ
ପ୍ରଲମ୍ବିତ ସମୟ ତୋ ବର୍ଦ୍ଧିତ ଆୟୁଷ ।

ସମୟର ରଥଚକ ତଳେ
ହସିଛୁ କାନ୍ଦିଛୁ କେବେ ଗୁଣିଆ ସାଜିଛୁ
ରଙ୍ଗର ଆଲୋକ ଜାଳି
ପଦ୍ମତୋଳା ଗାଇ ଗାଇ ସାପ ଖେଳାଇଛୁ
ସତ୍ୟ ଆଉ ଅସତ୍ୟର ଦୋଛକୀରେ
ପ୍ରବଞ୍ଚନା ପ୍ରତାରଣା ଦୂରେ ଠେଲି
ନିଜଙ୍କ ବାସ୍ତବତାର ସମୀକ୍ଷା କରିଛି ।

ତୁ ଦେଖିଛୁ କେତେ ସ୍ୱପ୍ନ
ଯୁଗ ଯୁଗାନ୍ତର ଚିନ୍ତାରେ
ଚେତନାରେ
ହଜିଛୁ ତୁ ସତ୍ୟତମ ଭାବ ସାମ୍ରାଜ୍ୟରେ
ହଜିଛୁ ତୁ ରାମରାଜ୍ୟ ପ୍ରାପ୍ତିର ମୋହରେ ।
ସତ୍ୟ ଆଉ ଅହିଂସାର ସ୍ତୋତ୍ର ଗାଇ
ଏକତା ଓ ମୈତ୍ରୀର ମନ୍ତ୍ର ପଢ଼ି
ତପସ୍ୟା କରିଛୁ ଅବା
ସାରାଦିନ ସାରାରାତି
ଦିନ ଦଣ୍ଡ ମାସ ବର୍ଷ ଋତୁଚକ୍ର ପରେ ।
ହଜିଛୁ ତୁ ରାମରାଜ୍ୟ ପ୍ରାପ୍ତିର ମୋହରେ ।।
ସୁନାର ସପନ ବୁଣି
ଗଣିଛୁ ଅସଂଖ୍ୟ ଢେଉ
ନିବିଷ୍ଟ ଚିତ୍ତରେ ବସି ସାଗର କିନାରେ
ବିସ୍ତୀର୍ଣ୍ଣ ବାଲୁକା ଧାରେ
ମୁକ୍ତା ସାଉଣ୍ଟିଛୁ କେବେ
ଶୁଭ୍ରମୟ ଶଙ୍ଖ ଆଉ ଶାମୁକାର
ପ୍ରଭା ଗୋଟାଇଛୁ ।
ଜୀବନକୁ, ସମାଜକୁ
କୋଟି କୋଟି ମଣିଷର ପ୍ରକୃତି ସତ୍ତାକୁ
ହସ ଆଉ କାନ୍ଦର ତାଳେ ତାଳେ
ମୁକ୍ତି ଦେଇ ମୁକ୍ତ କରି ଠିଆ କରାଇଛୁ ।
ଜନମ ଦେଇଛୁ ନିଜେ
ବୀରପୁତ୍ର ହଜାର ହଜାର
ମରି ବି ଅମର ଯିଏ
ଇତିହାସ କରିଛି ସହୀଦ
ସେ ଥିଲେ ଦାୟାଦ ତୋର
ଆଜି ଅଛି କାଲିକି ଥିବ

ଦ୍ରାବିଡ଼ ଅନ୍ଧାର ଡେଇଁ
ନୂତନ ସୂର୍ଯ୍ୟର ରଶ୍ମୀ ବିଞ୍ଚି
ଅଭିନବ ଆଲୋକର ବଳୟରେ
ଅନେକ ସମ୍ଭାବନାର ଶ୍ଳୋକ ଫିଙ୍ଗୁ ଥିବ ।

ତୋ ଗର୍ଭର ଅନ୍ତନାଡ଼
ସଦ୍ୟ ଆଉ ସଞ୍ଜିବୀତ
ଆଜି ଅଛି କାଲିକି ବି ଥିବ
ତୋ ଦେହରେ ମାଟି ଅଛି, ଶୀଳା ଅଛି
ନଦୀ ଅଛି ବନ ଅଛି
ଅଛି ପୁଣି ବିସ୍ମିତ ସହର
ଶଇଳ ସୈକତ ରାଶି
ସଦ୍ୟ ସବୁଜିମାମୟ ଘାସର ଗାଲିଶ୍ଚ
କିଏବା ମସୃଣ ଏଠି
ଶୀତଳ କେ ସମତଳ
କିଏ ଲୋଷ୍ଟ କୋଷ୍ଟ
ତୋ ଦେହରେ ଘାସ ଅଛି
ରାଜକୀୟ ସବୁଜ ଗାଲିଶ୍ଚ ।

କିଏ ମୃତ କିଏ ବା ଜୀବନ୍ତ
ମାୟାର ଗହ୍ୱର ଗଢ଼ି
ଅହରହ କିଏ ପ୍ରାଣବନ୍ତ
କଳ୍ପନାର,
ସମ୍ଭାବନାର,
ପ୍ରାଚୁର୍ଯ୍ୟର
ସତ୍ୟ ଆଉ ବାସ୍ତବତାର
ନାହିଁ ଆଦିଅନ୍ତଃ
କିଏ ମୃତ କିଏବା ଜୀବନ୍ତ !

କୁହ ଗୋ ଜନନୀ ମୋର ହେ ଭାରତବର୍ଷ !
କାହିଁକି ଏ ହଇଚଇ
କାହିଁକି ଏ ତୀବ୍ର କୋଳାହଳ
ଲକ୍ଷେ ଅବଶୋଷ ବହ୍ନି ଜଳିଉଠେ
କାହିଁକି ଏ ଅଯଥା କଟାଳ ?

ତୋ ବକ୍ଷର ଅସ୍ଥିଚର୍ମ ବିଦୀର୍ଣ୍ଣ କରିବାକୁ
କରିବାକୁ କଳଙ୍କିତ ଆଗଭର
ଲକ୍ଷ ଲକ୍ଷ ଭଣ୍ଡ ଅଷ୍ଟାମୁଖ
କାହିଁକି ଦେଇଛୁ ଜନ୍ମ
ପ୍ରତାରକ ମାୟାବୀ/ରାକ୍ଷସ ?
ବିକ୍ଷତ ଓ ବିଭାଜନ କରିବାକୁ
କିଏ କେତେ ଚେଷ୍ଟା କରେ
ଚେଷ୍ଟା କରେ ହତ୍ୟା କରିବାକୁ ଅବା
ତୋ ସତ୍ୟର,
ଐତିହ୍ୟର
ପରମ୍ପରାର
ମାନବିକ ସତ୍ତା ସମ୍ପଦର
କାହିଁକି ଦେଇଛୁ ଏତେ ଅଭୟର ଗାର ।

ହେ ମୋ ଭାରତ ବର୍ଷ !
ଗାନ୍ଧୀ ଆଉ ଗୋପବନ୍ଧୁର ଦେଶ
ତୋ ଗୌରବ ଗାଇବାକୁ
କିଏ ବା ସମର୍ଥ ହେବ
କାହାର ବା ସ୍ପର୍ଦ୍ଧା ଅଛି
ତୋ ବିରୁଦ୍ଧେ ଉଦ୍‌ଗାରିବ ବିଷବାଷ୍ପ
ରଙ୍ଗର ଘୋଡ଼ଣୀ ଖୋଲି
ଟାଣି ଦେବ ନିରଙ୍ଗର ଗାର
ସର୍ବଜନ ସ୍ୱୀକୃତ ତୁ
ସ୍ୱୀକାର କରିଛି ତୋତେ ବିଶ୍ୱ ଦରବାର ।

ହେ ମୋ ଭାରତବର୍ଷ
ତୋ ଗର୍ଭରୁ ଜନ୍ମିଛି ମୁଁ
ପିଇଛି ତୋ ପାଣି ଓ ପବନ
ତେଣୁ ଅବା ଗର୍ବିତ ମୁଁ ଜନ୍ମ ଜନ୍ମାନ୍ତର
ସ୍ୱୀକାର କରିଛି ତୋତେ
ସାରାବିଶ୍ୱ ଜନ ଦରବାର
ସ୍ୱୀକାର କରିଛି ତୋତେ ବିଶ୍ୱ ଦରବାର ।।

---

ଆସୋସିଏଟ୍ ପ୍ରଫେସର,
ଡଃ ଅଭିନ୍ନ ଚନ୍ଦ୍ର ହୋମିଓପାଥିକ୍,
ମେଡ଼ିକାଲ୍ କଲେଜ,
ଭୁବନେଶ୍ୱର ।



୧୯୯୨ରେ କେନ୍ଦ୍ରାପଡ଼ାଠାରେ ନିର୍ମିତ ଗଜଲକ୍ଷ୍ମୀ ମୂର୍ତ୍ତି ।

# ସେ କେବେ ମରି ନାହିଁ

• ଶ୍ରୀ ବ୍ରଜସୁନ୍ଦର ମହାପାତ୍ର

ପରାଚୀ ଗଗନରେ ସୁନେଲି ସୂର୍ଯ୍ୟ ଉଇଁ
ଜଗତ ହିତେ ନିତି ଆଲୋକ ଦିଏ ଢାଳି,
ଭାରତ ଗଗନରେ ଅରୁଣ ପରି ଉଇଁ
ଜନତା ହିତେ ଯିଏ ଜୀବନ ଦେଲା ଢାଳି,

ଥରାଇ ଦେଲା ଯିଏ ଗୋରା ଶାସକ ଗଣେ
ଦେଖାଇ ଦେଇଗଲା ବୀର ଏ ଭୂଇଁ ପୁଅ,
ସାଜିଲା ବୀର ବେଶ ଗଢ଼ିଲା ମୁକ୍ତି ଦେଶ
ଲଢ଼ିଲା ଦେଶ ପାଇଁ ବୁହାଇ ଲହୁ ଲୁହ ।

ସୁଦୂର ସିଂଗାପୁରୁଁ ମୁକ୍ତିର ଗୀତ ଗାଇ
ଆଗେଇ ଆସିଥିଲା ଦେଶ ମୁକତି ପଣେ,
ଆସାମ ଭୂଇଁ ବୁକେ ଜୈତ୍ର ପତାକା ତୋଳି
ହଟାଇ ଦେଇଥିଲା ଗୋରା ସୈନିକ ଗଣେ !

ସେହିଁ ସେ ବୀର ଆଜି ସୁଭାଷ ଚନ୍ଦ୍ର ଲୁଚି
ଗଲାଯେ କେହି କାହିଁ ଜାଣିଲେ ନାହିଁ,
ସାରା ଜୀବନ ତା'ର ବିତାଇ ଦେଲା ସିନା
ଭାରତ ଜନନୀର ଅଶ୍ରୁ ମୋଚନ ପାଇଁ !

ପୃଥିବୀ କୋଣୁ ଆସି କାହିଁ ଯେ ଗଲା ଘୋଟି
ଅକାଳ ବଉଦ ସେ ପରାଚୀ ନଭ ଦେଶେ,
ଅଶୁଭ ଶନି କୋପୁଁ ଲୁଚିଲା ପ୍ରଭା ତା'ର
ଜଣା ଗଲାନି କାହିଁ ରହିଲା ସିଏ ଶେଷେ !

"ପଞ୍ଚମ ବାହିନୀ"ର ଶୁଭିଲା ନାହିଁ ଆଉ
"ଦିଲ୍ଲୀ ଚଲୋ"ର ଡାକ–ଜନତା ପ୍ରିୟ ବାଣୀ,
କେଉଁଠି ହିମାଚଳ ଅଙ୍ଗ ବଙ୍ଗ ଉତ୍କଳ
"ନେତାଜୀ" ପାଇଁ ମନେ ହୋଇଲେ ଖାଲି ଋଣୀ ।

ମରିଛି ବୋଲି କାହିଁ କେହି ତ ଦେଖି ନାହିଁ
ତା' କଲା କୀର୍ତ୍ତି କେବେ ଲୁଚି ଗୋ ଯିବ ନାହିଁ,
ନ ଥାଉ ପଛେ ଦେହେ ସ୍ୱଦେଶ ଜନ ହୃଦେ
ବଞ୍ଚି ରହିଛି ସିଏ—ସେ କେବେ ମରି ନାହିଁ ।

(୨୭/୮/୮୨ରେ କଟକ ଆକାଶବାଣୀରୁ ପ୍ରଚାରିତ)

---

ଉମା ନିକେତନ,
ଗଉରୀ ମୁଦ୍ରାଳୟ, କଟକ-୧୦ ।



ନୂଆ ଦିଲ୍ଲୀଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଇସ୍ପାତ୍ କାରଖାନା ପ୍ରତିଷ୍ଠା ସମ୍ପର୍କରେ କେନ୍ଦ୍ର ଅର୍ଥ ମନ୍ତ୍ରୀ ଶ୍ରୀ ମନମୋହନ ସିଂହଙ୍କ ସହିତ ଆଲୋଚନା କରୁଛନ୍ତି ।




ଭୁବନେଶ୍ୱରଠାରେ ଆୟୋଜିତ ବିପ୍ଳବୀ ବୀର ଚକରା ବିଶୋୟୀଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବରେ ମନ୍ତ୍ରୀ ଶ୍ରୀ ଶରତ କୁମାର କର, ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଓ ଲୋକ ସମ୍ପର୍କ ନିର୍ଦ୍ଦେଶକ ଶ୍ରୀ କାଳୀ କୁମାର ରଥ ।



ରାଜ୍ୟସ୍ତରୀୟ ଶିକ୍ଷା ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ମେନକା ଦାସ ଓ ମନ୍ତ୍ରୀ
ସହିତ ମୁଖ୍ୟାତିଥି ଅଭିଭାଷଣ ।



ଉତ୍କଳ ଶିକ୍ଷକ ସଂଘର ଦାବୀ ବିଷୟରେ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା ଆଲୋଚନା କରୁଛନ୍ତି ।



ପ୍ରଦର୍ଶନୀ ପରିସରରେ ମହିଳା ଶିଳ୍ପୋଦ୍ୟୋଗୀମାନଙ୍କ ଦ୍ୱାରା ଆୟୋଜିତ 'ପ୍ରଦର୍ଶନୀ ଓଡ଼ିଶା-୯୦'କୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପ୍ରଦୀପ ଜାଳି ଉଦ୍‌ଘାଟନ କରୁଛନ୍ତି ।



ଏକାମ୍ର କାନନଠାରେ ଅନୁଷ୍ଠିତ ପୁଷ୍ପୋତ୍ସବରେ ମନ୍ତ୍ରୀ ଶ୍ରୀ ହରିହର କରଣ ଓ ବନ ବିଭାଗ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ମିଶ୍ର ।

# କୋରାପୁଟ ଜିଲ୍ଲାରେ ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ

• ଡଃ ଦଣ୍ଡପାଣି ବେହେରା

ଭାରତୀୟ ଜାତୀୟ କଂଗ୍ରେସ ଦ୍ୱାରା ୧୯୪୨ ଅଗଷ୍ଟ ୯ରେ ଗୃହୀତ–"ଭାରତ ଛାଡ଼" ପ୍ରସ୍ତାବ ଓ ମହାତ୍ମାଗାନ୍ଧୀଙ୍କର "କର ବା ମର" ଆହ୍ୱାନରେ ଜାତୀୟ ମୁକ୍ତି ସଂଗ୍ରାମ ନୂତନ ମୋଡ଼ ନେଲା । ଦେଶର ସର୍ବତ୍ର ସଂଗ୍ରାମର ବହ୍ନି ଜଳିଲା । ସେହି ବହ୍ନିର ଆଭାରେ କୋରାପୁଟର ଆଦିବାସୀ ଅଧ୍ୟୁଷିତ ବନ୍ୟ ପାର୍ବତ୍ୟ ଘେରା ଅଞ୍ଚଳମାନ ଆଲୋକିତ ହେଲା । ନିରକ୍ଷର, ଦରିଦ୍ର ଓ ଅମାୟିକ ଆଦିବାସୀ ଜନଗଣ ଭାରତ ମାତାର ମୁକ୍ତି କାମନା କରି ସଂଗ୍ରାମ କଲେ । ଏଭଳି ଆଦିବାସୀ ଜନ ଜାଗୃତି ଓ ସଂଗ୍ରାମର ଅନ୍ୟତ୍ର କ୍ୱଚିତ ପଟାନ୍ତର ମିଳେ । ରାଷ୍ଟ୍ର ଶକ୍ତିର ବର୍ବରୋଚିତ ପ୍ରୟୋଗ ସତ୍ତ୍ୱେ ସରକାର ସେହି ସଂଗ୍ରାମର ଅଦମ୍ୟତାକୁ ଦବେଇ ପାରିଲେ ନାହିଁ ।

ଆର୍ଥିକ, ସାଂସ୍କୃତିକ ଓ ଶୈକ୍ଷିକ ଦୃଷ୍ଟିରୁ କୋରାପୁଟ ଥିଲା ଅନୁନ୍ନତ , ସାକ୍ଷରତା କ୍ଷେତ୍ରରେ ଓଡ଼ିଶାରେ ତା'ର ସ୍ଥାନ ଥିଲା ସର୍ବନିମ୍ନ । ତଥାପି ତା'ର ଅଧିବାସୀମାନଙ୍କ ମଧ୍ୟରେ ଗାନ୍ଧିଜୀଙ୍କର ୧୯୪୨ର ଆହ୍ୱାନ ଗୁଞ୍ଜରଣ ଓ ମାଦକତା ସୃଷ୍ଟି କରିଥିଲା । ସବୁ ଦୃଷ୍ଟିରୁ ପଛୁଆ କୋରାପୁଟ ଜିଲ୍ଲାର ଜଣେ ସ୍ୱାଧୀନତା ସଂଗ୍ରାମୀ ରାଧାକୃଷ୍ଣ, ବିଶ୍ୱାସରାୟ ସେହି ବର୍ଷ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥାନ୍ତି । ସମ୍ପ୍ରତି ସେ ଜାତୀୟ କଂଗ୍ରେସର ବମ୍ବେ ଅଧିବେଶନରେ ଯୋଗ ଦେଇ ଫେରିଥାନ୍ତି । ବମ୍ବେ ଅଧିବେଶନର ସନ୍ଦେଶ ଓ ବାର୍ତ୍ତା ପ୍ରଚାର କରି କରି ଜିଲ୍ଲାବାସୀଙ୍କ ମଧ୍ୟରେ ସେ ଦେଶାତ୍ମବୋଧ ଓ ଜାତୀୟତା ବାଦର ଜାଗୃତି ଓ ଚେତନା ସୃଷ୍ଟି କରି ପାରିଥିଲେ । ଫଳରେ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ବ୍ରିଟିଶ୍ ଶାସନ ବିରୋଧୀ ବିଦ୍ରୋହର ସୂତ୍ରପାତ ହେଲା ।

ଗାନ୍ଧିଜୀଙ୍କର ଭାରତ ଛାଡ଼ ଡାକରାକୁ କୋରାପୁଟ ଲୋକେ ଦେଶର ସ୍ୱାଧୀନତା ଘୋଷଣା ବୋଲି ମନେକଲେ । ଅନେକଙ୍କର ଦୃଷ୍ଟିରେ ଗାନ୍ଧିଜୀ ଥିଲେ ମଣିଷ ରୂପୀ ଭଗବାନ । ଏଣୁ ତାଙ୍କ ଦ୍ୱାରା ଦିଆଯାଇଥିବା "କର ଅବା ମର" ଡାକରା ସେମାନଙ୍କ ନିମନ୍ତେ ଅକାଟ୍ୟ ଥିଲା । ଏହାକୁ ଭାରତରୁ ବ୍ରିଟିଶ୍ ଶାସନର ଅପସାରଣର ସଙ୍କେତ ବୋଲି ସେମାନେ ଗ୍ରହଣ କଲେ । ଦେଶରୁ ହଟୁଥିବା ସରକାରଙ୍କୁ କର କି ଟିକସ୍ ନ ଦେବାକୁ ସେମାନେ ସ୍ଥିର କରି ସଂଗ୍ରାମ ଆରମ୍ଭ କଲେ । କ୍ରମଶଃ ଏହି ସଂଗ୍ରାମ ଜିଲ୍ଲାର ସର୍ବତ୍ର ବ୍ୟାପିଲା । ଆଇନ୍ ଅମାନ୍ୟ ଓ ହିଂସାତ୍ମକ କାର୍ଯ୍ୟକଳାପ ବୃଦ୍ଧି ପାଇଲା । ସରକାରୀ ଅଫିସମାନଙ୍କରେ ଦଙ୍ଗା ହାଙ୍ଗାମା ଓ ଲୁଟତରାଜ ଜରିଆରେ ସରକାରୀ କର୍ମଚାରୀମାନଙ୍କୁ ଆତଙ୍କିତ କରିବା ଥିଲା ସଂଗ୍ରାମୀମାନଙ୍କର ଲକ୍ଷ୍ୟ । ବିଶେଷକରି ପୋଲିସ ଥାନାମାନଙ୍କ ଉପରେ ଚଢ଼ାଉ କରି ଲୁଣ୍ଠନ ଓ ବିଘାତ ସୃଷ୍ଟି ଦ୍ୱାରା ପୋଲିସ୍ କର୍ମଚାରୀମାନଙ୍କୁ ଭୟଭୀତ କରାଇବା ଥିଲା ସଂଗ୍ରାମୀମାନଙ୍କର ଅନ୍ୟତମ ଲକ୍ଷ୍ୟ ।

ଏଭଳି ଏକ ଲକ୍ଷ୍ୟ ନେଇ ମାଥିଲିଠାରେ ସଂଗ୍ରାମୀ ନେତା ଲକ୍ଷ୍ମଣ ନାୟକଙ୍କର ନେତୃତ୍ୱରେ ଅଗଷ୍ଟ ୨୧ରେ ଏକ ଜନ ସମାବେଶର ଆୟୋଜନ କରାଗଲା । ପୋଲିସ୍ ଥାନା ଓ ସେଠାରେ ଥିବା ଅନ୍ୟାନ୍ୟ ଅଫିସମାନଙ୍କ ଉପରେ ଚଢ଼ାଉ ନ କରିବା ପାଇଁ ସେମାନଙ୍କୁ ପୋଲିସ୍ ସତର୍କ କରାଇ ଥିଲେ । ତଥାପି ତାଙ୍କୁ ଭ୍ରୂକ୍ଷେପ ନ କରି ଜଙ୍ଗଲ ବିଭାଗ ଅଫିସ୍ ଓ କର୍ମଚାରୀମାନଙ୍କ ଉପରେ ସଂଗ୍ରାମୀମାନେ ଆକ୍ରମଣ କଲେ । ଘଟଣା ଚକ୍ରରେ ଜଣେ ଜଙ୍ଗଲ ରକ୍ଷକଙ୍କର ମୃତ୍ୟୁ ଘଟିଲା । ବହୁ କର୍ମଚାରୀ ଆହାତ ହେଲେ । ସଂଗ୍ରାମୀମାନଙ୍କର ଆକ୍ରମଣକୁ ପ୍ରତିହତ କରିବା ନିମନ୍ତେ ପୋଲିସ ଗୁଳି ଚାଳନା କଲେ । ତତ୍କ୍ଷଣାତ୍ ଘଟଣା ସ୍ଥଳରେ ୪ ଜଣ ସଂଗ୍ରାମୀଙ୍କର ମୃତ୍ୟୁ ହେଲା ଓ ଶତାଧିକ ଆହତ ହେଲେ । ହତ୍ୟାକାଣ୍ଡ ଓ ଲୁଟତରାଜ ଘଟାଇ ଥିବା ଅପରାଧରେ ଲକ୍ଷ୍ମଣ ନାୟକ ଏବଂ ତାଙ୍କର ଅନ୍ୟାନ୍ୟ ୩୮ ଜଣ ସଂଗ୍ରାମ କର୍ମୀ ଗିରଫ ହେଲେ । ମୃତ୍ୟୁ ଦଣ୍ଡରେ ଲକ୍ଷ୍ମଣ ନାୟକଙ୍କୁ ଦଣ୍ଡିତ କରାଗଲା । ୧୯୪୩ ଅଗଷ୍ଟ ୨୯ରେ ହସ ହସ ମୁଖରେ ମହାତ୍ମାଗାନ୍ଧୀ ଓ ଭାରତ ମାତାର ଜୟଗାନ କରି ବ୍ରହ୍ମପୁର ଜେଲ୍‌ରେ ସାଦରେ ଫାସୀଦଣ୍ଡ ସ୍ୱୀକାର କରି ଲକ୍ଷ୍ମଣ ନାୟକ ଶହିଦ ହେଲେ । ଜେଲ୍ ମଧ୍ୟରେ ଫାସୀ ପାଇବାରେ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ସେ ଥିଲେ ଏକମାତ୍ର ବ୍ୟକ୍ତି । ଦେଶମାତୃକାର ମୁକ୍ତି ଲକ୍ଷେ ଆତ୍ମୋତ୍ସର୍ଗ କରିବାରେ ସେ ଅନ୍ୟମାନଙ୍କ ମଧ୍ୟରେ ଅଗ୍ରଣୀ ଥିଲେ କହିଲେ ସତ୍ୟର ଆଦୌ ଅପଲାପ ହେବ ନାହିଁ । ଏଣୁ ଜାତୀୟ ମୁକ୍ତି ସଂଗ୍ରାମର ଇତିହାସରେ ସେ ଅମର ଓ ଚିରସ୍ମରଣୀୟ ।

ଲକ୍ଷ୍ମଣ ନାୟକଙ୍କ ସହ ତାଙ୍କର ଅନ୍ୟାନ୍ୟ ୩୮ ଜଣ ସଂଗ୍ରାମୀ କର୍ମୀମାନଙ୍କୁ ବ୍ରହ୍ମପୁର ଜେଲ୍‌ରେ ଦଣ୍ଡିତ କରାଯାଇଥିଲା । ଜେଲ୍ ରହଣିକାଳରେ ସେମାନଙ୍କ ମଧ୍ୟରୁ ୩ ଜଣଙ୍କର ମୃତ୍ୟୁ ଘଟିଲା । ଆଉ ୩୫ ଜଣଙ୍କୁ ସ୍ୱାଧୀନତା ପ୍ରାପ୍ତି ପରେ ଖଲାସ କରି ଦିଆଗଲା ।

୧୯୪୨ ଅଗଷ୍ଟ ୨୪ ତାରିଖରେ ପାପଡ଼ାହାଣ୍ଡିଠାରେ ଅନ୍ୟ ଏକ ଲୋମହର୍ଷଣକାରୀ ନାରକୀୟ ଘଟଣା ଘଟିଲା । ସେହିଦିନ ସେହିଠାରେ ଗାନ୍ଧିଜୀଙ୍କର ଆହ୍ୱାନରେ ଶହସ୍ରାଧିକ ଆଦିବାସୀ ସମବେତ ହୋଇଥିଲେ । ବିନା କାରଣରେ ଓ ସତର୍କବାଣୀ ନ ଶୁଣାଇ ପୋଲିସ୍ ସେମାନଙ୍କ ଉପରେ ଅମାନୁଷିକ ଭାବେ ଗୁଳି ଚାଳନା କଲେ । ଫଳରେ ଘଟଣା ସ୍ଥଳରେ ୧୯ ଜଣଙ୍କର ମୃତ୍ୟୁ ଘଟିଲା ଓ ବହୁ ସଂଖ୍ୟକ ଆହାତ ହେଲେ । ପରେ ଆଉ ୩ ଜଣଙ୍କର ମୃତ୍ୟୁ ହେଲା । ବିଭିନ୍ନ ସୂତ୍ରରୁ ଜଣାଯାଏ ଯେ ପୋଲିସ୍ କେବଳ ସେତିକିରେ ସନ୍ତୁଷ୍ଟ ନ ହୋଇ ଅସଂଖ୍ୟ ଲୋକଙ୍କୁ ବିଭିନ୍ନ ଭାବେ ଆହାତ କରି ସନ୍ନିକଟସ୍ଥ ନଦୀରେ ଫୋପାଡ଼ି ଭସାଇ ଦେଇଥିଲେ ।

ଏହିଭଳି କୋରାପୁଟର ବହୁ ଅଞ୍ଚଳରେ ବହୁ ଉଦାମ ଘଟଣା ଘଟି କୋରାପୁଟର ପାହାଡ଼ିଆ ମାଟିକୁ ୧୯୪୨ର ମୁକ୍ତି ସଂଗ୍ରାମରେ ଉଦ୍‌ବେଳିତ କରିଥିଲା । ଏଣୁ ୧୯୪୨ର ଭାରତ ଛାଡ଼ ଆନ୍ଦୋଳନର ଇତିହାସରେ କୋରାପୁଟର ସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଗୌରବମୟ । ଏହି ଶହୀଦ୍ ଲକ୍ଷ୍ମଣ ନାୟକଙ୍କ ଭଳି କୋରାପୁଟର ଅସଂଖ୍ୟ ଅଜ୍ଞାତ ଓ ଜ୍ଞାତ ଜାତୀୟ ମୁକ୍ତି ଶହୀଦ୍ ଓ ସଂଗ୍ରାମୀ ଏହି ଜାତିର ଚିର ପୂଜ୍ୟ ଓ ନମସ୍ୟ ।

---

ଅଧ୍ୟକ୍ଷ, ନିରଞ୍ଜନ ମହିଳା ମହାବିଦ୍ୟାଳୟ,
ଆସ୍କା (ଗଞ୍ଜାମ) ।



ରାଷ୍ଟ୍ରୀୟ ଲଳିତ କଳା ଏକାଡେମୀଠାରେ ଆୟୋଜିତ ଓଡ଼ିଆ ଚିତ୍ରକାରଙ୍କ ଦ୍ୱାରା ଅଙ୍କିତ କଳା ପ୍ରଦର୍ଶନୀକୁ ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ କମଳା ଦାସ ଉଦ୍‌ଘାଟନ କରୁଛନ୍ତି ।

# ଶାନ୍ତି ଦୂତ ଲାଲବାହାଦୁର

● ମମତା ପାତ୍ର

କେହି ରହି ନାହିଁ ରହିବ ନାହିଁଟି
ଭବରଙ୍ଗ ଭୂମି ତଳେ ।
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ" ।

ଏ ସଂସାରରେ କେହି ସବୁ ଦିନ ରହି ନାହିଁକି ରହିବ ନାହିଁ । ଯାହାର ଜନ୍ମ ଅଛି, ତା'ର ମୃତ୍ୟୁ ଅବଶ୍ୟମ୍ଭାବୀ । ତେବେ ମୃତ୍ୟୁ ସମସ୍ତଙ୍କ ନିକଟରେ ଅପରାଜେୟ ନୁହେଁ । ବ୍ୟକ୍ତି ବିଶେଷରେ ମୃତ୍ୟୁକୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଥାଏ । ତା'ର ଶୀତଳ ସ୍ପର୍ଶରେ ମଣିଷ ମରଶରୀର ତ୍ୟାଗ କରେ ସତ କିନ୍ତୁ ପୂର୍ବକୃତ ତ୍ୟାଗପୂତ କର୍ମ ମଣିଷକୁ କରେ ଅବିନଶ୍ୱର । ମୃତ୍ୟୁକୁ ପରାଭୂତ କରି ସେ ହୁଏ ମୃତ୍ୟୁଞ୍ଜୟୀ । ଆମର ସ୍ୱାଧୀନ ଭାରତର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ସ୍ୱର୍ଗତଃ ଲାଲ୍ ବାହାଦୁର ଶାସ୍ତ୍ରୀ ତାହାର ଜ୍ୱଳନ୍ତ ଉଦାହରଣ ।

୧୯୦୪ ମସିହା ଅକ୍ଟୋବର ମାସ ଦୁଇ ତାରିଖ, ଉତ୍ତର ପ୍ରଦେଶର ବାରାଣସୀ ନିକଟସ୍ଥ ମୋଗଲ ସରାଇ ନାମକ ଏକ ଛୋଟ ଗାଁରେ ଲାଲ୍ ବାହାଦୁରଙ୍କ ଜନ୍ମ । ସେହି ଦିନଟି ଭାରତୀୟ ଦିନ ପଞ୍ଜିକାରେ ଅବିସ୍ମରଣୀୟ ହୋଇ ରହିବ । ବାପୁଜୀଙ୍କ ଜନ୍ମବାସରରେ ସତେ ଯେପରି ବାପୁଜୀଙ୍କ କଳା ନେଇ ସେ ଜନ୍ମ ହୋଇଥିଲେ । ସେ ଥିଲେ ଉତ୍ତର ପ୍ରଦେଶର କାୟସ୍ଥ ପରିବାରର । ସାଧାରଣତଃ କାୟସ୍ଥମାନେ ଉଚ୍ଚ ଶିକ୍ଷିତ । ସରକାରୀ ଚାକିରି ପ୍ରାୟ ୭୫ ଭାଗ ସେହିମାନେ ହିଁ କରିଥାନ୍ତି । ଲାଲ୍ ବାହାଦୁରଙ୍କର କୌଳିକ ଉପାଧି ଥିଲା ଶ୍ରୀବାସ୍ତବ । ମାତ୍ର ସେ ନିଜକୁ କେବଳ ଲାଲ ବାହାଦୁର ଭାବରେ ପରିଚୟ ଦେଉଥିଲେ । ମା'ଙ୍କ ନାମ ରାମ ଦୁଲାରୀ ଦେବୀ । ବାପା ଶାରଦା ପ୍ରସାଦ ସେମିତି ଚଳିଲାବାଲା ନଥିଲେ । ଅଭାବ ସଂସାର । ପ୍ରଥମେ ସେ ଥିଲେ ଜଣେ ପ୍ରାଥମିକ ସ୍କୁଲ ଶିକ୍ଷକ । ପରେ ରାଜସ୍ୱ ବିଭାଗରେ କିରାଣୀ ଚାକିରିଟିଏ ପାଇଲେ । ମାଆ ରାମଦୁଲାରୀ ବଡ ଧର୍ମପରାୟଣା ଥିଲେ । ବର୍ଷକ ବାରମାସ ସେ ଓଷା ବ୍ରତରେ ଉପବାସରେ ବ୍ୟସ୍ତ ରୁହନ୍ତି । ଶ୍ରୀରାମଙ୍କ ଉପାସନା କରି ପୁଅ ପାଇଥିବାରୁ ଶ୍ରଦ୍ଧାନାମ ରଖିଥିଲେ ନନ୍ହା । ନନ୍ହା ପିଲାଙ୍କ ଗେହ୍ଲା ନାମ । ରାମ ଦୁଲାରୀଙ୍କ ସେଇ ନନ୍ହା ପରେ ହେଲେ ଲାଲବାହାଦୁର । ହିନ୍ଦୀ ଭାଷାରେ ଲାଲ୍ ଶବ୍ଦର ଅର୍ଥ ପୁଅ । ଲାଲ୍ ବାହାଦୁର ଅର୍ଥ ବାହାଦୁରିଆ ପୁଅ । ପ୍ରକୃତରେ ସେ ତାଙ୍କର ବାହାଦୁରୀରେ ସମଗ୍ର ବିଶ୍ୱକୁ ଚମକାଇ ଦେଇଥିଲେ । ଜଣେ ସାଧାରଣ ସେ । ଲାଲ୍ ବାହାଦୁରଙ୍କୁ ମାତ୍ର ଦେଢ଼ ବର୍ଷ ବୟସରେ ପିତା ଶାରଦା ପ୍ରସାଦଙ୍କର ଆକସ୍ମିକ ମୃତ୍ୟୁ ଘଟିଲା । ସେତେବେଳେ ରାମଦୁଲାରୀଙ୍କ ବୟସ ମାତ୍ର ୨୦ ବର୍ଷ । ଅକାଳ ବୈଧବ୍ୟର ଦାରୁଣ ଯନ୍ତ୍ରଣା ଭିତରେ ଦୁଇ ଝିଅ ଓ ପୁଅଙ୍କୁ ମଣିଷ କରିବା ପାଇଁ ରାମ ଦୁଲାରୀ ପିତା ଗୃହରେ ଆଶ୍ରୟ ନେଲେ । ଅଜା ହଜାରୀ ଲାଲ୍, ଲାଲ୍ ବାହାଦୁରଙ୍କୁ ବହୁତ ଭଲ ପାଉଥିଲେ । ପ୍ରଥମରୁ ଷଷ୍ଠ ଶ୍ରେଣୀ ଅର୍ଥାତ୍ ୧୦ ବର୍ଷ ବୟସ ପର୍ଯ୍ୟନ୍ତ ସେ ଅଜାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିଥିଲେ । ତା'ପରେ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ ନିମନ୍ତେ ବନାରସ ଯାତ୍ରା କରିଥିଲେ । ସେଠାରେ ମଉସା ରଘୁନାଥ ପ୍ରସାଦଙ୍କ ତତ୍ତ୍ୱାବଧାନରେ ରହି ହରିଶ୍ଚନ୍ଦ୍ରପୁର ହାଇସ୍କୁଲରେ ନାମ ଲେଖାଇଥିଲେ । ମଉସା ରଘୁନାଥ ଥିଲେ ସ୍ଥାନୀୟ ମ୍ୟୁନିସିପାଲିଟିର ଜଣେ ଅତି ଲୋକପ୍ରିୟ କର୍ମଚାରୀ । ତାଙ୍କର ଆଦର୍ଶ, ଚରିତ୍ରବତ୍ତା, କର୍ତ୍ତବ୍ୟ ପରାୟଣତା ବାଳକ ଲାଲ୍ ବାହାଦୁରଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇ ପାରିଥିଲା । ନିଷ୍କାମ କର୍ମ ମଣିଷକୁ ଦିନେ ଉଚ୍ଚ ଆସନରେ ଅଧିଷ୍ଠିତ କରାଇପାରେ, ଏହା ସର୍ବ ପ୍ରଥମେ ତାଙ୍କୁ ମଉସାଙ୍କଠାରୁ ଶିକ୍ଷାମିଳିଥିଲା । ପରିଶେଷରେ ତାଙ୍କ ଜୀବନରେ ତାହା ପ୍ରତିଫଳିତ ହୋଇଥିଲା । କ୍ରୀଡ଼ା କସରତ ପ୍ରତି ତାଙ୍କର ଆସକ୍ତି ଥିଲା ଅପରିସୀମ । ଫୁଟବଲ୍ ଓ ହକି ଥିଲା ତାଙ୍କର ସବୁଠାରୁ ପ୍ରିୟ ଖେଳ । କିନ୍ତୁ ବଲ୍ ଓ ଅନ୍ୟାନ୍ୟ ସରଞ୍ଜାମ କିଣିବା ପାଇଁ ପାଖରେ ପଇସା ନଥିବାରୁ ସେ ଖଜୁରୀ ଫୁଲକୁ କନାରେ ଗୁଡ଼ାଇ ତାକୁ ବାନ୍ଧି ଗୁଳା କରି ଗଛ ଡାଳ ଭାଙ୍ଗି ତାକୁ ହକି ଷ୍ଟିକ୍ ରୂପେ ବ୍ୟବହାର କରୁଥିଲେ । ଅବସର ସମୟରେ ବ୍ୟାଡ୍‌ମିଣ୍ଟନ୍ ଖେଳିବାକୁ ଭଲ ପାଉଥିଲେ । ସେ ଥିଲେ ଭାରତୀୟ ରାଇଫଲ୍ ଆସୋସିଏସନ୍‌ର ସଭାପତି । ଖେଳ ପରି ବହି ପଢ଼ିବାରେ ତାଙ୍କର ପ୍ରବଳ ଝୁଙ୍କ୍ ଥିଲା । ଯେ କୌଣସି ବହି ଧରିଲେ ଏକାବେଳେକେ ଶେଷ ନକରି ଛାଡୁ ନଥିଲେ । ଗୁରୁନାନକଙ୍କର ଗୋଟିଏ ପଦ ତାଙ୍କର ଥିଲା ଅତି ପ୍ରିୟ । ଅନେକ ସମୟରେ ସେହି ପଦଟିକୁ ସେ ମନ୍ତ୍ର ପରି ଘୋଷି ଦେଉଥିଲେ । ସେ ପଦଟି ହେଉଛି–

"ନାନକ ନାହେଁ ହୋ ରହୋ ଯୈସେ ନାହେଁ ଦୁବ୍
ଔର ରୋଗ ଶୋକ୍ ଯାଏଙ୍ଗେ ଦୁବ୍ ଖୁବ୍‌କି ।"

ଏହାର ଅର୍ଥ, ହେ ନାନକ ! ତୃଣ ପରି ଅତି କ୍ଷୁଦ୍ର ହୋଇ ବଞ୍ଚିରହ, ମହାଦ୍ରୁମ ସବୁ ଝାଉଁଳି ଯିବେ, ମାତ୍ର ତୃଣ ସବୁଦିନ ସବୁଜ ହୋଇ ରହିବ । ଗୁରୁ ନାନକଙ୍କର ଏହି ଅମୃତ ନିଃସ୍ୟନ୍ଦିନୀ ପଦ ଲାଲ୍ ବାହାଦୁରଙ୍କ ଜୀବନର ହୋଇଥିଲା ଏକ ପ୍ରଧାନ ନିୟାମକ । ଆଜୀବନ ଆତ୍ମନିୟନ୍ତ୍ରଣ ଓ ଆତ୍ମ ପ୍ରତ୍ୟୟ ବୋଧହୁଏ ସେ ଏହି ପଦଟିରୁ ଶିକ୍ଷା କରିଥିଲେ । ସ୍କୁଲରେ ଲାଲ୍ ବାହାଦୁର ସେତେ ମେଧାବୀ ଛାତ୍ର ନଥିଲେ । କିନ୍ତୁ ବିଶେଷ ଚରିତ୍ର ଯୋଗୁଁ ଶିକ୍ଷକମାନେ ତାଙ୍କୁ ଅତି ଆଦର କରୁଥିଲେ । ତାଙ୍କ ଭାଷାରେ ମୁଁ ଜାଣେନା, ମୋତେ କାହିଁକି ଶିକ୍ଷକମାନେ ଶ୍ରେଣୀରେ ସବୁଠାରୁ ବେଶୀ ଭଲ ପାଆନ୍ତି । ସେମାନେ ବେଳକୁ ବେଳ ମୋତେ ତାଙ୍କ ଘରକୁ ଡାକି ନେଇ ନିଜ ପୁଅ ପରି ବ୍ୟବହାର କରନ୍ତି । ଛାତ୍ର ଜୀବନରେ ସେ ଅଙ୍କରେ ବଡ଼ ଦୁର୍ବଳ ଥିଲେ । କିନ୍ତୁ ଜ୍ୟାମିତି ଓ ବୀଜ ଗଣିତରେ ଭଲ ନମ୍ବର ରଖୁଥିବା ହେତୁ ପରୀକ୍ଷାରେ ଭଲରେ ପାସ୍ କରୁଥିଲେ । ଇଂରାଜୀ ଓ ଇତିହାସ ପ୍ରତି ତାଙ୍କର ଥିଲା ଅଦ୍ଭୁତ ପ୍ରୀତି । କମ୍ ବୟସରେ ନିର୍ଭୁଲ୍ ଇଂରାଜୀ ଉଚ୍ଚାରଣରେ ଅନେକ ସମୟରେ ଶିକ୍ଷକମାନେ ଆଶ୍ଚର୍ଯ୍ୟ ହେଉଥିଲେ । ତାଙ୍କର ଇଂରାଜୀ ଉଚ୍ଚାରଣ ତଥା ପଠନ ଶୈଳୀରେ ଅତ୍ୟନ୍ତ ଖୁସୀ ହୋଇ

ତତ୍କାଳୀନ ସ୍କୁଲ୍ ଇନିସ୍‌ପେକ୍ଟର ତାଙ୍କୁ ଅଭିନନ୍ଦନ ଜଣାଉଥିଲେ । ପଢ଼ିବା ସମୟରେ ସ୍କୁଲରେ ହେଉଥିବା ନାଟକ, ଥିଏଟରରେ ସେ ଭାଗ ନେଉଥିଲେ । ମହାଭାରତ ନାଟକରେ କୃପାଚାର୍ଯ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇ ଦର୍ଶକମାନଙ୍କର ପ୍ରଶଂସାଭାଜନ ହୋଇପାରିଥିଲେ । ପଇସା ଅଭାବରୁ ଲାଲ୍ ବାହାଦୁର ଡଙ୍ଗାରେ ଗଙ୍ଗାନଦୀ ପାର ନ ହୋଇ ନିଜେ ସନ୍ତରଣ କରି ଏହାକୁ ଅତିକ୍ରମ କରିଥିଲେ । ସେ ପାଠ ପଢ଼ିବା ପାଇଁ କାଶୀ ବିଦ୍ୟାପୀଠରେ ଯୋଗ ଦେଇଥିଲେ । ସେତେବେଳେ କାଶୀ ବିଦ୍ୟାପୀଠ ଗୋଟିଏ ଜାତୀୟ ଅନୁଷ୍ଠାନ ରୂପେ ପରିଗଣିତ ହେଉଥାଏ । ସେଠାରେ ଚାରିବର୍ଷ ଅଧ୍ୟୟନ କଲା ପରେ ଲାଲ୍ ବାହାଦୁର ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଶାସ୍ତ୍ରୀ ଉପାଧି ପାଇଥିଲେ । ଏହି ବିଦ୍ୟାପୀଠରେ ଚାରିବର୍ଷ ଶିକ୍ଷା ଲାଭ ସମୟରେ ସେ ବହୁ ଶାସ୍ତ୍ର ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ଏହି ବିଦ୍ୟାପୀଠ ତାଙ୍କ ଘରଠାରୁ ଥିଲା ସାତ ମାଇଲ । ପ୍ରତିଦିନ ଚଉଦ ମାଇଲ ରାସ୍ତା ଯିବା ଆସିବା କରି ସେ ପାଠ ପଢୁଥିଲେ । ପଇସା ଅଭାବରୁ ସାଇକେଲ୍‌ଟିଏ ମଧ୍ୟ କିଣିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ୧୯୨୬ରେ ଲାଲ ବାହାଦୁର ବିଦ୍ୟାପୀଠ ଛାଡି 'ଭାରତ ସେବକ ସମାଜ'ର ଆଜୀବନ ସଭ୍ୟ ରୂପେ ଯୋଗ ଦେଇଥିଲେ । ଏଥିପାଇଁ ପାରିତୋଷିକ ଭାବରେ ମାସିକ ଷାଠିଏ ଟଙ୍କା ପାଉଥିଲେ । ପରେ ଏହା ଶହେ ଟଙ୍କାକୁ ବୃଦ୍ଧି ପାଇଥିଲା । ଅଧିକ ପାରିତୋଷିକ ନୁହେଁ ସେବାହିଁ ଥିଲା ତାଙ୍କ ଜୀବନର ମୂଳମନ୍ତ୍ର । ୧୯୨୭ ମସିହାରେ ମିର୍ଜାପୁରର ଲଳିତା ଦେବୀଙ୍କୁ ସେ ବିବାହ କରିଥିଲେ । ବିବାହ ପରେ ତାଙ୍କର ସେବକ ଜୀବନରେ ତିଳେ ହେଲେ ବ୍ୟତିକ୍ରମ ଦେଖାଯାଇ ନ ଥିଲା । ୧୯୩୨, ୧୯୩୪, ୧୯୪୧ ଓ ୧୯୪୨ରେ ସେ ବ୍ରିଟିଶ ବିରୋଧୀକାର୍ଯ୍ୟ କରିଥିବାରୁସାତଥର କାରାବରଣ କରି ୯ ବର୍ଷ ଜେଲ ଦଣ୍ଡ ଭୋଗିଥିଲେ । ଜେଲରେ ଥିବା ସମୟରେ ବହୁ ଗ୍ରନ୍ଥ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ତାଙ୍କ ନିଜ ଭାଷାରେ "My Jail life was interesting from more than one point of view. I used to do a lot of reading every time I went to a jail." ଏହି ସମୟ ମଧ୍ୟରେ "ଭାରତ ଛାଡ" ଆନ୍ଦୋଳନର ଇତିହାସ ସେ ଲେଖିଥିଲେ । ମାତ୍ର ସମୟ ଅଭାବରୁ ତାହାକୁ ଶେଷ କରିପାରି ନ ଥିଲେ । ଏହା ବ୍ୟତୀତ "ମାଡାମ କ୍ୟୁରୀଙ୍କର" ଆତ୍ମଜୀବନୀକୁ ହିନ୍ଦୀରେ ଅନୁବାଦ କରିଥିଲେ ।ଜେଲରେ ଥିଲାବେଳେ ସହବନ୍ଦୀ ଓ ଜେଲର କର୍ମଚାରୀମାନେ ତାଙ୍କୁ ଜଣେ ଆଦର୍ଶ ବନ୍ଦୀ ରୂପେ ସମ୍ମାନ ଦେଖାଉଥିଲେ । ଶାସ୍ତ୍ରୀଙ୍କ ଅନୁପ୍ରେରଣାରେ ଏଲାହାବାଦ ଜେଲରେ ଏକ ସାଂସ୍କୃତିକ ବାତାବରଣ ସୃଷ୍ଟି ହୋଇଥିଲା । ଜେଲରେ ରହିବା ସମୟରେ ଜେଲ୍ କର୍ତ୍ତୃପକ୍ଷଙ୍କଠାରୁ ମିଳୁଥିବା ସୁବିଧାରୁ ନିଜେ ବଞ୍ଚିତ ହୋଇ ସହବନ୍ଦୀମାନଙ୍କ ମଧ୍ୟରେ ବିତରଣ କରୁଥିଲେ । ରାଜବନ୍ଦୀ ସ୍ୱରୂପ ତାଙ୍କୁ ମିଳିଥିବା ଲଣ୍ଠନଟିକୁ ନିଜେ ବ୍ୟବହାର ନ କରି ଅନ୍ୟର ସୁବିଧା ପାଇଁ ଦେଇ ଦେଉଥିଲେ । ନିଜେ ଦୀପ ଜାଳି ପଢାପଢି କରୁଥିଲେ । ନୈନି ଜେଲରେ ରହଣି ସମୟରେ– ସେ ଭଲି ଓ ବ୍ୟାଡମିଣ୍ଟନ୍ ଖେଳରେ ଯଥେଷ୍ଟ କୃତିତ୍ୱ ଅର୍ଜନ କରିଥିଲେ । ଏହି ଜେଲରେ ଅବସ୍ଥାନ ସମୟରେ ତାଙ୍କର ଗୋଟିଏ ଝିଅ ରୋଗ ଶଯ୍ୟାରେ ପଡି ବ୍ୟାକୁଳ ଭାବରେ ତାଙ୍କୁ ଖୋଜିଲା । ବହୁ କଷ୍ଟରେ ଝିଅକୁ ଦେଖିବା ପାଇଁ ଜେଲରୁ ୧୫ ଦିନ ଛୁଟି ମିଳିଲା । ମାତ୍ର ଯେଉଁ ଦିନ ସେ ଯାଇ ଘରେ ପହଞ୍ଚିଲେ ସେହିଦିନ ଝିଅଟି ତାଙ୍କର ସଂସାରରୁ ଚିର ବିଦାୟ ନେଲା । ପଇସା ଅଭାବରୁ ଝିଅର ଚିକିତ୍ସା କରାଯାଇ ପାରି ନ ଥିଲା । ଏହା ସତ୍ତ୍ୱେ ସେ ତାଙ୍କର କର୍ମବ୍ରତୀରେ ଥିଲେ ଅଟଳ, ଅବିଚଳ । ଏହି ଘଟଣାରେ ବର୍ଷକ ପରେ ୪ ବର୍ଷର ପୁଅକୁ ହେଲା ଟାଇଫଏଡ୍ । ପୁଅର ଚିକିତ୍ସା ପାଇଁ ପୁଣି ଥରେ ସାତ ଦିନ ଛୁଟି ଆଣି ଆସିଲେ । ମାତ୍ର ପୁଅର ଜ୍ୱର କମିଲା ନାହିଁ । ବରଂ ୧୦୪°ରୁ ୧୦୬°କୁ ଜ୍ୱର ବଢ଼ି ଚାଲିଲା । ଶଯ୍ୟାଶାୟୀ ପୁଅର ଆକୁଳ ନିବେଦନ "ବାପୁଜୀ ଯାଅନା" ତାଙ୍କ ଆଖିରେ ଲୁହ ମନରେ କୋହକୁ ଦ୍ୱିଗୁଣିତ କରିଦେଇ ଥିଲା । ଯନ୍ତ୍ରଣା ଜର୍ଜରିତ ହୋଇ ସେ ନୀତି ଦୃଷ୍ଟିରୁ ଜେଲ୍‌କୁ ନିର୍ଦ୍ଦିଷ୍ଟ ସମୟରେ ଫେରି ଆସିଥିଲେ ।

ହିନ୍ଦୁ ସ୍ତ୍ରୀ ତା' ସ୍ୱାମୀର ସହକର୍ମିଣୀ ତଥା ସହଧର୍ମିଣୀ । ହିନ୍ଦୁ ନାରୀ ପାଇଁ ସ୍ୱାମୀ ତା'ର ସର୍ବସ୍ୱ । ଲଳିତା ଦେବୀ ଏହି ଆଦର୍ଶରେ ଅନୁପ୍ରାଣିତ । ୧୯୨୭ରେ ଶାସ୍ତ୍ରୀଜୀ ଲଳିତା ଦେବୀଙ୍କୁ ବିବାହ କରିଥିଲେ । ସେ ସମୟରେ ତାଙ୍କର ରୋଜଗାର ଥିଲା ମାତ୍ର ୬୦ ଟଙ୍କା । ଅର୍ଥାଭାବର ଘନଘଟା ମଧ୍ୟରେ ଥାଇ ମଧ୍ୟ ଶ୍ୱଶୁରଙ୍କଠାରୁ କୌଣସି ମୂଲ୍ୟବାନ ଯୌତୁକ ଗ୍ରହଣ କରି ନଥିଲେ । ଗୋଟିଏ ଚରଖା ଓ କେତେକ ଖଦୀ ହିଁ ଥିଲା ତାଙ୍କର ମୂଲ୍ୟବାନ ଯୌତୁକ । ତାଙ୍କ ପରିବାରର ସଭ୍ୟ ସଂଖ୍ୟା ଥିଲା ୧୧ । ଲଳିତା ଦେବୀ ସବୁ ସମୟରେ ନିଜ ହାତରେ ରାନ୍ଧି ସ୍ୱାମୀ, ଶାଶୁ ଓ ପିଲାମାନଙ୍କୁ ପରିଷିବା ସହ ଗଲା ଆଇଲା ଅତିଥି ଅଭ୍ୟାଗତଙ୍କୁ ମଧ୍ୟ ବେଶ୍ ସନ୍ତୋଷରେ ହସହସ ମୁହଁରେ ପରଷିବାରେ ବେଶ୍ ଆତ୍ମତୃପ୍ତି ଲାଭ କରୁଥିଲେ । ଥରେ ଜଣେ ମାର୍କିନ୍ ସାମ୍ବାଦିକ ପଚାରିଥିଲେ– ଆପଣ ଭାରତ ଭଳି ଏକ ବୃହତ୍ତମ ରାଷ୍ଟ୍ରର ପ୍ରଧାନମନ୍ତ୍ରୀଙ୍କ ସ୍ତ୍ରୀ ହୋଇ ରୋଷେଇ କରିବାକୁ ପସନ୍ଦ କରନ୍ତି କାହିଁକି ? ଉତ୍ତରରେ ଲଳିତା ଦେବୀ କହିଥିଲେ– ରୋଷେଇକୁ ମୁଁ ଏକ କଷ୍ଟକର କାର୍ଯ୍ୟ ବୋଲି ବିଚାର କରି ନଥାଏ । ବରଂ ସେଥିରୁ ଏକ ପ୍ରକାର ଆନନ୍ଦ ପାଇଥାଏ । ପୁଣି ସାମ୍ବାଦିକ ପଚାରିଲେ– ପ୍ରଧାନମନ୍ତ୍ରୀଙ୍କୁ ସାକ୍ଷାତ କରିବାକୁ ଆସୁଥିବା ଲୋକମାନଙ୍କ ପାଇଁ ନିଜ ହାତରେ ରୋଷେଇ କରି ଖାଇବାକୁ ନ ଦେଇ ଅନ୍ୟ ବ୍ୟବସ୍ଥା କଲେ କ'ଣ କ୍ଷତି ହୁଅନ୍ତା ? ଲଳିତା ଦେବୀ ହସି ହସି କହିଲେ "ମୋ ସ୍ୱାମୀଙ୍କୁ ସାକ୍ଷାତ କରିବାକୁ ଆସୁଥିବା ଲୋକମାନେ କ'ଣ ମୋ ପରିବାରର ଜଣେ ଜଣେ ଅସ୍ଥାୟୀ ସଭ୍ୟ ନୁହନ୍ତି ?" ଏହି ଉତ୍ତର ଶୁଣି ସାମ୍ବାଦିକ ଜଣକ କହିଥିଲେ– "Here is a woman, the wife of Prime Minister, living literally of for others."

ଲଳିତା ଦେବୀ ଆଦର୍ଶ ଗୃହିଣୀ ତଥା ଧର୍ମପରାୟଣା ଓ ଅତିଥିପରାୟଣା ଥିଲେ । ସେ ଥିଲେ ଅତ୍ୟଧିକ ପତିପରାୟଣା ମହିଳା । ତାଙ୍କର ନିରଳସ ସେବା ଓ ଯତ୍ନ ଶାସ୍ତ୍ରୀଜୀଙ୍କୁ ଅଧିକ କର୍ମଠ କରିପାରିଥିଲା । ଶାସ୍ତ୍ରୀଜୀଙ୍କ ବିଦେଶ ଯାତ୍ରା ସମୟରେ ସେ ନିଜେ ତାଙ୍କ ପାଖେ ପାଖେ ରହି ତାଙ୍କର ସେବା କରୁଥିଲେ । ପ୍ରଧାନମନ୍ତ୍ରୀଙ୍କ ସହଧର୍ମିଣୀ ହୋଇ ମଧ୍ୟ ସାଧାରଣ ନାରୀ ପରି

ଅଳ୍ପ ଦାମ୍‌ର ଖଦଡ଼ ଶାଢ଼ୀ ପିନ୍ଧିବାରେ ସେ ଅଭ୍ୟସ୍ତ ଥିଲେ । ତାଙ୍କ ଦେହ, ମନ ସବୁଥିରେ ଭାରତୀୟ ନାରୀତ୍ୱର ପ୍ରତିଛବି ଦେଖିବାକୁ ମିଳିଥାଏ । ଲଳିତାଙ୍କ ବ୍ୟକ୍ତିଗତ ଖର୍ଚ୍ଚ ସବୁଠାରୁ କମ୍ । ସେଥିପାଇଁ ନିଜେ ଶାସ୍ତ୍ରୀଜୀ ମଧ୍ୟ ସ୍ତ୍ରୀଙ୍କର ପ୍ରଶଂସା କରିବାକୁ ଭୁଲୁ ନଥିଲେ ।

ଶାସ୍ତ୍ରୀଙ୍କର ଜୀବନ ଥିଲା ସମସ୍ୟାପୂର୍ଣ୍ଣ । ମନ୍ତ୍ରୀ ହିସାବରେ ସେ ନେଇଥିଲେ ସମସ୍ୟା ବହୁଳ ପୋଲିସ୍ ବିଭାଗ । ସତେ ଯେମିତି ସମସ୍ୟାର ଏକ ବ୍ୟୁହ ତାଙ୍କୁ ଘେରି ରହିଥିଲା । ସବୁର ସମାଧାନକୁ ସେ ଠିକ୍ ଭାବରେ ଧୈର୍ଯ୍ୟର ସହ କରୁଥିଲେ । ଆଜୀବନ ଦାରିଦ୍ର୍ୟ ସହିତ ସଂଗ୍ରାମ କରୁଥିବା ଅନ୍ୟ କେହି ଲୋକ ତାଙ୍କ ଭଳି ମନ୍ତ୍ରୀ ପଦଟାଏ ପାଇଥିଲେ ନିଜର ଥିବା ସବୁ ଅଭାବକୁ ମେଣ୍ଟାଇ ଦେବାକୁ ମୁହୂର୍ତ୍ତେ ସମୟ ଲାଗି ନଥାନ୍ତା । ମାତ୍ର ସେଧରଣର ବ୍ୟକ୍ତିତ୍ୱ ତାଙ୍କର ନଥିଲା ।

ମନ୍ତ୍ରୀ ଭାବରେ ଦାୟିତ୍ୱ ନେବା ପରେ ତାଙ୍କୁ ସରକାରୀ ଘର ମିଳିଥିଲା । ସେ ଘରେ ଶୀତତାପ ନିୟନ୍ତ୍ରଣ ବ୍ୟବସ୍ଥା ପାଇଁ ଯନ୍ତ୍ର ଖଞ୍ଜା ଯାଇଥିଲା । ଶୀତ ଦିନେ ଉଷ୍ଣ ଏବଂ ଖରାଦିନେ ଥଣ୍ଡା ରହିବ ଏପରି ଘରକୁ ପାଇଲେ କିଏ ଖୁସୀ ନହେବ । ପିଲାମାନେ ଭାରି ଖୁସୀ । ମାତ୍ର ଲାଲ୍ ବାହାଦୂରଙ୍କୁ ଏକଥା ମୋଟେ ଭଲ ଲାଗିଲା ନାହିଁ । ଭାରତ ଭଳି ଗରିବ ଦେଶ, ସେ ଏ ଗରିବ ଜନତାର ପ୍ରତିନିଧି ହୋଇ ଏତେ ସୁଖ ଭୋଗ କରିବେ ଏହା ଆଦୌ ସମୀଚୀନ ନୁହେଁ । ସେ ଆଦେଶ କଲେ ଏସବୁ ବ୍ୟବସ୍ଥା ଉଠାଇ ଦିଆଯାଉ । ତାଙ୍କ ଆଦେଶ କାଏମ୍ ରହିଲା । ପିଲାମାନେ ବାଧ୍ୟ ହୋଇ ବାପାଙ୍କ ନିଷ୍ପତ୍ତି ମାନିନେଲେ । ମନ୍ତ୍ରୀ ଭାବରେ ଦାମିକା ପୋଷାକ ଆବଶ୍ୟକ, ମାତ୍ର ସେଥିରେ ମଧ୍ୟ ତାଙ୍କର ଥିଲା ବ୍ୟତିକ୍ରମ । ମୋଟ୍ ଉପରେ ଖଦଡ଼ ଧୋତି ଖ ସ୍ତିଏ· ଖଣ୍ଡେ ପଞ୍ଜାବୀ ଓ ତା'ଉପରେ ଜ୍ୟାକେଟ୍ ଏତିକି ତାଙ୍କର ପୋଷାକ । ଏହା ମଧ୍ୟ ସାଧାରଣ ଦର୍ଜି ପାଖରେ ସିଲାଇ କରାଯାଉଥିଲା । ଶାସ୍ତ୍ରୀଙ୍କ ଚାରି ପୁଅ ଓ ଦୁଇ ଝିଅ ଥିଲେ । ସେମାନଙ୍କ ପୋଷାକ ମଧ୍ୟ ଥିଲା ଅତି ସାଧାରଣ । ଖାଦ୍ୟ ବି ଥିଲା ଅତି ସାଧାରଣ । ଶାସ୍ତ୍ରୀଜୀ ମାଛ, ମାଂସ, ଅଣ୍ଡା ଖାଉ ନଥିଲେ । ପିଲାଦିନୁ ଥିଲେ ନିରାମିଷାସୀ । ସାଧାରଣ ମଣିଷଙ୍କ ପରି ଭାତ, ଡାଲି, ତରକାରୀ ଓ ଶାଗ ଥିଲା ତାଙ୍କର ପ୍ରିୟ ଖାଦ୍ୟ ଏବଂ ତାହା ଲଳିତା ଦେବୀଙ୍କ ହାତ ପ୍ରସ୍ତୁତ । କେନ୍ଦ୍ର ପରିବହନ, ଶିଳ୍ପ ଓ ବାଣିଜ୍ୟ ବିଭାଗର ମନ୍ତ୍ରୀ ହିସାବରେ ଦାୟୀତ୍ୱ ନେବା ପରେ ସେ ଦିଗରେ ତାଙ୍କର ଯଥେଷ୍ଟ ସଚେତନଶୀଳତା ଥିଲା । ସେ ଦିଗରେ ସମସ୍ତ କାର୍ଯ୍ୟ ଖୁବ୍ ଦକ୍ଷତାର ସହ ସମ୍ପାଦନ କରିପାରିଥିଲେ । ତାଙ୍କ କାର୍ଯ୍ୟ ଦକ୍ଷତା ଦେଖି ତାଙ୍କୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ଘରୋଇ ବିଭାଗର ଦାୟିତ୍ୱ ଦେଇଥିଲେ । ଲାଲ୍ ବାହାଦୁର ଥିଲେ ଜଣେ କର୍ତ୍ତବ୍ୟ ନିଷ୍ଠ । ତାଙ୍କ ଭିତରେ ମଣିଷ ପ୍ରତି ଦରଦ ବା ସହାନୁଭୂତି ଥିଲେ ହେଁ ସେ ଥିଲେ କର୍ତ୍ତବ୍ୟ କଠୋର । କର୍ତ୍ତବ୍ୟ ପାଖରେ ସେ କିଛି ବାଛ ବିଚାର ରଖୁ ନଥିଲେ । ତାଙ୍କ ଆଗରେ ସମସ୍ତେ ସମାନ ବୋଲି ସେ ବିଶ୍ୱାସୁ ଥିଲେ ।

କବିଙ୍କ ଭାଷାରେ– "ଦୁଃଖେ, ସୁଖେ ସଦା ସ୍ଥିର, ବିଚଳିତ ନୁହେଁ ଧୀର ।"

ବିଜ୍ଞ ଲୋକ ବିଚଳିତ ହେବାର କେବେ ଦେଖା ଯାଏନା, ଦୀର୍ଘ ୨୦ ବର୍ଷ ମନ୍ତ୍ରୀ ପଦରେ ରହିଥିଲେ ମଧ୍ୟ ନିଜ ପରିବାର ରହିବା ପାଇଁ ଦିଲ୍ଲୀରେ ଘର ଖଣ୍ଡିଏ କରି ପାରିନଥିଲେ, କାରଣ ମନ୍ତ୍ରୀ ଭାବରେ ଯାହା ଦରମା ପାଉଥିଲେ ତାହା ପାରିବାରିକ ଖର୍ଚ୍ଚକୁ ନିଅଣ୍ଟ, ତେଣୁ କୌଣସିମତେ ଟାଣଟୁଣ ହୋଇ ଚଳି ଯାଉଥିଲେ । ଅନ୍ୟାନ୍ୟ ସଞ୍ଚୟ କଥା ଉଠୁଛି କେଉଁଠି ।

ଲାଲ୍ ବାହାଦୂର ଥରେ ଅସୁସ୍ଥ ଥାଆନ୍ତି । ଦେହର ଦୁର୍ବଳତା ବଢ଼ି ଚାଲିଲା । ଡାକ୍ତର ପରାମର୍ଶ ଦେଲେ ଅଙ୍ଗୁର ରସ ଖାଇବାକୁ । ଲଳିତା ଦେବୀ ଗିଲାସରେ ଅଙ୍ଗୁର ରସ ଧରି ପହଞ୍ଚିଲେ । ମାତ୍ର ଶାସ୍ତ୍ରୀଜୀ ପିଇବାତ ଦୂରର କଥା ଛୁଇଁଲେ ବି ନାହିଁ । କେମିତି ପିଅନ୍ତେ, ତାଙ୍କରି ଦେଶର ଗରିବ ଲୋକଙ୍କ ଛୁଆ ରୋଗରେ ପଡ଼ି ମିଶ୍ରି ପାଣି ଟିକିଏ ପିଇବାକୁ ପାଉନାହାଁନ୍ତି । ସେହି ଗରିବ ଜନତାର ପ୍ରତିନିଧି ହୋଇ ଏତେ ଭଲ ଜିନିଷ ଖାଇବେ କିପରି, ଡାକ୍ତରଙ୍କ ଯୁକ୍ତି ହାର ମାନିଲା । ଶାସ୍ତ୍ରୀଜୀ ପିଇଲେ ନାହିଁ ।

ଏଥିରୁ ମନେ ହୁଏ ଈଶ୍ୱରଙ୍କ ଦୂତ ଭାବରେ ବୋଧ ହୁଏ ସେ ଏ ଭାରତ ମାଟିରେ ଜନ୍ମ ନେଇଥିଲେ । କିନ୍ତୁ ବୋଧ ହୁଏ ତାହା ବେଶୀ ଦିନ ପାଇଁ ନଥିଲା । ମାତ୍ର ଉଣେଇଶ ମାସ ପ୍ରଧାନମନ୍ତ୍ରୀ ପଦରେ ରହି ସେ ସଂସାରରୁ ଚିର ବିଦାୟ ନେଲେ । ମହାପୁରୁଷମାନେ ବେଶୀ ଦିନ ରହିବା ଦୃଷ୍ଟାନ୍ତ ଦେଖା ଯାଏ ନାହିଁ । ସେ କିପରି ସେଥିରୁ ବାଦ୍ ଯାଇଥାନ୍ତେ । ସେ ଏକାଧାରରେ ଥିଲେ ଅହିଂସା, ଶାନ୍ତି, ଦୃଢ଼ତା ଓ ସାହସର ପ୍ରତୀକ ।

ଭାରତ–ପାକିସ୍ଥାନ ଯୁଦ୍ଧ ଶାସ୍ତ୍ରୀଜୀଙ୍କ ସମୟରେ ଏକ ଐତିହାସିକ ଘଟଣା । ଗୁଜୁରାଟର କଛ ଓ ଲାହୋର ଅଞ୍ଚଳର ପାକିସ୍ଥାନ ସୈନ୍ୟମାନେ ପ୍ରବେଶ କରି ଆକ୍ରମଣ ଚଳାଇଥିଲେ । ପାକିସ୍ଥାନରେ ଶାସକ ଗୋଷ୍ଠୀ ଭାବିଥିଲେ ଖର୍ବକାୟ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୁର ଏ ଆକ୍ରମଣରେ ଦବି ଯାଇପାରନ୍ତି । ଭାରତର ଏ ବିରାଟ ଭୂ–ଭାଗରେ କେତେକ ଅଂଶ ସେମାନେ ମାଡ଼ି ବସିବେ । ମାତ୍ର ଶାସ୍ତ୍ରୀଜୀ ଏ ଆକ୍ରମଣରେ ଆଦୌ ବିଚଳିତ ନହୋଇ ଏହାକୁ ପ୍ରତିହତ କରିବାକୁ ନିର୍ଦ୍ଦେଶ ଦେଇଥିଲେ । "ଅସ୍ତ୍ରର ଜବାବ ଅସ୍ତ୍ରରେ ଦିଆଯିବ ।" ଏହା ସେ ଦୃଢ଼ ଭାବରେ ଘୋଷଣା କରିଥିଲେ । ପାକିସ୍ଥାନକୁ ସମର୍ଥନ ଜଣାଉଥିବା କେତେକ ବିଦେଶୀ ରାଷ୍ଟ୍ରଙ୍କୁ ସେ ସିଧା ସଳଖ ଭାରତର ଶତ୍ରୁ ବୋଲି ଘୋଷଣା କରିଥିଲେ । ଏହି ଯୁଦ୍ଧ ଦେଶର ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ ବିସ୍ତାରୀ ଯାଇଥିଲା । ପ୍ରତ୍ୟେକଙ୍କ ମନରେ ଉତ୍ତେଜନାର ଲହରୀ ଖେଳାଇ ହୋଇ ଯାଇଥିଲା । ଦେଶବାସୀଙ୍କ ମନରେ ତଥା ଭାରତୀୟ ଜବାନ୍‌ମାନଙ୍କ ମନୋବଳ ଅତୁଟ ରଖିବା ପାଇଁ ଶାସ୍ତ୍ରୀଜୀ ଆହ୍ୱାନ ଦେଇ କହିଥିଲେ– "ଜୟ ଜବାନ୍, ଜୟ କିଷାନ୍" ତାଙ୍କର ଏହି ଧ୍ୱନିରେ ଥିଲା ଯାଦୁକରୀର ଶକ୍ତି । ଭାରତୀୟ ସୈନ୍ୟମାନେ ବହୁ ଗୁଣରେ ଉତ୍ସାହିତ ହୋଇ ପାକିସ୍ଥାନ ଭିତରକୁ ମାଡ଼ିଯାଇ ଅତି ଚତୁରତାର ସହ ଗୋପନୀୟ ସ୍ଥାନରେ ରହି ପାକିସ୍ଥାନର ସୈନ୍ୟ ତଥା ସମ୍ପତ୍ତି ନଷ୍ଟ କରି ଦେଇଥିଲେ । ଘମାଘୋଟ ଯୁଦ୍ଧ ପରେ ଭାରତ ବିଜୟୀ ହୋଇଥିଲା । ଶାସ୍ତ୍ରୀଜୀ

ମାନସିକ ଦୃଢ଼ତା ଯୋଗୁ ହିଁ ଭାରତୀୟମାନେ ଉତ୍କଳାତ କରିଥିଲେ । ଏହି ଯୁଦ୍ଧରେ ଶାସ୍ତ୍ରୀଜୀ ନିଜର ବିରାଟ ବ୍ୟକ୍ତିତ୍ୱ, ଅଭୂତପୂର୍ବ ସଂଗଠନ ଶକ୍ତି ଓ ସାହସିକ ରଣ ପରିଚାଳନା ଦେଖାଇ ସମଗ୍ର ପୃଥିବୀବାସୀଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲେ । କେବଳ ଶାସ୍ତ୍ରୀଜୀ କିପରି ଶାନ୍ତି ପ୍ରତିଷ୍ଠା କରିବେ ତାହାହିଁ ଦେଖିବା ପାଇଁ ବିଶ୍ୱବାସୀ ଅପେକ୍ଷା କରିଥାନ୍ତି । ଉଭୟ ଦେଶର ରାଷ୍ଟ୍ର ନାୟକଙ୍କୁ ତାସ୍କେଣ୍ଟ୍ ଯେପରି ଅପେକ୍ଷା କରି ରହିଥାଏ । ଯଥା ସମୟରେ ଆୟୁବ୍ ଖାଁ ଓ ଶାସ୍ତ୍ରୀଜୀ ତାସ୍କେଣ୍ଟଠାରେ ଉପସ୍ଥିତ ହେଲେ । ଏ ଚୁକ୍ତିର ମର୍ମ କ'ଣ ହେବ ଜାଣିବା ପାଇଁ ଦେଶ ବିଦେଶରେ ବହୁ କୂଟନୀତିଜ୍ଞ ଓ ସାମ୍ବାଦିକମାନେ ସେଠାରେ ଉପସ୍ଥିତ ଥାଆନ୍ତି । ଶେଷରେ ଦୁଇ ନେତାଙ୍କ ମଧ୍ୟରେ ମନଖୋଲା କଥାବାର୍ତ୍ତା ଓ ଆଲୋଚନା ହେଲା । ଋଷର ପ୍ରଧାନମନ୍ତ୍ରୀ କୋସିଜେନ୍ ମଧ୍ୟ ସେଠାରେ ଉପସ୍ଥିତ ଥାଆନ୍ତି । ଶେଷରେ ଉଭୟ ରାଷ୍ଟ୍ର ପୂର୍ବ ପରି ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇ ରହିବେ ବୋଲି ସ୍ଥିର ହେଲା । ଉଭୟ ଦେଶ ନିଜ ନିଜର ସୈନ୍ୟମାନଙ୍କୁ ପୁଣି ଫେରାଇ ନେବା ପାଇଁ ରାଜି ହେଲେ । ଯୁଦ୍ଧବନ୍ଦୀ ବିନିମୟ ଶାନ୍ତିପୂର୍ଣ୍ଣ ଭାବରେ ହେବ ବୋଲି ମଧ୍ୟ ସ୍ଥିର ହେଲା ।

ଏହି ଭଳି ଏକ ଦୀର୍ଘ ଚୁକ୍ତି ପତ୍ର ଓ ଆପୋଷ କାଗଜନାମାରେ ଶାସ୍ତ୍ରୀଜୀ ଓ ଆୟୁବ ଖାଁ ଦସ୍ତଖତ କରିଥିଲେ । ଏକ ଦୀର୍ଘ ଆଲୋଚନାରେ ପ୍ରତ୍ୟେକ ଜଟିଳ ପ୍ରଶ୍ନକୁ ଜଟିଳତର ନକରି ଅତି ସହଜରେ ଛିଣ୍ଡାଇ ଦେବାର ଶୈଳୀ ସମସ୍ତଙ୍କୁ ବିସ୍ମିତ କରି ଦେଇଥିଲା । ତାଙ୍କର ଏଭଳି ଗୋଟିଏ ନିଷ୍ପତ୍ତି ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଦେଇଥିଲା ।

ଏହି ଚୁକ୍ତିରେ ସ୍ୱାକ୍ଷରକରି ଶାସ୍ତ୍ରୀଜୀ ବିଶ୍ୱଶାନ୍ତିର ଅଗ୍ରଦୂତ ଭାବେ ପ୍ରତିଷ୍ଠିତ ହେଲେ । ତା' ପରଦିନ ଶାସ୍ତ୍ରୀଜୀ କାବୁଲ ଯିବାର କାର୍ଯ୍ୟକ୍ରମଥିଲା, ସେଦିନ ଶାସ୍ତ୍ରୀଜୀ ବହୁ କାର୍ଯ୍ୟକ୍ରମ ଓ ଆଲୋଚନାରେ ଭାଗନେଇ ବସିଥାନ୍ତି । ଦେହ ଅବଶ ଲାଗୁଥାଏ । ଦେହକୁ ବିଶ୍ରାମ ଏକାନ୍ତ ଆବଶ୍ୟକ ଥିଲା । ଶାସ୍ତ୍ରୀଜୀ ଶୋଇବାକୁ ଯିବା ପୂର୍ବରୁ ପ୍ରଧାନମନ୍ତ୍ରୀ ଦାୟିତ୍ୱରେ ଥିବା ଗୁଲଜାରିଲାଲ ନନ୍ଦାଙ୍କ ସହିତ ଟେଲିଫୋନ୍‌ରେ କଥାବାର୍ତ୍ତା କରିଥିଲେ । ପରିହାସ ଛଳରେ ନନ୍ଦାଙ୍କୁ ଦୁଇଦିନ ଛୁଟି ମଧ୍ୟ ମାଗିଥିଲେ । ସେ ଯେ ସବୁଦିନ ପାଇଁ ଛୁଟି ନେଇଯିବେ ଏକଥା କା ଚିତ୍ତ କାହିଁକି ଭାବିବ ୧୯୬୬ ମସିହା ଜାନୁଆରୀ ମାସ ୧୦ ତାରିଖ ରାତି ସମ୍ପାଦକୀନିବିଡ଼ ଘଟଣା । ରାତି ଆଡ଼ିକି ଧରିବାକ୍ଷଣି ଶାସ୍ତ୍ରୀଜୀ ଛାତିରେ ସାମାନ୍ୟ ଯନ୍ତ୍ରଣା ଅନୁଭବ କଲେ । କ୍ରମେ ଏହି ଯନ୍ତ୍ରଣା ବଢ଼ିଲା । ଋଷିଆର ବଡ଼ ବଡ଼ ଡାକ୍ତରମାନେ ଆସିଲେ ଚିକିତ୍ସା କଲେ । ମାତ୍ର ଫଳ କିଛି ହେଲାନାହିଁ । କ୍ଷୀଣ ସ୍ୱରରେ ଶୁଣାଗଲା ହେ ବାପୁ, ହେ ରାମ୍ । ସେତିକିରେ ସବୁଶେଷ । ଭାରତର ଦରିଦ୍ର ଜନତାର ନେତା, ବିଚକ୍ଷଣ ବୁଦ୍ଧିମାନ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୂର ଚିରଦିନ ପାଇଁ ତାସକେଣ୍ଟ ଭୂଇଁରେ ଢଳିପଡ଼ିଲେ । ଏ ସମ୍ବାଦ ବିଜୁଳି ବେଗରେ ପୃଥିବୀ ସାରା ବ୍ୟାପିଗଲା । ଯିଏ ଶୁଣିଲା ସେ ଥକ୍କା ହୋଇଗଲା । ଭାରତବାସୀ ଯିଏ ଯେଉଁଠି ଥିଲେ ସେଠି ରହିଗଲେ । ବିଶ୍ୱାସ ହେଉ ନଥାଏ । ପ୍ରଶ୍ନ ହେଉଥାଏ କଥାଟି କ'ଣ ସତ ? ତେବେ ଶାସ୍ତ୍ରୀଜୀଙ୍କ ଶବ ବିମାନ ଯୋଗେ ଭାରତକୁ ଅଣାଗଲା । ସାଥିରେ ଆସିଲେଋଷ ପ୍ରଧାନମନ୍ତ୍ରୀ କୋସିଜେନ୍ ଓ ପାକିସ୍ତାନ ରାଷ୍ଟ୍ରପତି ଆୟୁବ ଖାଁ ଅନ୍ୟାନ୍ୟ ବହୁ ଗଣ୍ୟମାନ୍ୟ ବ୍ୟକ୍ତି । ଶବକୁ ତାଙ୍କ ବାସଭବନକୁ ନିଆଗଲା । ଚାରିଆଡ଼େ ହାହାକାର, ପିଲାଠାରୁ ବୁଢ଼ାଯାଏ ସମସ୍ତଙ୍କ ଆଖିରେ ଲୁହ ମନରେ କୋହ । ଲଳିତା ଶାସ୍ତ୍ରୀ ଓ ପିଲାମାନଙ୍କ କଥା ବର୍ଣ୍ଣନା କରିବା ପାଇଁ ଭାଷା ନାହିଁ । ସେମାନଙ୍କୁ ଯେଉଁମାନେ ସାନ୍ତ୍ୱନା ଦେବାକୁ ଯାଉଥିଲେ, ସେମାନେ ବି ସେଥିରେ ସାମିଲ ହୋଇଯାଉଥିଲେ ।

ମହାମନା ଶାସ୍ତ୍ରୀଜୀଙ୍କର ସମଗ୍ର ଜୀବନ ଥିଲା ତ୍ୟାଗପୂର୍ଣ୍ଣ । ଏଭଳି ଏକ ଉତ୍ସର୍ଗୀକୃତ ଜୀବନ କ୍ୱଚିତ୍ ଦେଖିବାକୁ ମିଳେ । ତାଙ୍କ ଜୀବନ ଯାତ୍ରା ପଥରେ ସେ ଆଦର୍ଶର ରତ୍ନରେଣୁ ଗୁଡ଼ିଏ ବୁଣି ଦେଇ ଯାଇଛନ୍ତି । ତାକୁ ସଂଗ୍ରହ କରିବାର ସାମର୍ଥ୍ୟ ଆମର ନାହିଁ । ଶାସ୍ତ୍ରୀଜୀଙ୍କ ସମ୍ପର୍କରେ ଗୋପବନ୍ଧୁଙ୍କର ଗୋଟିଏ ଉକ୍ତି ମନେ ପଡ଼େ–

"ନିଜ ସ୍ୱାର୍ଥ ଲାଗି ଜାତ ନୁହେଁ ହିନ୍ଦୁ,
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ" ।

ଆଜି ଲାଲ୍ ବାହାଦୂର ଶାସ୍ତ୍ରୀ ନାହାନ୍ତି ସତ, କିନ୍ତୁ ତାଙ୍କର ସତ୍ୟନିଷ୍ଠ, ସତ୍ତ୍ୱବାଦିତା, ସାହସ ଓ ଦୃଢ଼ତା ଶାସ୍ତ୍ରୀଜୀଙ୍କୁ ଭାରତବାସୀଙ୍କ ମଧ୍ୟରେ ଚିରଦିନ ଅମର କରି ରଖିବ । ଲାଲ୍ ବାହାଦୂରଙ୍କ ମୃତ୍ୟୁପରେ ତାଙ୍କୁ ଭାରତ ସରକାର ମରଣୋତ୍ତର ଭାରତ ରତ୍ନ ଉପାଧିରେ ଭୂଷିତ କରିଥିଲେ । ଯେ ପର୍ଯ୍ୟନ୍ତ ଏ ଭାରତ ରହିଛି ସେ ପର୍ଯ୍ୟନ୍ତ ତାଙ୍କର "ଜୟ ଜୱାନ, ଜୟ କିଷାନ୍" ଧ୍ୱନି ଆକାଶ ବତାସରେ ପ୍ରତିଧ୍ୱନିତ ହେଉଥିବ ।

---

[illegible]
[illegible] ସାହି, ବ୍ରହ୍ମପୁର-୧



## ଗୋଟିଏ ଗାଁର କାହାଣୀ

ଫୁଲବାଣୀ ଜିଲ୍ଲା ରାଇକିଆ ବ୍ଲକ୍‌ର ଇନ୍ଦ୍ରଗଡ଼ ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଦୁବା ଗାଁ । ଗାଁରେ ପହଞ୍ଚିବାକୁ ହେଲେ ଇନ୍ଦ୍ରଗଡ଼ଠାରୁ ପଶ୍ଚିମ ଦିଗରେ ଚାଲି ଚାଲି ତିନୋଟି ପାହାଡ଼ ପାର ହୋଇ ସାତ କିଲୋମିଟର ଯିବାକୁ ହେବ । ଗାଁ ଚାରିପଟେ ପାହାଡ଼, ଘଞ୍ଚ ଜଙ୍ଗଲ । ଲୋକସଂଖ୍ୟା ୮୦୦ ଭିତରେ । ସମସ୍ତେ ଆଦିବାସୀ । ଗାଁରେ ଗୋଟିଏ ପ୍ରା:ପି: ସ୍କୁଲ ଅଛି ।

ହେଲେ ଗାଁରେ ପିଇବା ପାଣିର କିଛି ସୁବିଧା ନଥିଲା । ଗାଁଠାରୁ ପ୍ରାୟ ଦୁଇ କିଲୋମିଟର ଦୂରରେ ଚୂଆଟିଏ ଥିଲା । ପାହାଡ଼ିଆ ଜଙ୍ଗଲରୁ ବୋହି ଯାଉଥିବା ପାଣିଧାର ଓ ନାଳରୁ ଚୂଆର ସୃଷ୍ଟି । ଓଦାଳିଆ ଖାଲୁଆ ଯାଗାକୁ ଟିକିଏ ଖୋଳି ଦେଇ ଗାତ କରି ଲୋକେ ସେଠାରୁ ପାଣି ଆଣି ବ୍ୟବହାର କରୁଥିଲେ ବର୍ଷ ବର୍ଷ ଧରି । ଗାଁର ଶ୍ରୀ ଦେବରାଜ ପ୍ରଧାନ, ବୟସ ୬୦ ବର୍ଷ । ନିତ୍ୟାନନ୍ଦ ପ୍ରଧାନ, ବୟସ ୪୦ ବର୍ଷ । ଲେଙ୍ଗା ପ୍ରଧାନ, ବୟସ ୩୫ ବର୍ଷ । ସମସ୍ତେ କହନ୍ତି ଯେ ସେମାନେ ଜାଣିବାରେ ଚୂଆ ହିଁ ଥିଲା ସେମାନଙ୍କର ପାଣି ପାଇଁ ସବୁ କିଛି । ସେଠାରେ ଗାଧୋଇବା, ଲୁଗାପଟା କାଚିବା, ବାସନକୁସନ ମାଜିବା, ଗୋରୁଗାଈ ସହ ଗାଁ ଲୋକମାନେ ବି ସେହି ମଇଳା ପାଣି ପିଉଥିଲେ । ଆଉ କ'ଣ ଚାରା ଅଛି ? ସେମାନେ କହନ୍ତି, ପାଣି ପାଇଁ ସେମାନଙ୍କୁ ବର୍ଷ ବର୍ଷ ଧରି ବହୁତ କଷ୍ଟ କରିବାକୁ ପଡ଼ିଛି । ବହୁତ ଦିନ ପରେ ଭଗବାନ ତାଙ୍କ ଗୁହାରୀ ଶୁଣିଲେ । ଗତବର୍ଷ ତାଙ୍କ ଗାଁରେ ଗୋଟିଏ ନଳକୂପ ଖୋଳାଗଲା । ଲୋକମାନେ ପରିଷ୍କାର ପାଣି ପାଇଲେ । ସେମାନଙ୍କର କଷ୍ଟ ଦୂର ହୋଇଛି । ଏ ଗାଁକୁ କ୍ୟାଲେକ୍‌ସି ରିପୁରଙ୍ଗୀ ଅବସ୍ଥାରେ (ଡ଼ିସ୍‌ମେଣ୍ଟାଲ୍) ଭାଗରେ ବହୁ କଷ୍ଟରେ ନିଆଯାଇ ନଳକୂପ ଖୋଳାଯାଇଛି । ଗତ ଦୁଇବର୍ଷ ମଧ୍ୟରେ ପିଇବା ପାଣିର କୌଣସି ସୁବିଧା ନଥିବା ଏପରି ପାଞ୍ଚୋଟି ଗାଁରେ ୭ଟି ନଳକୂପ ଖନନ କରାଯାଇ ପିଇବା ପାଣି ଯୋଗାଇ ଦିଆଯାଇଥିବା ଗ୍ରାମ୍ୟ ଉନ୍ନୟନ ବିଭାଗ ରାଇକିଆସ୍ଥ କନିଷ୍ଠ ଯନ୍ତ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ସାହୁଙ୍କଠାରୁ ପ୍ରକାଶ ।

ଏ ହେଲା ଗୋଟିଏ ଗାଁର କାହାଣୀ । ସତ ଘଟଣା । ଫୁଲବାଣୀ ଜିଲ୍ଲାର ରାଇକିଆ ବ୍ଲକ୍‌ର ଗାଁ ଗାଁରେ ନଳକୂପ କିମ୍ବା ପରିମଳ କୂପ ଖନନ କରାଯାଇ ଗତ ଦୁଇବର୍ଷ ଭିତରେ ଲୋକଙ୍କୁ ପିଇବା ପାଣିର ସୁବିଧା କରିଦିଆଯାଇଛି । ଯେଉଁ ଗାଁକୁ ରାସ୍ତା ନାହିଁ, ପାହାଡ଼, ଜଙ୍ଗଲ ଭିତରେ ରହିଥିବା ଆଭ୍ୟନ୍ତରୀଣ ଅଞ୍ଚଳର ଅତି ଦୁର୍ଗମ ଗାଁକୁ ମଧ୍ୟ ବାଦ୍ ଦିଆଯାଇ ନାହିଁ । ରାଇକିଆ ବ୍ଲକ୍‌ରେ ରହିଥିବା ସମସ୍ତ ୧୩୫ଟି ଗାଁକୁ ପିଇବା ପାଣି ଯୋଗାଇ ଦିଆସରିଛି । ଏସବୁ ଗାଁରେ ଏ ପର୍ଯ୍ୟନ୍ତ ମୋଟ୍ ୩୫୫ଟି ନଳକୂପ, ଗୋଟିଏ ପରିମଳ କୂପ ଖୋଳାଯାଇଛି । ଏହା ମଧ୍ୟରେ ୩୫ଟି ନଳକୂପ ସ୍ଥାୟୀ ଭାବରେ ଅଚଳ ହୋଇପଡ଼ିଥିବା ବେଳେ ଅସ୍ଥାୟୀ ଭାବେ ଅଚଳ ହୋଇପଡ଼ୁଥିବା ନଳକୂପଗୁଡ଼ିକୁ ତୁରନ୍ତ ମରାମତି କରାଯାଇ ସଚଳ କରାଯିବା ବ୍ୟବସ୍ଥା ରହିଛି । ସେଥିପାଇଁ ବ୍ଲକ୍ ସଦର ମହକୁମା ରାଇକିଆରେ ଗ୍ରାମ୍ୟ ଉନ୍ନୟନ ବିଭାଗର ଭ୍ରାମ୍ୟମାଣ (ମରାମତି) ଗାଡ଼ି ରହିଛି । ଏ ଗାଡ଼ି ରାଇକିଆ ଓ ନୂଆଗାଁ, ଦୁଇଟି ବ୍ଲକର ଗାଁ ଗାଁ ବୁଲି ନଳକୂପର ଗୁରୁତର ଦୋଷତ୍ରୁଟି ସଜାଡ଼ନ୍ତି । ରାଇକିଆ ବ୍ଲକ୍ ପାଇଁ ଦୁଇଜଣ ରିଗର ମିସ୍ତ୍ରୀ, ୪ ଜଣ ସ୍ଥାୟୀ ଶ୍ରମିକ, କନିଷ୍ଠ ଯନ୍ତ୍ରୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିଛନ୍ତି । ସେମାନେ ନଳକୂପର ସାମାନ୍ୟ ତ୍ରୁଟି ସଜାଡ଼ନ୍ତି । ଏସବୁ କାର୍ଯ୍ୟ ଫୁଲବାଣୀ ନିର୍ବାହୀ ଯନ୍ତ୍ରୀ ଏବଂ ଜି: ଉଦୟଗିରି କନିଷ୍ଠ ଯନ୍ତ୍ରୀ ତତ୍ତ୍ୱାବଧାନ କରନ୍ତି ।



କେନ୍ଦ୍ରାପଡ଼ାଠାରେ ଅନୁଷ୍ଠିତ ଜିଲ୍ଲାସ୍ତରୀୟ କ୍ରୀଡ଼ା ପ୍ରତିଯୋଗିତାକୁ ମନ୍ତ୍ରୀ ଶ୍ରୀ ବେଦପ୍ରକାଶ ଅଗ୍ରୱାଲ୍ ଉଦ୍‌ଘାଟନ କରୁଛନ୍ତି ।

# ସମ୍ବାଦ ପରିକ୍ରମା

## ପୁରୀ ଶ୍ରୀ ମନ୍ଦିର ମରାମତି ନିମନ୍ତେ ପର୍ଯ୍ୟାପ୍ତ ପରିମାଣ ଅର୍ଥର ବ୍ୟବସ୍ଥା କରାଯିବ

କେନ୍ଦ୍ର ମାନବ ସମ୍ବଳ ବିକାଶ ମନ୍ତ୍ରୀ ଶ୍ରୀ ଅର୍ଜୁନ ସିଂହ, ରାଜ୍ୟ କ୍ରୀଡ଼ା, ସଂସ୍କୃତି, ଯୁବ ସେବା ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ପତ୍ରର ଉତ୍ତରରେ ଜଣାଇଛନ୍ତି ଯେ ଶ୍ରୀମନ୍ଦିର ମରାମତି କାର୍ଯ୍ୟ ନିମନ୍ତେ ପର୍ଯ୍ୟାପ୍ତ ପରିମାଣର ଅର୍ଥ ବ୍ୟବସ୍ଥା କରାଯିବ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ଅନ୍ୟାନ୍ୟ ମନ୍ତ୍ରୀ ବୃନ୍ଦ ଶ୍ରୀମନ୍ଦିରର ସୁରକ୍ଷା ନିମନ୍ତେ ଯେଉଁ ଗୁରୁତ୍ୱ ଆରୋପ କରିଛନ୍ତି, ତାହା ସେ ଉପଲବ୍ଧି କରିଛନ୍ତି ବୋଲି ପ୍ରକାଶ, ଗର୍ଭଗୃହର ମରାମତି କାର୍ଯ୍ୟ ଠାକୁରଙ୍କ ସ୍ଥାନାନ୍ତର ପରେ ପରେ ଆରମ୍ଭ କରାଯାଇ ଆଠମାସରୁ ନଅମାସ ମଧ୍ୟରେ ଶେଷ କରାଯିବାପାଇଁ ଲକ୍ଷ୍ୟ ରଖାଯାଇଛି ବୋଲି ଶ୍ରୀ ସିଂହ କହିଥିଲେ । କେବଳ ମନ୍ଦିର ଶିଖର ଭାଗ ପୁନଃନିର୍ମାଣ ପାଇଁ ପ୍ରାୟ ଦୁଇବର୍ଷ ସମୟ ଲାଗିପାରେ ବୋଲି ମନ୍ତ୍ରୀ ଶ୍ରୀ ସିଂହ, ଉକ୍ତ ପତ୍ରରେ ପ୍ରକାଶ କରିଛନ୍ତି ।

## ଓଡ଼ିଶା ମହିଳା କ୍ରୀଡ଼ାବିତ୍ ଆଜି ସର୍ବୋଚ୍ଚ ସ୍ଥାନରେ ପହଞ୍ଚିଲେଣି

ରାଜ୍ୟ ସରକାରଙ୍କ କ୍ରୀଡ଼ା ଆନ୍ଦୋଳନ ଯେ କେବଳ ଓଡ଼ିଶାର ପୁରୁଷ ଖେଳାଳୀମାନଙ୍କୁ ଜାତୀୟ ଆନ୍ତର୍ଜାତୀୟ ସ୍ତରରେ ସୁନାମ ଅର୍ଜନର ସୁଯୋଗ ସୃଷ୍ଟି କରିଛି ତା' ନୁହେଁ, ତା' ସହିତ ରାଜ୍ୟର ମହିଳା ଖେଳାଳୀମାନେ ମଧ୍ୟ ଆଜି ଜାତୀୟ ଓ ଆନ୍ତର୍ଜାତୀୟ କ୍ରୀଡ଼ା ଜଗତରେ ସ୍ଥାନ ଅଧିକାର କରିପାରିଛନ୍ତି । ରାଜ୍ୟ କ୍ରୀଡ଼ା ନିର୍ଦ୍ଦେଶାଳୟ ଅଧୀନସ୍ଥ କ୍ରୀଡ଼ା ଛାତ୍ରାବାସ ଓ ଭାରତୀୟ କ୍ରୀଡ଼ା ପ୍ରାଧିକରଣ ଛାତ୍ରାବାସଗୁଡ଼ିକୁ ସୁସଙ୍ଗଠିତ କରାଯାଇ ଦକ୍ଷ କ୍ରୀଡ଼ା ପ୍ରଶିକ୍ଷକମାନଙ୍କ ଦ୍ୱାରା ଏବଂ ବିଭିନ୍ନ ସମୟରେ ଅନୁଷ୍ଠିତ ଦେଶର ବିଭିନ୍ନ ପ୍ରଶିକ୍ଷଣ କେନ୍ଦ୍ରକୁ ପଠାଯାଇ ଉନ୍ନତ ତାଲିମ ବ୍ୟବସ୍ଥା ଯୋଗୁ ଆଜି ରାଜ୍ୟର ମହିଳା ଖେଳାଳୀମାନେ ଉଭୟ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଉଲ୍ଲେଖନୀୟ ସଫଳତା ଲାଭ କରି ରାଜ୍ୟର ଗୌରବ ବୃଦ୍ଧି କରିବାରେ ଲାଗିଛନ୍ତି ।

ଓଡ଼ିଶା କ୍ରୀଡ଼ା ଜଗତରେ ମହିଳା ଖେଳାଳୀ ରଚିତା ପଣ୍ଡା, ପ୍ରମିଳା ମଲ୍ଲ, ସୁଷମା ବେହେରା ପ୍ରମୁଖ ଆନ୍ତର୍ଜାତୀୟ ସ୍ତରରେ ସଫଳତା ଲାଭ କରିଥିବା ବେଳେ ମଧୁସ୍ମିତା ଶତପଥୀ, ମିଲା ଓରାମ, ଶ୍ରୀଲେଖା ନାୟକ, ସ୍ୱର୍ଣ୍ଣଲତା ପରିଡ଼ା, ସ୍ୱର୍ଣ୍ଣପ୍ରଭା ମହାନ୍ତି, କିରଣବାଳା ଏବଂ ବିଦ୍ୟାଧରୀ ଖୁଣ୍ଟିଆ ପ୍ରମୁଖ ମହିଳା ଖେଳାଳୀମାନେ ଜାତୀୟ ସ୍ତରରେ ବହୁ ପଦକ ଲାଭ କରିବାର ଗୌରବ ଅର୍ଜନ କରିପାରିଛନ୍ତି ।

ଏହା ବ୍ୟତୀତ କୁମାରୀ ସୁନୀତା କେରକେଟା, କୁମାରୀ କମଳା ପ୍ରଭା ବାଲା ଏବଂ କୁମାରୀ ଗ୍ଲୋରିଆ ତୁଙ୍ଗଡୁଙ୍ଗ ପ୍ରମୁଖ ହକି ଖେଳାଳୀଙ୍କୁ ଜାତୀୟ ଜୁନିୟର ହକି ପ୍ରଶିକ୍ଷଣ ଶିବିରକୁ ତାଲିମ ପାଇଁ ପଠାଯାଇଥିଲା ।ସର୍ବଭାରତୀୟ ଜୁନିୟର ହକି ଦଳ ନିମନ୍ତେ ସେମାନେ ମନୋନୀତ ହେବାର ସମ୍ଭାବନା ଉଜ୍ଜ୍ୱଳ ଥିବା, ତାଙ୍କ ଖେଳ ନୈପୁଣ୍ୟତାରୁ ସୂଚିତ ହୁଏ । ସୂଚନାଯୋଗ୍ୟ ଯେ ପୂର୍ବରୁ ଓଡ଼ିଶାର ମହିଳା ହକି ଖେଳାଳୀ ଦଳ ସର୍ବଭାରତୀୟ ଗ୍ରାମାଞ୍ଚଳ କ୍ରୀଡ଼ା ପ୍ରତିଯୋଗିତାରେ ବହୁବାର ପଦକ ହାସଲ କରିଥିଲେ । ପୁନଶ୍ଚ ସେମାନେ ୧୯୯୧-୯୨ରେ ବାଙ୍ଗାଲୋରଠାରେ ଅନୁଷ୍ଠିତ ଜାତୀୟ ସିନିୟର୍ ମହିଳା ହକି ପ୍ରତିଯୋଗିତାରେ ପ୍ରଥମ ଥର ପାଇଁ ତୃତୀୟ ସ୍ଥାନ ଅଧିକାର କରିପାରିଥିଲେ ।

ଦିଲ୍ଲୀଠାରେ ଅନୁଷ୍ଠିତ ହେଉଥିବା ଏସିଆନ୍ ଜୁନିୟର୍ ଆଥ୍ଲେଟିକ୍ ଚମ୍ପିୟନ୍‌ସିପ୍‌ରେ ଯୋଗ ଦେବା ନିମନ୍ତେ ଓଡ଼ିଶାର ରଚିତା ପଣ୍ଡା, ଅନୁରାଧା ବିଶ୍ୱାଳ, ସୁଷମା ବେହେରା ଏବଂ ବିଦ୍ୟାଧରୀ ମାରାଣ୍ଡି ଦିଲ୍ଲୀଯାତ୍ରା କରିଛନ୍ତି । ସର୍ବଭାରତୀୟ ସ୍ତରରେ ଅନୁଷ୍ଠିତ ହକି, ଦୌଡ଼କୁଦ, କବାଡ଼ି, ସନ୍ତରଣ ଓ ଜିମ୍‌ନାଷ୍ଟିକ୍ସ ପ୍ରଭୃତି କ୍ରୀଡ଼ାମାନଙ୍କରେ ଓଡ଼ିଶାର ମହିଳା କ୍ରୀଡ଼ାବିତ୍‌ମାନେ କୃତିତ୍ୱର ସହ ,ସଫଳତା ଲାଭ କରିବା ସହ, ରାଜ୍ୟରେ କ୍ରୀଡ଼ାର ଅଗ୍ରଗତି ଘଟୁଥିବାର ପ୍ରମାଣ ଦେଉଛନ୍ତି ଏମାନେ ।

ବିଭାଗୀୟ ମନ୍ତ୍ରୀ ଶ୍ରୀ ଶରତ କୁମାର କର, ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ଏବଂ ନିର୍ଦ୍ଦେଶକ ଡ଼ଃ ବିମଳେନ୍ଦୁ ମହାନ୍ତିଙ୍କ ବଳିଷ୍ଠ ପଦକ୍ଷେପ ଓଡ଼ିଶାକୁ କ୍ରୀଡ଼ା ଜଗତରେ ଶୀର୍ଷସ୍ଥାନକୁ ଯେ ଦିନେ ନେଇଯାଇ ପାରିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

## ଯୁବବନ୍ଧୁ ସାଂସ୍କୃତିକ ଅନୁଷ୍ଠାନ ପାଇଁ କେନ୍ଦ୍ରର ଦୁଇଲକ୍ଷ ଟଙ୍କା ମଞ୍ଜୁର

ଓଡ଼ିଶା 'ଯୁବବନ୍ଧୁ ସାଂସ୍କୃତିକ' ଗୋଷ୍ଠୀର ଗୃହ ନିର୍ମାଣ ନିମନ୍ତେ ରାଜ୍ୟ କ୍ରୀଡ଼ା, ଯୁବସେବା ଏବଂ ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର କେନ୍ଦ୍ର ମାନବ ସମ୍ବଳ ବିକାଶ ବିଭାଗକୁ ପଠାଇଥିବା ସୁପାରିଶକୁ କାର୍ଯ୍ୟକାରୀ କରି ଉକ୍ତ ଅନୁଷ୍ଠାନ ନିମନ୍ତେ ଦୁଇ ଲକ୍ଷ ଟଙ୍କା ମଞ୍ଜୁର କରିଥିବା, ବିଭାଗୀୟ ଶାସନ ସଚିବଙ୍କଠାରୁ ପ୍ରାପ୍ତ ପତ୍ରରୁ ସୂଚିତ ହୁଏ । ତେବେ ଉକ୍ତ ଅନୁଷ୍ଠାନ ଦୁଇଲକ୍ଷ ଟଙ୍କାର ନିଜସ୍ୱ ପାଣ୍ଠି ଗଚ୍ଛିତ କରିଥିବା ପ୍ରମାଣ କଲା ପରେ, ମଞ୍ଜୁରୀ ଅର୍ଥ ସେଠ ପାଇପାରିବେ ବୋଲି ଉକ୍ତ ଅନୁଷ୍ଠାନକୁ କେନ୍ଦ୍ର ମାନବ ସମ୍ବଳ ବିକାଶ ବିଭାଗ ଜଣାଇଥିବା ପ୍ରକାଶ ।

## ପାମୋଲିନ୍ ତେଲ ଉପରୁ କଟକଣା ଉଠିଲା

ରାଜ୍ୟର ଖାଉଟିମାନଙ୍କୁ ଆବଶ୍ୟକତା ଅନୁଯାୟୀ ପାମୋଲିନ୍ ତେଲ ଯୋଗାଇ ଦିଆଯିବ ବୋଲି ଖାଦ୍ୟ ଓ ଯୋଗାଣ ବିଭାଗ ସୂତ୍ରରୁ ପ୍ରକାଶ । ଏଥିପାଇଁ ରହିଥିବା ସମସ୍ତ ପ୍ରକାର କଟକଣାକୁ ଉଠାଇ ଦିଆଯାଇଛି । ସରକାରଙ୍କ ପକ୍ଷରୁ ଜାରି କରାଯାଇଥିବା ସଂଶୋଧିତ ଆଦେଶ ଅନୁଯାୟୀ ଯେ କୌଣସି ଖାଉଟି ଆବଶ୍ୟକ ମୁତାବକ ଯେତେ ପରିମାଣର ପାମୋଲିନ୍ ତେଲ ନେବାକୁ ଚାହିଁବେ, ସେମାନେ ଯେ କୌଣସି ସୁଲଭ ବିକ୍ରୟ କେନ୍ଦ୍ରରୁ କିଣିପାରିବେ । ଏପରିକି ସାଧାରଣ ବଣ୍ଟନ ବ୍ୟବସ୍ଥା (କଣ୍ଟ୍ରୋଲ) ଦୋକାନରେ ବିନା ଖାଉଟି କାର୍ଡରେ ମଧ୍ୟ ପାମୋଲିନ୍ ତେଲ ପାଇପାରିବେ ।

ସରକାରଙ୍କ ପାଖରେ ପର୍ଯ୍ୟାପ୍ତ ପରିମାଣର ପାମୋଲିନ୍ ତେଲମହଜୁଦ ରହିଥିବା ଦୃଷ୍ଟିରୁ ଏ ପ୍ରକାର କୋହଳ ନିଷ୍ପତ୍ତି ନିଆଯାଇଥିବା ଯୋଗାଣ ବିଭାଗ ସୂତ୍ରରୁ ପ୍ରକାଶ ।

## ବନୀକରଣ ନିମନ୍ତେ ନୂତନ ଉଦ୍ୟମ କାର୍ଯ୍ୟକ୍ରମରେ ଉଲ୍ଲେଖନୀୟ ସଫଳତା

ବନୀକରଣ ନିମନ୍ତେ ନୂତନ ଉଦ୍ୟମ କାର୍ଯ୍ୟକ୍ରମ ଅନୁଯାୟୀ ୧୯୯୨–୯୩ ଆର୍ଥିକବର୍ଷରେ୬୦ ହଜାର ହେକ୍ଟର ଜମିରେ ଜଙ୍ଗଲ ସୃଷ୍ଟି କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ବେଳେ ଗତ ଅପ୍ରେଲ ମାସରୁ ନଭେମ୍ବର ମାସ ସୁଦ୍ଧା, ଅର୍ଥାତ୍ ୮ ମାସ ମଧ୍ୟରେ ୬୦,୯୮୬·୩୦ ହେକ୍ଟର ଜମିରେ ଜଙ୍ଗଲ ସୃଷ୍ଟି କରାଯାଇ ଧାର୍ଯ୍ୟ ଲକ୍ଷ୍ୟର ଶତକଡ଼ା ୧୦୮·୩୧ ଭାଗ ସଫଳତା ହାସଲ କରାଯାଇ ପାରିଛି । କେବଳ ଗତ ନଭେମ୍ବର ମାସରେ ଜଙ୍ଗଲ ସୃଷ୍ଟି କରାଯାଇଥିବା ୩୮୬·୭୬ ହେକ୍ଟର ଜମି ଏହାର ଅନ୍ତର୍ଭୁକ୍ତ ।

ସେହିପରି ଉକ୍ତ କାର୍ଯ୍ୟକ୍ରମ ପାଇଁ ଚଳିତ ଆର୍ଥିକ ବର୍ଷରେ ୫ କୋଟି ଚାରା ଉତ୍ପାଦନ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ନଭେମ୍ବର ସୁଦ୍ଧା ୪ କୋଟି ଏକ ଲକ୍ଷରୁ ଊର୍ଦ୍ଧ୍ୱ ଚାରା ଉତ୍ପାଦନ କରାଯାଇ ଧାର୍ଯ୍ୟ ଲକ୍ଷ୍ୟର ଶତକଡା ୮୦·୨୫ ଭାଗ ସଫଳତା ହାସଲ କରାଯାଇ ପାରିଛି । କେବଳ ଗତ ନଭେମ୍ବର ମାସରେ ଉତ୍ପାଦିତ ହୋଇଥିବା ୩୬ ଲକ୍ଷରୁ ଊର୍ଦ୍ଧ୍ୱ ଚାରା ଏହାର ଅନ୍ତର୍ଭୁକ୍ତ ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ଜଣାପଡ଼ିଛି ।

## ନବବର୍ଷ ଉପଲକ୍ଷେ ରାଜଭବନରେ ବିଶେଷ ସମାବେଶ

ଜାନୁଆରୀ ପହିଲାଦିନ ନବବର୍ଷ ଉପଲକ୍ଷେ ରାଜଭବନରେ ଏକ ମନୋଜ୍ଞ ସମାବେଶ ଅନୁଷ୍ଠିତ ହୋଇଯାଇଛି । ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ରାଜଭବନର ତଥା ଅନ୍ୟାନ୍ୟ ବହୁ ସରକାରୀ ବିଭାଗର ଉପସ୍ଥିତ କର୍ମଚାରୀଙ୍କ ସହିତ ସମସ୍ତ ରାଜ୍ୟବାସୀଙ୍କୁ ନୂତନ ବର୍ଷର ହାର୍ଦ୍ଦିକ ଅଭିନନ୍ଦନ ଜଣାଇ ସମସ୍ତଙ୍କର ସୁଖ, ଶାନ୍ତି ଓ ସମୃଦ୍ଧି କାମନା କରିଥିଲେ ।

ଶାସନ କ୍ଷେତ୍ରରେ ହେଉ କିମ୍ବା ସାମାଜିକ କ୍ଷେତ୍ରରେ ହେଉ ପ୍ରତ୍ୟେକ ରାଜ୍ୟବାସୀଙ୍କ ଉପରେ ନ୍ୟସ୍ତ ହୋଇଥିବା ଦାୟିତ୍ୱକୁ ସୁନ୍ଦର ରୂପେ ଦକ୍ଷତାର ସହ ପାଳନ ନିମନ୍ତେ ନୂତନ ବର୍ଷ ସମସ୍ତଙ୍କୁ ନୂଆ ପ୍ରେରଣା ଦେଉ ବୋଲି ରାଜ୍ୟପାଳ ଆଶାପୋଷଣ କରିଥିଲେ । ରାଷ୍ଟ୍ରର ଏହି ରଙ୍ଗମଞ୍ଚରେ ଆମ୍ଭେମାନେ ବିଭିନ୍ନ ଭୂମିକାରେ ଅଭିନୟ କରୁଥିବାରୁ ଆମମାନଙ୍କ ମଧ୍ୟରେ ଛୋଟ ବଡ଼ ଭେଦଭାବ ନରଖାଯାଉ ବୋଲି ପରାମର୍ଶ ଦେବା ସହ ପୁଷ୍ପବାଟୀକାର ମାଳୀ ସାନ ନୁହେଁ କିମ୍ବା ରାଜ୍ୟପାଳ ବଡ଼ ନୁହେଁ ବୋଲି ମନ୍ତବ୍ୟ ପ୍ରଦାନ କରିଥିଲେ । ପ୍ରାସଙ୍ଗିକ ହେଉଛି ଯେ ପ୍ରତ୍ୟେକ ଭୂମିକାର ଅଭିନୟ ନିଖୁଣ ହେବା ଦରକାର ।

ନିକଟରେ ଅନୁଷ୍ଠିତ ହୋଇଥିବା ପୁଷ୍ପ ପ୍ରଦର୍ଶନୀରେ ଭାଗନେଇଥିବା ରାଜଭବନ ପୁଷ୍ପବାଟୀକାର ବିଭିନ୍ନ କିସମର ପୁଷ୍ପ ଅତି ଉତ୍କୃଷ୍ଟମାନର ଥିବାରୁ ପ୍ରାୟ ୨୯ଟି ପୁରସ୍କାର ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିବାରୁ, ରାଜ୍ୟପାଳ ଶ୍ରୀ ଶର୍ମା ମାଳୀମାନଙ୍କର ଶ୍ରମ, କର୍ମତତ୍ପରତା, ଆଗ୍ରହ ପାଇଁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଥିଲେ । ଶ୍ରୀ ଶର୍ମା ୫୦ ଜଣ ମାଳୀ ଓ ହେଡ୍‌ମାଳୀମାନଙ୍କୁ କପ୍ ପ୍ରଦାନ କରି ରାଜଭବନ ପରିବେଶକୁ ଶ୍ରୀମଣ୍ଡିତ କରିବାରେ ସେମାନେ ସହାୟକ ହୋଇପାରିଛନ୍ତି ବୋଲି ମତବ୍ୟକ୍ତ କରିଥିଲେ ।

ପ୍ରଭାତରୁ ସମାଜର ବହୁ ମାନ୍ୟଗଣ୍ୟ ବ୍ୟକ୍ତି, ଅନୁଷ୍ଠାନ ଓ କର୍ମକର୍ତ୍ତାମାନେ ରାଜଭବନକୁ ଆସି ରାଜ୍ୟପାଳ ଶ୍ରୀ ଶର୍ମାଙ୍କୁ ସାକ୍ଷାତ କରିଥିଲେ ଓ ନବବର୍ଷର ଶୁଭେଚ୍ଛା ଜଣାଇ ଥିଲେ । ଏହି ସମାବେଶରେ ଅନ୍ୟମାନଙ୍କ ମଧ୍ୟରେ ତାଙ୍କର ଶାସନ ସଚିବ ଶ୍ରୀ ପାଢ଼ୀ ଉପସ୍ଥିତ ଥିଲେ । କମ୍ପଟ୍ରୋଲର ଶ୍ରୀ ଅମରେନ୍ଦ୍ର ନାରାୟଣ ଦାସ କାର୍ଯ୍ୟକ୍ରମର ସଂଯୋଜନା କରିଥିଲେ । ଶେଷରେ ଲୋକ ସମ୍ପର୍କ ଅଧିକାରୀ ଶ୍ରୀ ଧୂର ଧନ୍ୟବାଦ ଅର୍ପଣ କରିଥିଲେ ।

## ତୈଳ ସଂରକ୍ଷଣ ଅଭିଯାନ ସଫଳ କରିବା ପାଇଁ ଜଣସାଧାରଣଙ୍କ ସହଯୋଗ ଲୋଡ଼ା

ରାଜ୍ୟରେ ତୈଳ ସଂରକ୍ଷଣ ଅଭିଯାନକୁ ସଫଳ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକ ଜନସାଧାରଣଙ୍କ ସହଯୋଗ କାମନା କରିଛନ୍ତି । ପେଟ୍ରୋଲିୟମ୍ ସଂରକ୍ଷଣ ସପ୍ତାହ ଉପଲକ୍ଷେ ମୁଖ୍ୟମନ୍ତ୍ରୀ ଏକ ବାର୍ତ୍ତା ଦେଇ କହିଛନ୍ତିଯେ, ପେଟ୍ରୋଲିୟମ୍ ସଂରକ୍ଷଣ ସପ୍ତାହ ସାରା ଦେଶରେ ଜାନୁୟାରୀ ୪ ତାରିଖଠାରୁ ୧୦ ତାରିଖ ପର୍ଯ୍ୟନ୍ତ ପାଳିତ ହେଉଛି । ବର୍ତ୍ତମାନ ଦେଶରେ ଉପୁଜିଥିବା ଶକ୍ତି ସଙ୍କଟକୁ ମୁକାବିଲା କରିବା ପାଇଁ ଆମକୁ ପେଟ୍ରୋଲିୟମ୍ ବାବଦ ଖର୍ଚ୍ଚକୁ କମାଇବାକୁ ପଡ଼ିବ । ଏ ବିଷୟରେ ଜନଚେତନା ଜାଗ୍ରତ କରିବା ଏହି ସପ୍ତାହ ପାଳନର ମୁଖ୍ୟ ଉଦ୍ଦେଶ୍ୟ ।

ଆମ ଦେଶରେ ପେଟ୍ରୋଲିୟମ୍, କୋଇଲା, ବିଜୁଳିଶକ୍ତି ଓ ସୌରଶକ୍ତି ଭଳି ଶକ୍ତି ଉତ୍ପାଦନ ପାଇଁ ଭାରତର ସମୁଦାୟ ସମ୍ବଳର ତିନିଭାଗରୁ ଭାଗେ ଖର୍ଚ୍ଚ କରାଯାଉଛି । ଏ ବାବଦରେ ବିପୁଳ ପରିମାଣର ଅର୍ଥ ଖର୍ଚ୍ଚ ହେଉଥିଲେ ମଧ୍ୟ ଦିନକୁ ଦିନ ଉତ୍ପାଦନ ଓ ଚାହିଦା ଭିତରେ ଥିବା ତଫାତ୍ ବଢ଼ିବାରେ ଲାଗିଛି । ଫଳରେ ବିଦେଶରୁ ଅଧିକ ପରିମାଣର ତୈଳ ଆମଦାନୀ କରିବାକୁ ପଡୁଛି ।

ଗଲା ବର୍ଷ ଆମ ଦେଶରେ ୫୭୦ ଲକ୍ଷ ମେଟ୍ରିକ୍ ଟନ୍ ତୈଳ ଖର୍ଚ୍ଚ ହୋଇଥିଲା ବେଳେ ଏବର୍ଷ ତାହାର ଚାହିଦା ୬୦୦ ଲକ୍ଷ ମେଟ୍ରିକ୍ ଟନ୍‌କୁ ବୃଦ୍ଧି ପାଇଛି । ଆସନ୍ତା ୨,୦୦୦ ମସିହା ବେଳକୁ ଏହି ଚାହିଦା ୧,୦୦୦ ଲକ୍ଷ ମେଟ୍ରିକ୍ ଟନ୍‌ରେ ପହଞ୍ଚିବ ବୋଲି ହିସାବ କରାଯାଇଛି । ଏବର୍ଷ ବିଦେଶରୁ ତୈଳ ଆମଦାନୀ କରିବାକୁ ଆମକୁ ୧୫,୦୦୦ କୋଟି ଟଙ୍କା ଖର୍ଚ୍ଚ କରିବାକୁ ପଡୁଛି ।

ବର୍ତ୍ତମାନ ଦେଶର ଗୁରୁତର ଆର୍ଥିକ ପରିସ୍ଥିତି ଦୃଷ୍ଟିରୁ ଆମକୁ ତୈଳ ଆମଦାନୀ ଓ ତୈଳ ବାବଦ ଖର୍ଚ୍ଚ କମାଇବାକୁ ପଡ଼ିବ । ଆମର ଶତକଡା ୬୫ ଭାଗ ଡ଼ିଜେଲ୍ ଓ ୯୮ ଭାଗ ପେଟ୍ରୋଲ କେବଳ ସଡ଼କ ପରିବହନ କ୍ଷେତ୍ରରେ ଖର୍ଚ୍ଚ ହେଉଛି । ଉତ୍ତମ ଗାଡ଼ି ଚାଳନା ଅଭ୍ୟାସ ଓ ଯାନ ବାହନର ସଠିକ ରକ୍ଷଣାବେକ୍ଷଣ ଦ୍ୱାରା ଏହି ଖର୍ଚ୍ଚ ଶତକଡା ୬ ଭାଗ କମାଯାଇ ପାରିବ ।

ବିଶେଷ କରି ଆମ ରାଜ୍ୟରେ ରେଳପଥର ଯଥେଷ୍ଟ ବିସ୍ତାର ହୋଇ ନଥିବାରୁ ସଡ଼କ ପରିବହନ କ୍ଷେତ୍ରରେ ଆମ ରାଜ୍ୟର ତୈଳଖର୍ଚ୍ଚ ଅଧିକ । ତେଣୁ ଆମକୁ ଏଦିଗରେ ବିଶେଷ ଧ୍ୟାନ ଦେବାକୁ ପଡ଼ିବ । ଘରକିଆ ଗାଡ଼ି ବ୍ୟବହାର ବଦଳରେ ଯଥାସମ୍ଭବ ସାଧାରଣ ପରିବହନ ବ୍ୟବସ୍ଥାର ଉପଯୋଗ କରିବା ନିହାତି ଦରକାର । ରବିବାର ଦିନ କୌଣସି ସରକାରୀ ଗାଡ଼ି ଚାଲି ପାରିବ ନାହିଁ ବୋଲି ମୁଁ ନିର୍ଦ୍ଦେଶ ଦେଇଛି । ସରକାରୀ ସ୍ତରରେ ତୈଳ ଖର୍ଚ୍ଚକୁ ଶତକଡା ୨୫ ଭାଗ କମାଇ ଦିଆ ଯାଇଛି । ଜନସାଧାରଣଙ୍କ ସହଯୋଗ ଦ୍ୱାରା ଆମ ରାଜ୍ୟରେ ତୈଳ ସଂରକ୍ଷଣ ଅଭିଯାନ ନିଶ୍ଚୟ ସଫଳ ହେବ, ଏହା ମୋର ଦୃଢ଼ ଆଶା ଓ ବିଶ୍ୱାସ ।

## ସାମ୍ବାଦିକ କଲ୍ୟାଣ ପାଣ୍ଠିରୁ ଆର୍ଥିକ ସହାୟତା

ବୃଦ୍ଧ ସାମ୍ବାଦିକ, ଅବସର ପ୍ରାପ୍ତ ସାମ୍ବାଦିକ ବା ପରଲୋକଗତ ସାମ୍ବାଦିକଙ୍କ ପରିବାରବର୍ଗଙ୍କୁ ଆର୍ଥିକ ସହାୟତା ଦେବା ଉଦ୍ଦେଶ୍ୟରେ ରାଜ୍ୟ ସରକାରଙ୍କ ପକ୍ଷରୁ ଏକ ସାମ୍ବାଦିକ କଲ୍ୟାଣ ପାଣ୍ଠି ସୃଷ୍ଟି କରାଯାଇଛି । ଯେଉଁ ସାମ୍ବାଦିକଙ୍କ ସମୁଦାୟ ବାର୍ଷିକ ଆୟ ଅଠର ହଜାର ଟଙ୍କା ବା ଅବସର ପ୍ରାପ୍ତ ସାମ୍ବାଦିକଙ୍କ ବାର୍ଷିକ ଆୟ ବାର ହଜାର ଟଙ୍କାରୁ ଅଧିକ ହୋଇନଥିବ କେବଳ ସେମାନେ ଏହି ଆର୍ଥିକ ସାହାଯ୍ୟ ପାଇ ପାରିବେ । ଏହି ସହାୟତା ନିମନ୍ତେ ମିଳିଥିବା ଆବେଦନ ପତ୍ର ବିଚାର କରିବା ପାଇଁ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଯାଇଛି । ଏହି କମିଟିର ନିଷ୍ପତ୍ତି ଚୂଡ଼ାନ୍ତ ବୋଲି ବିବେଚିତ ହେବ ।

ସାମ୍ବାଦିକ କଲ୍ୟାଣ ପାଣ୍ଠି ପରିଚାଳନା ପାଇଁ ପ୍ରସ୍ତୁତ ନିୟମାବଳୀ ଅନୁଯାୟୀ କୌଣସି ସାମ୍ବାଦିକ ବା ଅବସରପ୍ରାପ୍ତ ସାମ୍ବାଦିକଙ୍କର ପରଲୋକ ହୋଇଥିଲେ ତାଙ୍କର ବିଧବା ପତ୍ନୀ ଅଥବା ନାବାଳକ ପୁତ୍ର କନ୍ୟାଙ୍କୁ ଏହି ପାଣ୍ଠିରୁ ସାହାଯ୍ୟ ମିଳିପାରିବ । ସେ ଯଦି ଅବିବାହିତ ହୋଇଥାନ୍ତି ତେବେ ତାଙ୍କର ପିତା ମାତାଙ୍କୁ ମଧ୍ୟ କମିଟିର ନିଷ୍ପତ୍ତି ଅନୁଯାୟୀ ଏକକାଳୀନ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯିବାର ବ୍ୟବସ୍ଥା ରହିଛି । ଏହା ବ୍ୟତୀତ ତାଙ୍କର ନାବାଳକ ପୁତ୍ର ବା କନ୍ୟା ଅଧ୍ୟୟନ କରୁଥିଲେ ତାଙ୍କୁ ୨୧ ବର୍ଷ ହେବା ପର୍ଯ୍ୟନ୍ତ ସେ ନିୟମିତ ରୂପେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉଥିଲେ, ମାଟ୍ରିକ୍ୟୁଲେସନ ପର୍ଯ୍ୟନ୍ତ ମାସିକ ସର୍ବାଧିକ ୭୫ ଟଙ୍କା ଏବଂ କଲେଜରେ ପଢୁଥିଲେ ମାସିକ ସର୍ବାଧିକ ୧୨୦ ଟଙ୍କା ପର୍ଯ୍ୟନ୍ତ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଇ ପାରିବ । କୌଣସି ସାମ୍ବାଦିକ ଦୁର୍ଘଟଣା, ଅସୁସ୍ଥତା ଓ ଅନ୍ୟ କୌଣସି କାରଣରୁ ସାମ୍ବାଦିକ ରୂପେ କାର୍ଯ୍ୟ କରିବା ପାଇଁ ସମ୍ପୂର୍ଣ୍ଣ ଅକ୍ଷମ ହୋଇଗଲେ ସେ ଓ ତାଙ୍କର ଅଧ୍ୟୟନରତ ନାବାଳକ ପୁତ୍ର କନ୍ୟା ମଧ୍ୟ ଅନୁରୂପ ସାହାଯ୍ୟ ପାଇବା ପାଇଁ ଯୋଗ୍ୟ ବିବେଚିତ ହେବେ । କୌଣସି ସାମ୍ବାଦିକ ବା ଅବସରପ୍ରାପ୍ତ ସାମ୍ବାଦିକ ଗୁରୁତର ଭାବେ ଅସୁସ୍ଥ ହୋଇ କୌଣସି ଡାକ୍ତରଖାନାରେ ଇନ୍‌ଡୋର ରୋଗୀ ରୂପେ ଚିକିତ୍ସିତ ହେଉଥିଲେ ବା ତାଙ୍କର ସ୍ତ୍ରୀ ବା ପୁତ୍ର କନ୍ୟାଙ୍କର ଏପରି ଚିକିତ୍ସାର ଆବଶ୍ୟକତା ହେଲେ ଏହି ଚିକିତ୍ସା ପାଇଁ ଆର୍ଥିକ ସହାୟତା ଯୋଗାଇଦେବା ପାଇଁ ମଧ୍ୟ ନିୟମାବଳୀରେ ବ୍ୟବସ୍ଥା ରହିଛି ।

ଆର୍ଥିକ ସହାୟତା ପାଇଁ ନିର୍ଦ୍ଦିଷ୍ଟ ଫର୍ମରେ ଆବଶ୍ୟକୀୟ ପ୍ରମାଣପତ୍ର ସହ ଜାନୁୟାରୀ ୧୫, ୧୯୯୩ ତାରିଖ ମଧ୍ୟରେ, ସୂଚନା ଓ ଲୋକ ସମ୍ପର୍କ ନିର୍ଦ୍ଦେଶକ, ଭୁବନେଶ୍ୱରଙ୍କ ନିକଟକୁ ଦରଖାସ୍ତ କରିବାକୁ ଅନୁରୋଧ କରାଯାଉଛି । ଏହି ଦରଖାସ୍ତ ସହ ସାମ୍ବାଦିକ ରୂପେ ସେ କାର୍ଯ୍ୟ କରୁଥିବା ବା ପୂର୍ବରୁ କାର୍ଯ୍ୟକରି ଅବସର ଗ୍ରହଣ କରିବା ସମ୍ପର୍କୀୟ ପ୍ରମାଣପତ୍ର ସହ ଆୟ, ବୟସ, ଅସୁସ୍ଥତା, ନାବାଳକ ପୁତ୍ର କନ୍ୟାଙ୍କ ଶିକ୍ଷା ପ୍ରଭୃତି ସମ୍ପର୍କୀୟ ପ୍ରମାଣପତ୍ର ମଧ୍ୟ ପଠାଇବା ଆବଶ୍ୟକ । ଯେଉଁ ସଂସ୍ଥାରେ ସାମ୍ବାଦିକ ରୂପେ ସେ କାର୍ଯ୍ୟ କରୁଥିବେ ତାଙ୍କ ନିକଟରୁ ଏକ ପ୍ରମାଣପତ୍ର ଦରଖାସ୍ତ ସହ ପଠାଇବା ବାଞ୍ଛନୀୟ । ଦରଖାସ୍ତ ଫର୍ମ ଓ ଏହି ସହାୟତା ସମ୍ପର୍କରେ ଅଧିକ ତଥ୍ୟ ପାଇଁ ସୂଚନା ଓ ଲୋକ ସମ୍ପର୍କ ନିର୍ଦ୍ଦେଶାଳୟ ଅଥବା ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀଙ୍କ ସହ ଯୋଗାଯୋଗ କରିବାକୁ ଅନୁରୋଧ କରାଯାଉଛି ।

## ରାଜ୍ୟରେ ମତ୍ସ୍ୟଚାଷର ବିକାଶ

ଓଡ଼ିଶାରେ ମାଛଚାଷ ପାଇଁ ବିପୁଳ ପ୍ରାକୃତିକ ସୁବିଧା ରହିଛି । ରାଜ୍ୟରେ ୪୮୦ କିଲୋମିଟର ସମୁଦ୍ରତଟ ଅଛି । ୬ ଲକ୍ଷ ୫୦ ହଜାର ହେକ୍ଟର ମଧୁର ଜଳ ଅଞ୍ଚଳ ଅଛି ଏବଂ ୪ ଲକ୍ଷ ୪୦ ହଜାର ହେକ୍ଟର ନଦୀ ମୁହାଣ ଓ ଖାରିଆ ଜଳ ଅଞ୍ଚଳ ଅଛି । ଏଥିରେ ମାଛଚାଷ କରିବା ନିମନ୍ତେ ବର୍ତ୍ତମାନ ସରକାର ସୁଚିନ୍ତିତ ଯୋଜନାମାନ ପ୍ରସ୍ତୁତ କରି କାର୍ଯ୍ୟକାରୀ କରୁଛନ୍ତି । ଏହାଦ୍ୱାରା ମତ୍ସ୍ୟଚାଷୀମାନଙ୍କର ଆର୍ଥିକ ଅବସ୍ଥାରେ ନିଶ୍ଚିତ ଉନ୍ନତି ହେବା ସଙ୍ଗେ ସଙ୍ଗେ ରାଜ୍ୟରେ ମାଛର ଚାହିଦା ଅନେକାଂଶରେ ପୂରଣ ହୋଇପାରିବ । ଏହା ବ୍ୟତୀତ ଅନ୍ୟ ରାଜ୍ୟକୁ ମାଛ ରପ୍ତାନୀ ହୋଇପାରିବା ସଙ୍ଗେ ସଙ୍ଗେ ବିଦେଶକୁ ମାଛ ପଠାଯାଇ ଅଧିକ ବୈଦେଶିକ ମୁଦ୍ରା ଅର୍ଜନ କରାଯାଇ ପାରିବ ।

ମାଛଚାଷର ବିକାଶ ନିମନ୍ତେ ୧୯୯୨–୯୩ ଆର୍ଥିକ ବର୍ଷର ବାର୍ଷିକ ଯୋଜନାରେ ୧୫ କୋଟି ୪୩ ଲକ୍ଷ ଟଙ୍କା ବରାଦ କରାଯାଇଛି । ପୂର୍ବରୁ ୧୯୯୦–୯୧ ଆର୍ଥିକ ବର୍ଷରେ ଏଥିପାଇଁ ନଅ କୋଟି ୪୦ ଲକ୍ଷ ଟଙ୍କା ଏବଂ ୧୯୯୧–୯୨ ବର୍ଷରେ ୮ କୋଟି

୮୮ ଲକ୍ଷ ଟଙ୍କା ବରାଦ କରାଯାଇଥିଲା । ଆମ ରାଜ୍ୟରେ ଥିବା ଜଳାଶୟମାନଙ୍କରୁ ଓ ସମୁଦ୍ର ଅଞ୍ଚଳରୁ ୧୯୯୦–୯୧ ବର୍ଷରେ ୧ ଲକ୍ଷ ୫୮ ହଜାର ୯୫୦ ମେଟ୍ରିକ୍ ଟନ୍ ଏବଂ ୧୯୯୧–୯୨ ବର୍ଷରେ ଏକଲକ୍ଷ ୮୨ ହଜାର ୯୦୯ ମେଟ୍ରିକ୍ ଟନ୍ ମାଛ ଉତ୍ପାଦିତ ହୋଇଥିବା ସ୍ଥଳେ ୧୯୯୨–୯୩ ବର୍ଷରେ ଗତ ସେପ୍ଟେମ୍ବର ମାସ ସୁଦ୍ଧା ୮୧,୦୯୩ ମେଟ୍ରିକ୍ ଟନ୍ ମଧୁର ଓ ଲୁଣିମାଛ ଉତ୍ପାଦିତ ହୋଇଛି ।

ମତ୍ସ୍ୟଚାଷର ବିକାଶ ନିମନ୍ତେ ରାଜ୍ୟରେ ୧୩ ଗୋଟି ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା କାର୍ଯ୍ୟ କରୁଛି । ଏହି ସଂସ୍ଥା ଜରିଆରେ ମତ୍ସ୍ୟଚାଷୀମାନଙ୍କୁ ତାଲିମ କାର୍ଯ୍ୟକ୍ରମ ମାଧ୍ୟମରେ ଉନ୍ନତ ଜ୍ଞାନ କୌଶଳ ବିଷୟରେ ଶିକ୍ଷା ଦିଆଯିବା ସଙ୍ଗେ ସଙ୍ଗେ ଚାଷୀମାନଙ୍କର ପୋଖରୀର ଉନ୍ନତି ଓ ନୂତନ ପୋଖରୀ ଖନନ ନିମନ୍ତେ ବ୍ୟାଙ୍କ୍ ଋଣ ଓ ରିହାତି ପାଇବାର ବ୍ୟବସ୍ଥା କରାଯାଇଛି । ୧୯୯୧–୯୨ ବର୍ଷ ଶେଷ ସୁଦ୍ଧା ରାଜ୍ୟରେ ୩.୪୦,୪୯-୪୦ ହେକ୍ଟର ଜଳାଶୟର ଉନ୍ନତି କରାଯାଇଛି ଓ ଏହାଦ୍ୱାରା ୮୮,୦୮୩ ଜଣ ଚାଷୀ ଉପକୃତ ହୋଇଛନ୍ତି । ଏହି ସମୟ ମଧ୍ୟରେ ୭୯,୮୬୩ ଜଣ ଚାଷୀଙ୍କୁ ଉନ୍ନତ ମାଛଚାଷ ବିଷୟରେ ତାଲିମ ଦିଆଯାଇଛି ଏବଂ ୧ କୋଟି ୭୨ ଲକ୍ଷ ୨୩ ହଜାର ଟଙ୍କା ହିତାଧିକାରୀଙ୍କୁ ସବ୍‌ସିଡ଼ି ଆକାରରେ ଦିଆଯାଇଛି । ୧୯୯୨–୯୩ ବର୍ଷରେ ୨ ହଜାର ହେକ୍ଟର ଜଳାଶୟର ଉନ୍ନୟନ ଏବଂ ୪ ହଜାର ମତ୍ସ୍ୟଚାଷୀଙ୍କୁ ତାଲିମ ଦେବାକୁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ଅକ୍ଟୋବର ମାସ ଶେଷ ସୁଦ୍ଧା ୯୩୬-୪୦ ହେକ୍ଟର ଜଳାଶୟର ଉନ୍ନତି କରାଯିବା ସଙ୍ଗେ ସଙ୍ଗେ ୫୪୯ ଜଣ ମତ୍ସ୍ୟଚାଷୀଙ୍କୁ ତାଲିମ ପ୍ରଦାନ କରାଯାଇଛି ।

ରାଜ୍ୟରେ ଥିବା ଜଳଭଣ୍ଡାରରେ ମାଛ ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଅଧିକ ସଂଖ୍ୟାରେ ମତ୍ସ୍ୟଚାଷୀମାନଙ୍କୁ କର୍ମ ଯୋଗାଣର ସୁବିଧା ସୁଯୋଗ ଦେବା ନିମନ୍ତେ ୬୦ଟି ଜଳଭଣ୍ଡାରର ମାଛ ଧରିବା ସ୍ୱତ୍ୱ ଜଳସେଚନ ବିଭାଗ ଦ୍ୱାରା ମତ୍ସ୍ୟ ବିଭାଗକୁ ହସ୍ତାନ୍ତର କରାଯାଇଛି । ଓଡ଼ିଶା ମତ୍ସ୍ୟ ଜାତୀୟ ଉନ୍ନୟନ ନିଗମକୁ ୩୦ ଗୋଟି ଜଳଭଣ୍ଡାରର ପରିଚାଳନା ଦାୟିତ୍ୱ ଦିଆଯାଇଛି । ବିଶ୍ୱ ବ୍ୟାଙ୍କ୍ ପ୍ରକଳ୍ପାଧୀନ ୫୫ଟି ଜଳଭଣ୍ଡାରର ହାରାହାରି ୧୯,୬୦୦ ହେକ୍ଟର ଜଳ ଅଞ୍ଚଳ ମତ୍ସ୍ୟଚାଷ ନିମନ୍ତେ ଚିହ୍ନଟ କରାଯାଇଛି ।

୮୧ ଲକ୍ଷ ୮୪ ହଜାର ଟଙ୍କା ବ୍ୟୟରେ କେନ୍ଦୁଝର ଜିଲ୍ଲାର ସାଳନ୍ଦୀ, ସୁନ୍ଦରଗଡ଼ ଜିଲ୍ଲାର ମନ୍ଦିରା ଓ କୋରାପୁଟ ଜିଲ୍ଲାର ଅପରକୋଲାବ ଜଳଭଣ୍ଡାରର ୮,୭୮୦ ହେକ୍ଟର ଅଞ୍ଚଳରେ ଜାତୀୟ ସମବାୟ ଉନ୍ନୟନ ନିଗମ ସହାୟତାରେ ମାଛଚାଷର ଉନ୍ନୟନ ନିମନ୍ତେ ପ୍ରସ୍ତାବ ଦିଆଯାଇଛି ।

## କଳାହାଣ୍ଡି ଓ କୋରାପୁଟ ଜିଲ୍ଲାରୁ ଦାରିଦ୍ର୍ୟ ଦୂରୀକରଣ ପାଇଁ ସ୍ୱତନ୍ତ୍ର ଯୋଜନା ପ୍ରସ୍ତୁତ କରାଯାଉଛି

ରାଜ୍ୟର କଳାହାଣ୍ଡି ଓ କୋରାପୁଟ ଜିଲ୍ଲାର ଦାରିଦ୍ର୍ୟ ପ୍ରପୀଡ଼ିତ ଲୋକମାନଙ୍କର ଅବସ୍ଥାକୁ ସୁଧାରିବା ପାଇଁ ରାଜ୍ୟ ସରକାର ଏକ ସ୍ୱତନ୍ତ୍ର ଯୋଜନା ପ୍ରସ୍ତୁତ କରୁଛନ୍ତି । ଏହି ଯୋଜନା ଖୁବ୍ ଶୀଘ୍ର କାର୍ଯ୍ୟକାରୀ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କେନ୍ଦ୍ର କୃଷିମନ୍ତ୍ରୀ ଶ୍ରୀ ବଳରାମ ଜାଖରଙ୍କ ନିକଟକୁ ଲେଖି ଥିବା ଏକ ପତ୍ରରେ ଉଲ୍ଲେଖ କରିଛନ୍ତି ।

ସୂଚନାଯୋଗ୍ୟ ଯେ, ଗତ ସେପ୍ଟେମ୍ବର ମାସରେ ଏକ ତିନିଜଣିଆ କେନ୍ଦ୍ରୀୟ ପ୍ରତିନିଧି ଦଳ କଳାହାଣ୍ଡି ଓ କୋରାପୁଟ ଜିଲ୍ଲାର ଦାରିଦ୍ର୍ୟ ପ୍ରପୀଡ଼ିତ କେତେକ ଗ୍ରାମ ପରିଦର୍ଶନ କରିଥିଲେ । ଇତିମଧ୍ୟରେ, ସେମାନଙ୍କ ରିପୋର୍ଟ ରାଜ୍ୟ ସରକାରଙ୍କ ନିକଟରେ ପହଞ୍ଚିଛି ।

ମୁଖ୍ୟମନ୍ତ୍ରୀ ତାଙ୍କ ଚିଠିରେ କହିଛନ୍ତି ଯେ, ରାଜ୍ୟ ସରକାର କଳାହାଣ୍ଡି ଓ କୋରାପୁଟ ଜିଲ୍ଲାର ସମସ୍ୟା ସମ୍ପର୍କରେ ପୂର୍ଣ୍ଣ ସଚେତନ ଅଛନ୍ତି । କୋରାପୁଟ ଜିଲ୍ଲାର ଉନ୍ନୟନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ ଉକ୍ତ ଜିଲ୍ଲାକୁ ଚାରୋଟି ନୂତନ ଜିଲ୍ଲାରେ ବିଭକ୍ତ କରାଯାଇଛି । ଏହି ଅଞ୍ଚଳ ପାଇଁ ଏକ ସ୍ୱତନ୍ତ୍ର ସମନ୍ୱିତ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବା ପାଇଁ ମୁଖ୍ୟମନ୍ତ୍ରୀ ରାଜ୍ୟ ମୁଖ୍ୟ ଶାସନ ସଚିବ ଓ ସମ୍ପୃକ୍ତ ବିଭାଗୀୟ ସଚିବମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ଯୋଜନା ଦ୍ୱାରା ସମ୍ପୃକ୍ତ ଜିଲ୍ଲାର ଲୋକେ ବର୍ଷସାରା ବିଶେଷକରି ଡିରୋଟ ସମୟରେ କାମଧନ୍ଦା ଦ୍ୱାରା ଯେଭଳି ଉପାର୍ଜନକ୍ଷମ ହୋଇପାରିବେ ସେଥିପ୍ରତି ଦୃଷ୍ଟି ଦିଆଯିବ । ଏହି ଉଦ୍ଦେଶ୍ୟରେ, ବିଭିନ୍ନ ବିଭାଗ ଦ୍ୱାରା କାର୍ଯ୍ୟକାରୀ କରାଯାଇଥିବା ଯୋଜନାଗୁଡ଼ିକୁ ଏକାଠି କରାଯାଇ ଏକ ସମନ୍ୱିତ କାର୍ଯ୍ୟକ୍ରମ ପରିଚାଳନା କରାଯିବ । ଏହି ଅଞ୍ଚଳପାଇଁ କୃଷି, ମୃତ୍ତିକା ସଂରକ୍ଷଣ, ଗ୍ରାମ୍ୟ ଯୋଗାଯୋଗ, ଉଦ୍ୟାନ କୃଷି, ବୃକ୍ଷରୋପଣ ଓ ସମନ୍ୱିତ ଶିଶୁ ବିକାଶ ଯୋଜନା ଭଳି କାର୍ଯ୍ୟକ୍ରମ ଉପରେ ଜୋର୍ ଦିଆଯାଇ ଏକ ଆକ୍‌ସନ ପ୍ଲାନ୍ ପ୍ରସ୍ତୁତ କରାଯାଇଛି । ୨/୩ ସପ୍ତାହ ଭିତରେ ଏହା କାର୍ଯ୍ୟକାରୀ ହେବ ।

ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ, କଳାହାଣ୍ଡି ଓ କୋରାପୁଟ ଜିଲ୍ଲାର ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ରାଜ୍ୟ ସରକାରଙ୍କ ସମସ୍ତ ପ୍ରଚେଷ୍ଟା ଓ ନିଷ୍ଠା ଅବ୍ୟାହତ ରହିଛି । କିନ୍ତୁ, ସୀମିତ ସମ୍ବଳ ଯୋଗୁ ଏହି ଅଞ୍ଚଳର ଅର୍ଥନୈତିକ ଉନ୍ନତି ପାଇଁ ଯାହା କରାଯିବା କଥା, ତାହା କରାଯାଇପାରୁନାହିଁ । ତେଣୁ ଦୁଇଟି ସ୍ୱତନ୍ତ୍ର କେନ୍ଦ୍ରୀୟ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ମୁଖ୍ୟମନ୍ତ୍ରୀ କେନ୍ଦ୍ରକୁ ପ୍ରସ୍ତାବ ଦେଇଛନ୍ତି । ପ୍ରଥମଟି ହେଲା, ଲୋକମାନଙ୍କ ପାଇଁ ରୋଜଗାର ସୃଷ୍ଟି କରିପାରୁଥିବା କାର୍ଯ୍ୟକ୍ରମ ଓ ଦ୍ୱିତୀୟଟି ହେଲା, ସମନ୍ୱିତ ଶିଶୁ ବିକାଶ ଯୋଜନା ବାହାରେ ରହିଯାଉଥିବା ବୃଦ୍ଧ, ଅକର୍ମଣ୍ୟ ଓ ସ୍ତନ୍ୟପାୟୀ ଓ ଗର୍ଭବତୀ ନୁହନ୍ତି ବରଂ ସ୍ୱାସ୍ଥ୍ୟାତୁର ଲୋକମାନଙ୍କ ପାଇଁ ମାଗଣା ପୁଷ୍ଟିକର ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ । ମୁଖ୍ୟମନ୍ତ୍ରୀ ଆଶା ପ୍ରକାଶ କରିଛନ୍ତି ଯେ, କେନ୍ଦ୍ର ସରକାରଙ୍କ ସାହାଯ୍ୟ ଓ ସହଯୋଗ କ୍ରମେ ଏହି ଦୁଇଟି ଯୋଜନା ହାତକୁ ନିଆଗଲେ, ଚିର ଦାରିଦ୍ର୍ୟ ପ୍ରପୀଡ଼ିତ ଏହି ଅଞ୍ଚଳର ଲୋକେ ନିଶ୍ଚିତ ଉପକୃତ ହୋଇପାରିବେ ।

## କମ୍ପ୍ୟୁଟର ମାଧ୍ୟମରେ ବଜେଟ୍ ପ୍ରସ୍ତୁତ କରିବାର ସମାଧାନ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଦାନ କରାଗଲା

ରାଜ୍ୟ ବଜେଟ୍‌କୁ କମ୍ପ୍ୟୁଟର ମାଧ୍ୟମରେ ପ୍ରସ୍ତୁତ କରିବା ପାଇଁ ଓଡ଼ିଶା କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର ଦ୍ୱାରା ଏକ ସମାଧାନ ପ୍ରସ୍ତୁତ

କରାଯାଇଛି । ସୁନେଷ୍ଟିତ ସେଣ୍ଟର ଫର ଆଡ୍‌ଭାନସ କମ୍ପ୍ୟୁଟର ସଂସ୍ଥାର ସହଯୋଗରେ ଦୀର୍ଘ ୩ ବର୍ଷର ଗବେଷଣା ପ୍ରସୂତ ଏହି କମ୍ପ୍ୟୁଟର ସମାଧାନକୁ 'କୌଟିଲ୍ୟ' ନାମରେ ନାମିତ କରାଯାଇଛି । ଏହାଦ୍ୱାରା କେତେବେଳେ ଶେଷ ମୁହୂର୍ତ୍ତରେ କରାଯାଉଥିବା ପରିବର୍ତ୍ତନଗୁଡ଼ିକୁ ମଧ୍ୟ ସ୍ଥାନ ଦିଆଯାଇପାରିବ ଏବଂ ଓଡ଼ିଆ ଓ ଇଂରାଜୀ ଉଭୟ ଭାଷାରେ ବହୁ ସଂଖ୍ୟକ ପ୍ରତିଲିପି ଛପାଯାଇ ପାରିବ ।

ସମ୍ପ୍ରତି ଏକ ସଂକ୍ଷିପ୍ତ ଓ ନିରାଡ଼ମ୍ବର ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଓଡ଼ିଶା କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର ଚେୟାରମ୍ୟାନ୍ ଶ୍ରୀ ସୁବାସ ପାଣି, ରାଜ୍ୟ ମୁଖ୍ୟଶାସନ ସଚିବ ଶ୍ରୀ ରବିନାରାୟଣ ଦାସ, ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ଶ୍ରୀ ପ୍ୟାରୀମୋହନ ମହାପାତ୍ର ଓ ଅର୍ଥ ସଚିବ ଶ୍ରୀ ପ୍ରସନ୍ନ କୁମାର ମିଶ୍ର ଉପସ୍ଥିତିରେ 'କୌଟିଲ୍ୟ' ପ୍ରଦାନ କରିଥିଲେ । ପରେ ଅର୍ଥମନ୍ତ୍ରୀ ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲା କମ୍ପ୍ୟୁଟର ମାଧ୍ୟମରେ ଏହା କିପରି କାର୍ଯ୍ୟକାରୀ ହୁଏ, ସଚିବାଳୟ ସମ୍ମିଳନୀ କକ୍ଷରେ ଅନୁଧ୍ୟାନ କରିଥିଲେ ।

ଉଭୟ ଭାରତୀୟ ଭାଷା ଓ ଇଂରାଜୀ ଭାଷାକୁ ସମାନ୍ତରାଳ ଭାବେ ବ୍ୟବହାର କରି ସାରଣୀ ଓ ପାଠ ଏକତ୍ର, କମ୍ପ୍ୟୁଟର ମାଧ୍ୟମରେ ଅଫ୍‌ସେଟ୍ ଛାପା ପାଇଁ ମୂଳ ପ୍ରତିଲିପି ପ୍ରସ୍ତୁତ କରିବାରେ ସମଗ୍ର ଦେଶରେ ଏହା ପ୍ରଥମ ଉଦ୍ୟମ । ଉଲ୍ଲେଖଯୋଗ୍ୟ ଯେ, ଓଡ଼ିଶା କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର ଏଥିପାଇଁ ସ୍ୱତନ୍ତ୍ର ଭାବେ 'ସାରଳା' ଓ 'ଲିଙ୍ଗରାଜ' ନାମରେ ଦୁଇଟି ଓଡ଼ିଆ ବର୍ଣ୍ଣମାଳା ପ୍ରସ୍ତୁତ କରିଛନ୍ତି, ଯାହାକି ଏହି ସମାଧାନରେ ପ୍ରୟୋଗ କରାଯାଇଛି ।

## ଗଣ ପରିବାର ଅସ୍ତ୍ରୋପଚାର କେନ୍ଦ୍ର

ଭାରତୀୟ ପରିବାର ନିୟୋଜନ ସଂଘ, ଭୁବନେଶ୍ୱର ଶାଖା ଆନୁକୂଲ୍ୟରେ ଏକ ଗଣ ପରିବାର ଅସ୍ତ୍ରୋପଚାର ଏବଂ କପର-ଟି ଦେବା ଶିବିର ଭୁବନେଶ୍ୱର ପୌରସଂସ୍ଥାର ଚୁଆଁଗାଠାରେ ଥିବା ହୋମିଓପାଥି ଚିକିତ୍ସାଳୟଠାରେ ଗତ ଡ଼ିସେମ୍ବର ୨୨, ୧୯୯୨ ତାରିଖ ଦିନ ଅନୁଷ୍ଠିତ ହୋଇ ଯାଇଛି । ଚୁଆଁଗାର ମହିଳା ସମିତି ତଥା ନିକଟବର୍ତ୍ତୀ ଅଞ୍ଚଳର ଯୁବକ ସଙ୍ଘମାନଙ୍କର ସକ୍ରିୟ ସହଯୋଗିତାରେ ଏହି କେନ୍ଦ୍ର ପରିଚାଳନା କରା ଯାଇଥିଲା । ଲୋକମାନଙ୍କୁ ପରିବାର କଲ୍ୟାଣର ଆବଶ୍ୟକତା ସମ୍ପର୍କରେ ବୁଝା ଯିବା ସଙ୍ଗେ ସଙ୍ଗେ ୧୪ ଜଣ ମହିଳାଙ୍କର ସ୍ଥାୟୀ ଅସ୍ତ୍ରୋପଚାର କରାଯାଇଥିଲା ଓ ୨ ଜଣ ମହିଳାଙ୍କୁ କପର-ଟି ଦିଆ ଯାଇଥିଲା । ନୂଆ ଗାଁ ନିକଟବର୍ତ୍ତୀ ନାଥପୁର, ଉଟିପୁର, ଜୟପୁର, ରଘୁନାଥପୁର, ପ୍ରଭୃତି ଗ୍ରାମର ଲୋକମାନେ ଏହି ଶିବିର ଦ୍ୱାରା ଉପକୃତ ହୋଇଥିଲେ ।

## ବାଙ୍ଗିରିପୋଷିଠାରେ ଲୋକ ଅଦାଲତ

ମୟୂରଭଞ୍ଜ ଜିଲ୍ଲା ଆଇନଗତ ସାହାଯ୍ୟ ଓ ଉପଦେଷ୍ଟା କମିଟି ଆନୁକୂଲ୍ୟରେ ବାଙ୍ଗିରିପୋଷିଠାରେ ଗତ ଡିସେମ୍ବର ୨୦, ୧୯୯୨ ତାରିଖ ଦିନ ଏକ ଲୋକ ଅଦାଲତ ଅନୁଷ୍ଠିତ ହୋଇ ୫୦ଟି ଫୌଜଦାରୀ, ଗୋଟିଏ ଦେୱାନୀ ଓ ୭୮ଟି ରାଜସ୍ୱ ମାମଲା ଫଇସଲା କରା ଯାଇଥିଲା । ଏହି ବିଗ୍ଭର ସମୟରେ ତିନି ହଜାର ପାଞ୍ଚଶହ ପାଞ୍ଚ ଟଙ୍କା ଜୋରିମାନା ଆଦାୟ କରାଯାଇଥିଲା ।

ଏହି ଲୋକ ଅଦାଲତରେ ବାରିପଦା ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ୍ ଓ ମୁନ୍‌ସଫ୍ ଶ୍ରୀ ପ୍ରଭାତ କୁମାର ସାହୁ ଓ ବାରିପଦା ତହସିଲ୍‌ଦାର ଶ୍ରୀ ଅନନ୍ତ କିଶୋର ଜେନା ଅଂଶ ଗ୍ରହଣ କରିଥିଲେ ।

## ଶବ୍ଦ ତାତ୍ତ୍ୱିକ ଓଡ଼ିଆ ଅଭିଧାନ ସଙ୍କଳନ ହେବ

ଗତ ଡ଼ିସେମ୍ବର ୨୮ ତାରିଖଦିନ ସଚିବାଳୟସ୍ଥ ମୁଖ୍ୟମନ୍ତ୍ରୀଙ୍କ ପ୍ରକୋଷ୍ଠରେ "ଶବ୍ଦ ତାତ୍ତ୍ୱିକ ଓଡ଼ିଆ ଅଭିଧାନ" ସଙ୍କଳନ ସମିତିର ବୈଠକ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଅଭିଧାନ ପାଇଁ ପ୍ରସ୍ତୁତ ହୋଇଥିବା ପାଣ୍ଡୁଲିପିର ପ୍ରଥମ ଭାଗ ସଙ୍କଳନ କରାଯିବା ନିମନ୍ତେ ବୈଠକରେ ନିଷ୍ପତ୍ତି ହୋଇଅଛି ।

ସମିତିର ଅନ୍ୟାନ୍ୟ ସଦସ୍ୟମାନଙ୍କ ମଧ୍ୟରେ ପ୍ରଫେସର କୁଞ୍ଜ ବିହାରୀ ତ୍ରିପାଠୀ, ପ୍ରଫେସର ବାଞ୍ଛା ଚରଣ ମିଶ୍ର, ସଂସ୍କୃତି ବିଭାଗ ମନ୍ତ୍ରୀ ଶ୍ରୀ ଶରତ କୁମାର କର, ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର, ନିର୍ଦ୍ଦେଶକ ଶ୍ରୀ ପି: କେ: ମିଶ୍ର ଏବଂ ସମିତିର ସଂଯୋଜକ 'ଡଃ ଖଗେଶ୍ୱର ମହାପାତ୍ର ପ୍ରମୁଖ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

■ **ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ଦିଗରେ ଭାରତର ଯେଉଁ ମହାନ୍ ଦାୟିତ୍ୱ ରହିଛି, ତାହା ଏ ଯାଏ ସମ୍ପୂର୍ଣ୍ଣ ହୋଇ ନାହିଁ, ବରଂ ଏହା ନୂତନ ଭାବେ ଆତ୍ମପ୍ରକାଶ କରିଛି । ସମଗ୍ର ବିଶ୍ୱପ୍ରତି ଏହାର ଏକ ମହାନ୍ ସନ୍ଦେଶ ରହିଛି ।**

**—ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ**



**ଘନଶ୍ୟାମ ସୁଆର,**
**ଗ୍ରାମ–ପାଟପୁର, ବାଙ୍କୀ, କଟକ ।**

* *ମହାଶୟ, ମୁଁ ଆପଣଙ୍କ ଉତ୍କଳ ପ୍ରସଙ୍ଗର ଜଣେ ନିୟମିତ ପାଠକ । ଗତ ନଭେମ୍ବର ବାଲିଯାତ୍ରା ବିଶେଷାଙ୍କ ବେଶ୍ ଉପାଦେୟ ହୋଇପାରିଛି । ଡଃ ପ୍ରସନ୍ନ ପାଟଶାଣୀଙ୍କ 'ବାଲିଦ୍ୱୀପର କବିତା' ଖୁବ୍ ଆକର୍ଷଣୀୟ । ଆଶା ଆପଣଙ୍କ ଉତ୍କଳ ପ୍ରସଙ୍ଗରେ କବିତା ସଂଖ୍ୟା ଆଉ ଟିକେ ବୃଦ୍ଧି କରାଯିବା ସହ ପ୍ରତି ସଦର ମହକୁମାମାନଙ୍କରେ ଉତ୍କଳ ପ୍ରସଙ୍ଗ ବିକ୍ରିର ବ୍ୟବସ୍ଥା କରାଗଲେ ଏହାର ପ୍ରସ୍ତର ଓ ପ୍ରସାରରେ ବିଶେଷ ସହାୟକ ହେବା ସହ ଲୋକମାନେ ବି ସହଜରେ ପାଇପାରନ୍ତେ । ଗ୍ରାମାଭିମୁଖୀ କେତେକ ଲେଖା ପ୍ରକାଶ କରାଗଲେ ଖୁବ୍ ଭଲ ହୁଅନ୍ତା ।*

** ଖବରକାଗଜ ଓ ପତ୍ରପତ୍ରିକା ବିକ୍ରି କରୁଥିବା ବ୍ୟବସାୟୀମାନେ ଏଣିକି ଉତ୍କଳ ପ୍ରସଙ୍ଗ ବିକ୍ରି କରିବା ସୁବିଧା ପାଇପାରିବେ । ନିକଟସ୍ଥ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ କିମ୍ବା ଭୁବନେଶ୍ୱର ମୁଖ୍ୟ କାର୍ଯ୍ୟାଳୟକୁ ଆଗ୍ରହୀ ବ୍ୟବସାୟୀମାନେ ଆବେଦନ କରିପାରନ୍ତି ।

**ଶାରଦା ଚରଣ ମହାପାତ୍ର, ଅବସରପ୍ରାପ୍ତ ଶିକ୍ଷକ,**
**ବାଣୀବିହାର (ଆସିକା),**
**ପୋ: ଅ: ଖଣ୍ଡେଶ୍ୱରୀପାଟଣା,**
**ଥାନା–ଆସିକା, ଜିଲ୍ଲା–ଗଞ୍ଜାମ ।**

* *ମୁଁ ପ୍ରାୟ ତିରିଶ ବର୍ଷରୁ ଊର୍ଦ୍ଧ୍ୱ ହେବ ଏହାର ଗ୍ରାହକ ଅଛି । ବର୍ତ୍ତମାନ ବିଶେଷତଃ କଳା ଓ ପରିପାଟୀ ଆପଣଙ୍କ ସମ୍ପାଦନା ଦାୟିତ୍ୱ ନେବାଠାରୁ ମୋତେ ଭଲ ଲାଗୁଛି । ଆସିକାରେ ସୂଚନା ଭବନଟିଏ ଖୋଲିଲାଣି, ତଥାପି ନିୟମିତ ଭାବେ ଉତ୍କଳ ପ୍ରସଙ୍ଗ ପାଉନାହୁଁ । ଗତ ମାସ ୨୭ ତାରିଖରେ ଆଶ୍ୱିନ ଓ କାର୍ତ୍ତିକର ଦୁଇଟି ସଂଖ୍ୟା ଏକା ସଙ୍ଗେ ପାଇଛି । କାର୍ତ୍ତିକ ସଂଖ୍ୟାର ମଲାଟ ଚିତ୍ରଗୁଡ଼ିକ ବଡ଼ ଆକର୍ଷଣୀୟ ହୋଇଛି । କିନ୍ତୁ ଫୋଟଗୁଡ଼ିକର କଟିଂ କାଗଜର ତିନି ଇଞ୍ଚବି ଶ୍ୱେତଶୁଭ୍ର ପ୍ରଚ୍ଛଦରେ ଧରା ନପଡୁଥିଲେ ଆହୁରି ଚମତ୍କାର ହୁଅନ୍ତା । ଏଣିକି ଏଥିପ୍ରତି ସମ୍ପାଦନା ପାଇଁ କଳାତ୍ମକ ଦୃଷ୍ଟି ରଖିଲେ ଭଲ ହୁଅନ୍ତା ନାହିଁ କି ? 'ଓଡ଼ିଆ' କଳାକାର ବିଶେଷ କରି ଉପାନ୍ତ ଅଞ୍ଚଳର ପରିଚୟ ଦେଇ ଉତ୍ସାହିତ କରୁଥିବେ ।*

** ଆଗରୁ ଆସିକାରେ ସୂଚନା କେନ୍ଦ୍ର ନଥିଲାବେଳେ ଆପଣ ଉତ୍କଳ ପ୍ରସଙ୍ଗ ପାଇବାରେ ।ସୁବିଧା। ନଥିଲା । ବର୍ତ୍ତମାନ ସେ ସୁବିଧା ଯୋଗାଇ ଦେବା ପାଇଁ ରାଜ୍ୟ ସରକାର ଗତ ଜୁନ୍ ମାସରେ ସୂଚନା କେନ୍ଦ୍ରଟିଏ ଆସିକାରେ ଖୋଲିଛନ୍ତି । ତୁଏତ ବହି ପାଇବାରେ କିଛି ବିଳମ୍ବ ଘଟୁଛି । ସେ ଅବ୍ୟବସ୍ଥା ମଧ୍ୟ ଅତି ଶୀଘ୍ର ସୁଧୁରିଯିବ ।

**ଶ୍ରୀ ରମାକାନ୍ତ ମହାପାତ୍ର,**
**ଘର ନଂ ୫/୭୩, ଡବ୍ଲୁ: ଇ: ଏ:,**
**ଆଜମଲ୍ ଖାଁ ରୋଡ଼, କରୋଲ୍‌ବାଗ୍,**
**ନୂଆଦିଲ୍ଲୀ–୧୧୦୦୦୫ ।**

* *ମହାଶୟ, ଆପଣଙ୍କ ଦ୍ୱାରା ସମ୍ପାଦିତ ରଥଯାତ୍ରା ଓ ବାଲିଯାତ୍ରା ବିଶେଷାଙ୍କ 'ପ୍ରଗତି ମରଦାନ୍', ନୂଆଦିଲ୍ଲୀର ଓଡ଼ିଶା ମଣ୍ଡପରୁ ସଂଗ୍ରହ କଲି । ଡଃ ପ୍ରସନ୍ନ କୁମାର ପାଟଶାଣୀଙ୍କ କବିତା 'କୈବଲ୍ୟ' (ରଥଯାତ୍ରା ବିଶେଷାଙ୍କ) ଓ 'ବାଲିଦ୍ୱୀପର କବିତା' ଏବଂ ଶ୍ରୀଯୁକ୍ତ ଶରତ କରଙ୍କ 'ଦିହିଁ ଗତୁ ଗତୁ କଳା କାଳିଆ' ଅତି ଉଚ୍ଚକୋଟୀର, ତତ୍ ସଙ୍ଗେ ସଙ୍ଗେ ସମ୍ପାଦକୀୟ ଅତ୍ୟନ୍ତ ହୃଦୟସ୍ପର୍ଶୀ, ଛାୟାଙ୍କନଗୁଡ଼ିକ ମର୍ମସ୍ପର୍ଶୀ । ଶିଳ୍ପୀଙ୍କୁ ମୋ ତରଫରୁ ଅଭିନନ୍ଦନ ଜଣାଇବେ ବୋଲି ଆଶା*

** ମତାମତ ଦେଇ ସମ୍ପୃକ୍ତ ଶିଳ୍ପୀ ଓ ଲେଖକମାନଙ୍କୁ ଉତ୍ସାହିତ କରିଥିବାରୁ ଆପଣଙ୍କୁ ଆମ ତରଫରୁ ଧନ୍ୟବାଦ ଜଣାଉଛୁ ।

**ଡି: ପ୍ରକାଶ ରାଓ, ଶିକ୍ଷକ,**
**ଗ୍ରାମ/ପୋଷ୍ଟ–ଚିକଲଖଣ୍ଡି, ଥାନା–ଛତ୍ରପୁର,**
**ଜିଲ୍ଲା–ଗଞ୍ଜାମ–୭୬୧୦୨୦ ।**

* *ମହାଶୟ, ଆପଣଙ୍କ ଦ୍ୱାରା ସମ୍ପାଦିତ ଅକ୍ଟୋବର '୯୨ ସଂଖ୍ୟାରେ ପ୍ରକାଶ ପାଇଥିବା 'ରୋଗ ନିରାକରଣରେ ମହାପ୍ରସାଦ ସେବନ', ପଣ୍ଡିତ ଶ୍ରୀ ଅଚ୍ୟୁତାନନ୍ଦ କରଙ୍କ 'ଭକ୍ତିର ପାଥେୟ' ଖୁବ୍ ଆକର୍ଷଣୀୟ ହୋଇପାରିଛି । ଏହା ପଢ଼ି ଆନନ୍ଦିତ ହେଲି । ଧି, ଉକ୍ତ ସଂଖ୍ୟାରେ ମହାପୁରୁଷମାନଙ୍କର ଫଟୋଚିତ୍ର ପ୍ରକାଶ ପାଇଛି । ଖୁବ୍ ଭଲ ହୋଇଛି । ଆସନ୍ତା ନଭେମ୍ବର '୯୨ ସଂଖ୍ୟାରେ ସ୍ୱର୍ଗତ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ଫଟୋଚିତ୍ର ପ୍ରକାଶ କରିବା ପାଇଁ ଅନୁରୋଧ କରୁଛି ।*

** ନଭେମ୍ବର ସଂଖ୍ୟା ପ୍ରକାଶ ପାଇସାରିଛି । ତେବେ ଆପଣଙ୍କ ଅନୁରୋଧକୁ ଭବିଷ୍ୟତରେ କାର୍ଯ୍ୟକାରୀ କରିବା ପାଇଁ ଦୃଷ୍ଟି ଦେବୁ ।

**ପ୍ରତାପ ଚନ୍ଦ୍ର ସାମଲ, ଷ୍ଟେସନ୍ ମାଷ୍ଟର,**
**ରାହାମା ରେଲ୍‌ୱେ ଷ୍ଟେସନ୍,**
**ରାହାମା, କଟକ–୭୫୪୧୪୦ ।**

* *ମହାଶୟ, ପ୍ରଣାମ ନେବେ । ପୂଜା ସଂଖ୍ୟା ପଢ଼ି ଆନନ୍ଦିତ ହେଲି । ଅନ୍ୟ ସଂଖ୍ୟା ପରି ଏହି ଶାରଦୀୟ ସଂଖ୍ୟାଟି ମଧ୍ୟ ଅନେକଗୁଡ଼ିଏ ଉପାଦେୟ ତଥ୍ୟ ଭରା ପ୍ରବନ୍ଧ ଓ ଫିଚରକୁ ନେଇ ସମୃଦ୍ଧ । ଆପଣ ଆସିବା ପରଠାରୁ ଏହା ସୁଖପାଠ୍ୟ ହୋଇପାରିଛି । ସମ୍ପାଦକୀୟ ଯଥାର୍ଥ ଓ ସୁଯୋଗପଯୋଗୀ । ପ୍ରକୃତ ପୂଜା ହେଉ, ମିଥ୍ୟା ଆଡ଼ମ୍ବର ବନ୍ଦ ହେଉ ଏବଂ ସେହି ଧନରେ ସମ୍ପୃକ୍ତ ଅନୁଷ୍ଠାନମାନେ ଜନହିତକର କାର୍ଯ୍ୟ ହାତକୁ ନିଅନ୍ତୁ । ଏହାକୁ ଏକ ଆବଶ୍ୟକୀୟ ସାଂସ୍କୃତିକ ଚେତନା ରୂପେ ଗ୍ରହଣ କରି ଯୁବକମାନେ ଅଗ୍ରସର ହୁଅନ୍ତେ କି, ମଙ୍ଗଳ ହୁଅନ୍ତା । ସ୍ମରଣୀୟ ମହାପୁରୁଷଙ୍କ ଫଟୋଚିତ୍ର ଦେଇଥିବାରୁ ଧନ୍ୟବାଦ । ରଙ୍ଗୀନ ଫଟୋ ଛାପିଥିଲେ ଭଲ ହୋଇଥାନ୍ତା । ଅଜିତ୍ ତ୍ରିପାଠୀଙ୍କ ଲେଖା ଶିକ୍ଷଣୀୟ ସତରେ ! ସେ ସ୍ତମ୍ଭମାନ କେବେ ଆସିବ ? ସଂସ୍କୃତ ଓ ଅନ୍ୟ ଭାଷାରେ ଲେଖୁଥିବା ଓଡ଼ିଆ କବିମାନଙ୍କ ସମ୍ପର୍କରେ ଛାପିବାର ବ୍ୟବସ୍ଥା କରିବେ କି ?*

** ମତାମତ ପାଇଁ ଅଶେଷ ଧନ୍ୟବାଦ । କବି ଜୟଦେବଙ୍କ ମଇ ୧୯୯୧ ଓ ମଇ ୧୯୯୨ ସଂଖ୍ୟାରେ ସ୍ୱତନ୍ତ୍ର ପ୍ରବନ୍ଧମାନ ପ୍ରକାଶ ପାଇଛି ।



ବ୍ୟାସକବି ଫକୀର ମୋହନ

VYASAKAVI FAKIR MOHAN

# ସଂସ୍କାରବାଦୀ କବି ଫକୀର ମୋହନ

• ଅଧ୍ୟାପକ ପ୍ରତାପ ଚନ୍ଦ୍ର ସେନାପତି

ବ୍ୟାସକବି ଫକୀର ମୋହନ ସେନାପତି ଓଡ଼ିଆ ସାହିତ୍ୟ ଜଗତର ଦିଗ୍‌ଦର୍ଶକ ଥିଲେ । କବିଙ୍କର ଯୁଗଧର୍ମୀ ଓ ମାନବଧର୍ମୀ ରଚନାବଳୀରେ ଜନ- ଚିନ୍ତାଧାରାର ଚିତ୍ର ପ୍ରତିଫଳିତ ହୋଇଛି । ସର୍ବଜନବୋଧ ସାହିତ୍ୟ ସୃଷ୍ଟି କରି କବି ମନୁଷ୍ୟର ଅନ୍ତର୍ନିହିତ ପ୍ରକୃତିର ଚିତ୍ରଣ କରି ବ୍ୟଥା ଓ ବେଦନାର କାରଣ ନିରୂପଣ କରିଛନ୍ତି । ଶୋଷିତ ଜନର ଯନ୍ତ୍ରଣା ଜର୍ଜରିତ ହୃଦୟରେ ପବିତ୍ରତା ସୃଷ୍ଟିକରି ଅନୁକମ୍ପା ପ୍ରଦର୍ଶନ ପାଇଁ ଯୁକ୍ତି ବାଢ଼ିଛନ୍ତି । ଫକୀର ମୋହନ ଜଣେ ସଂସ୍କାରବାଦୀ କବି ଥିଲେ । ସମାଜ ସୁରକ୍ଷା ଉଦ୍ଦେଶ୍ୟରେ ଦୀର୍ଘ ଶତାବ୍ଦୀ ପୂର୍ବେ ଅନ୍ୟାୟ, ଅନୀତି, ଅତ୍ୟାଚାର, ଭ୍ରଷ୍ଟାଚାର, ଶୋଷଣ, ଜୁଲମ, ଲୁଣ୍ଠନ, ଅପହରଣ, ମଦ୍ୟପାନ, ଅନ୍ଧବିଶ୍ୱାସ, ଅଶିକ୍ଷା ପ୍ରଭୃତିର ମୂଳୋତ୍ପାଟନ ପାଇଁ ସଂଗ୍ରାମ କରିବା ପାଇଁ ଜନସାଧାରଣଙ୍କୁ ସେ ନିଜ ସାହିତ୍ୟ କୃତି ମାଧ୍ୟମରେ ଆହ୍ୱାନ କରିଛନ୍ତି । କବି ସମାଜର ବ୍ୟାପକ ସଂଶୋଧନ ଚାହିଁଥିଲେ । କୁସଂସ୍କାର ଉଦ୍ଦେଶ୍ୟରେ କବି ସ୍ୱର ଉତ୍ତୋଳନ କରି ତତ୍କାଳୀନ ଶାସକ ବର୍ଗ, ଜମିଦାର, ଚାଟୁକାରଙ୍କର ମୁଖା ଖୋଲି ଦେବାରେ ସମର୍ଥ ହୋଇଥିଲେ । ଧନ ଓ ଧର୍ମକୁ କେନ୍ଦ୍ରକରି ସମାଜରେ ନାନା ଭ୍ରାନ୍ତ ଆଚରଣ ପ୍ରବେଶ କରାଯାଇଥିଲା । ଯାହାର ପ୍ରସାର ପାଇଁ କିଛି ଲୋକ ଜନ୍ମଲାଭ କରୁଥିଲେ । ସେମାନେ ପ୍ରକାରାନ୍ତରେ ସମାଜକୁ ଶୋଷି ଯାଉଥିଲେ । ଆଧୁନିକତା ନାମରେ ସମାଜର ଅବୟବ ମଧ୍ୟରେ ଅନେକ ମଦ୍ୟପି, ବେଶ୍ୟାସଙ୍ଗୀ ଜୁଆଡ଼ୀ ନିଜର କାୟା ବିସ୍ତାର କରି ସମାଜର ଶୃଙ୍ଖଳିତ ବାତାବରଣକୁ ଦୂଷିତ କରୁଥିଲେ । ନୂତନ ଶିକ୍ଷିତ ଯୁବକମାନେ ପିତା, ମାତା, ଗୁରୁଜନଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବାରେ ବିମୁଖ ଥିଲେ । ସେମାନେ ନିଜ ନିଜକୁ ଆଧୁନିକ ସମାଜର କର୍ଣ୍ଣଧାର ତୁଲ୍ୟ ମନେକରି ବିଳାସ ବ୍ୟସନ ମଧ୍ୟରେ ବୁଡ଼ି ଯାଉଥିଲେ । ତତ୍କାଳୀନ ସମାଜରେ ଅର୍ଥନୈତିକ ଅପଚେଷ୍ଟା ତୀବ୍ର ଆକାର ଧାରଣ କରିଥିଲା । ବହୁ ଅର୍ଥ ପିପାସୁ ମହାଜନ ସମାଜର ଅଭାବୀ ତଥା ଦୁର୍ବଳ ବର୍ଗଙ୍କୁ ଶୋଷି ଯାଉଥିଲେ । ଏମାନେ ଗ୍ରାମ୍ୟ ଦୁର୍ଗତିର ମୂଳ ପିଣ୍ଡ ଥିଲେ । ମହାଜନ ଗୋଷ୍ଠୀ ଦୁର୍ଗତିର ଯୋଜନା କରୁଥିଲେ । ହୀନ ଚକ୍ରାନ୍ତ କରି ଲୋକଙ୍କର ସର୍ବସ୍ୱ ଲୁଣ୍ଠନ କରିଥିଲେ । ଏ ସମସ୍ତ ମନ୍ଦ କୌଶଳର ଦୃଷ୍ଟାନ୍ତ ବ୍ୟାସକବିଙ୍କ ଗଳ୍ପ-ଉପନ୍ୟାସର ବିଭିନ୍ନ ଚରିତ୍ରରୁ ଅନୁମେୟ ।

ଫକୀର ମୋହନ ସଂସ୍କାର ଧର୍ମୀ ସାହିତ୍ୟ ରଚନାର ଅଗ୍ରଦୂତ ଥିଲେ । ସେ ନବଜାଗରଣ ପାଇଁ ପ୍ରେରଣାର ଉତ୍ସ ଥିଲେ । ଅନ୍ଧ ବିଶ୍ୱାସ, ପାରମ୍ପରିକ ତଥା ବଦ୍ଧ ମୂଳକ ଭ୍ରାନ୍ତ ଧାରଣା ତତ୍କାଳୀନ ସମାଜର ଅସ୍ଥି ମଜ୍ଜାଗତ ହୋଇ ପଡ଼ିଥିଲା । ନାରୀ ସ୍ୱାଧୀନତା ନଥିଲା । ନାରୀର ମହତ୍ତ୍ୱ ତାର ପଲୁଆ ସ୍ୱଭାବ ଉପରେ ନିହିତ ଥିଲା । ନାରୀ ପରଦା ଆଢୁଆଳରେ ରହୁଥିଲା । ତାକୁ ପରାମର୍ଶ ଦିଆ ଯାଉଥିଲା - ଶାଶୁ, ନଣନ୍ଦ ବ୍ୟତୀତ ସେ ଯେପରି ଅନ୍ୟ କାହା ସହିତ ଦେଖା ସାକ୍ଷାତ କରି ପାରିବ ନାହିଁ । ଘରେ ଚାଲିବା ବେଳେ ନଇଁ ନଇଁ ଚାଲିବ । କଥା କହିବାକୁ ପଡ଼ିଲେ ହୁ-ମାରି ଠାରିବ । ଘର କୋଣରେ ଲୁଚି ରହିବା ନାରୀ ଜୀବନର ସୌନ୍ଦର୍ଯ୍ୟତାକୁ ସୂଚେଉ ଥିଲା । ନାରୀ ଶିକ୍ଷା ପାଇଁ ସମାଜର ସ୍ୱୀକୃତି ନଥିଲା । ଫକୀର ମୋହନ ନାରୀର ଦୁର୍ଦ୍ଦଶାକୁ 'ରେବତୀ' ଗଳ୍ପରେ ଚିତ୍ରଣ କରି ଯାଇଛନ୍ତି । ରେବତୀ ପାଠ ପଢ଼ିବା ଯୋଗୁଁ ବିପଦ ହିମାଳୟ ପରିବାର ଉପରେ ଛିଡ଼ି ପଡ଼ିଲା । ରେବତୀର ବୁଢ଼ୀ ମା' ଭାବିନେଲେ- ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ଜମିଦାର ଗାଈ ଛଡ଼େଇ ନେଲେ । ବଳଦ ବିକ୍ରି ହେଲା, ହଳିଆ ଛାଡ଼ିଗଲା, ପରିବାରର ଏ ସମସ୍ତ ଦୁଃଖ ଦୁର୍ଦ୍ଦଶାର ମୂଳ କାରଣ — ରେବତୀର ପାଠ । ଜନହାନୀ, ଧନହାନୀ, ଗୋ-ସମ୍ପଦ ହାନୀ ସହିତ ଝିଅର ପାଠ ପଢ଼ାକୁ ସଂଯୋଗ କରି ତତ୍କାଳୀନ ସମାଜରେ ଏକ ଅମୂଳକ ଅର୍ଥ ହୀନ ଧାରଣା ସୃଷ୍ଟି କରିବାରେ କି ପୁରୁଷ, ସ୍ତ୍ରୀ ସମସ୍ତେ ପାରଙ୍ଗମ ଥିଲେ । ଫକୀର ମୋହନ ସମାଜର ମୂଳ ପିଣ୍ଡ ବ୍ୟକ୍ତିର ଚରିତ୍ର ସଂସ୍କାର ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । 'ପେଟେଣ୍ଟ ମେଡିସିନ୍' ଏ ସମ୍ପର୍କରେ ଏକ ସଫଳ ସୃଷ୍ଟି । ଆଧୁନିକ ଶିକ୍ଷାର ପ୍ରସାର ଏବଂ ବିଦେଶୀ ଢଙ୍ଗର ଅନୁକରଣ ଫଳରେ ବ୍ୟକ୍ତି ଜୀବନରେ ଅନେକ ଦୋଷ, ତ୍ରୁଟି, ବଦ୍ ଅଭ୍ୟାସ ପଶିଯାଏ । ପେଟେଣ୍ଟ୍ ମେଡିସିନ୍‌ର ନାୟକ ନିଶାସକ୍ତ ଓ ବେଶ୍ୟାସକ୍ତ ବାବୁ ଚନ୍ଦ୍ରମଣି ପଟ୍ଟନାୟକଙ୍କର ତ୍ରୁଟିପୂର୍ଣ୍ଣ ବ୍ୟକ୍ତିତ୍ୱର ସଂଶୋଧନ ପାଇଁ ଲେଖକ ଫକୀର ମୋହନ ସୁଲୋଚନା ଦେବୀଙ୍କୁ ସୃଷ୍ଟି କରିଛନ୍ତି । ଘରର ସାଧାରଣ ସାମଗ୍ରୀ ଝାଡ଼ୁଣିକୁ ଅବ୍ୟର୍ଥ ଔଷଧ ରୂପେ ବ୍ୟବହାର କରି ସ୍ୱାମୀଙ୍କ ଚରିତ୍ରରେ ସଂସ୍କାର ଆଣିଛନ୍ତି । ବିପଥଗାମୀ ପତି ଚନ୍ଦ୍ରମଣି ସାଆନ୍ତାଣୀଙ୍କୁ କାଠ କଣେଇ ସହିତ ତୁଳନା କରି ଭୃତ୍ୟ ମକରା ନିକଟରେ ବ୍ୟକ୍ତ କରିଛନ୍ତି । ହିତାହିତ ଜ୍ଞାନ ଶୂନ୍ୟ ପତିଙ୍କର ଚରିତ୍ର ସଂଶୋଧନ ଉଦ୍ଦେଶ୍ୟରେ ଫକୀର ମୋହନଙ୍କ ମାନସ କନ୍ୟା ଉଗ୍ର ସ୍ୱଭାବ ଧାରାକୁ ଛଟେଇ ଆଦର୍ଶ ମୂର୍ତ୍ତି କରିଛନ୍ତି । କବି, ପୁରୁଷ ଜାତିର ଦୋଷ ଦୁର୍ବଳର ସଂଶୋଧନ ପାଇଁ ନାରୀ ଜାତିର ଜାଗରଣ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଫକୀର ମୋହନଙ୍କ ସାହିତ୍ୟରେ ଡାକ ମୁନସୀ-ଗୋପାଳ ବାବୁ ଅନ୍ୟ ଏକ ବିଫଳ ଚରିତ୍ର । ସର୍ବସ୍ୱ ବିନିମୟରେ ପିତା ହରି ସିଂ, ଗୋପାଳ ବାବୁଙ୍କୁ ମଣିଷ କରିଛନ୍ତି । କିନ୍ତୁ ପ୍ରତି ବଦଳରେ ସେ ଉପେକ୍ଷିତ ହୋଇଛନ୍ତି । ସମାଜରେ ଗୋପାଳ ବାବୁଙ୍କର ନିନ୍ଦା କରି ଆଗାମୀ ଯୁଗର ସମ ଚରିତ୍ର ସମ୍ପନ୍ନ ବ୍ୟକ୍ତି ବିଶେଷଙ୍କ ପ୍ରତି ସତର୍କତା ଅବଲମ୍ବନ ପାଇଁ ସୂଚେଇ ଦେଇଛନ୍ତି । ସମାଜରେ ଅର୍ଥକୁ ଭିତ୍ତି କରି ଶୋଷଣ, ଜୁଲମ ବ୍ୟାପୀ ଯାଏ । ଧନ ଲୋଭୀ ଅନ୍ୟର ସମ୍ପଦ ଲୁଣ୍ଠନ କରିବା ପାଇଁ ପଛାଏ ନାହିଁ । ଆଜି ଆମ ସମାଜରେ ହଜାର ହଜାର ରାମଚନ୍ଦ୍ର ମଙ୍ଗରାଜ, କୁବେର ସାହୁ ପରି ବ୍ୟକ୍ତି ଅଛନ୍ତି । ସେମାନେ ଅନ୍ୟର ଝାଳବୁହା ପରିଶ୍ରମକୁ ଠିକ୍ ମାପ ଦଣ୍ଡରେ ମାପି ପାରନ୍ତି ନାହିଁ । ଅନ୍ୟର ସର୍ବସ୍ୱ ଲୁଣ୍ଠନ କରି ଆତ୍ମ ତୃପ୍ତି ଲାଭ କରନ୍ତି । ଅନ୍ୟର ଘରବାଡ଼ି, ଗାଈଗୋରୁ, ଜିନିଷପତ୍ର ଅପହରଣ

କରି ପ୍ରତ୍ୟୁଷେ ହୁକୁମ ଜାରି କରିପାରନ୍ତି । ଫକୀର ମୋହନ ଏପରି ଲୋକଙ୍କର ନିନ୍ଦାକରି ସାମାଜିକ ସ୍ଥିରତା ପାଇଁ ଏପରି ଅସାମାଜିକ ଲୋକଙ୍କୁ ବର୍ଜନ କରିବା ପାଇଁ ସୂଚେଇ ଯାଇଛନ୍ତି ।

ଆମ ସମାଜରେ ଏପରି କେତେକ ଅଛନ୍ତି, ଯେଉଁମାନେ ମୁହଁରେ ମିଠା ସ୍ୱଭାବ ପୋଷଣ କରି ସୁବିଧା ସୁଯୋଗ ଭଣ୍ଡି ପଛରେ ଶକୁନୀ ସମାନ କାର୍ଯ୍ୟ କରନ୍ତି । ଚମ୍ପା ଜଣେ ମହିଳା ହେଲେ ହେଁ ଏପରି ବିଦ୍ୟାରେ ପାରଙ୍ଗମା । କୌଶଳ ପ୍ରୟୋଗ କରି ମଙ୍ଗରାଜଙ୍କୁ ସେ ଆୟତ୍ତାଧୀନ କରି ପାରିଛି । ଘର ଭାଙ୍ଗିଛି । ଭଗିଆ, ଶାରିଆ ପରି ନିରୀହଙ୍କ ପ୍ରାଣରେ କଷ୍ଟ ଦେଇଛି । ଚମ୍ପାର ଯୋଜନା ଫଳରେ ଭଗିଆ ଶାରିଆ ନେତ ଗାଈ ହରେଇଛନ୍ତି, ଛ'ମାଣ ଆଠଗୁଣ୍ଠ ଜମି ହାତଛଡ଼ା ଯାଇଛି । ସେ ଦୁହିଁଙ୍କର ଭ୍ରାନ୍ତ ଧାରଣା ଯୋଗୁଁ ଚମ୍ପା ଭଳି କୁଟିଳା ନାରୀଟି ସର୍ବସ୍ୱ ଅପହରଣ ପାଇଁ ସକ୍ଷମ ହୋଇଛି । ଆଜି ଆମ ସମାଜରେ ବହୁ ଜଟିଳ, କୁଟିଳ, ଦୁର୍ବଳ ଚରିତ୍ର ସମ୍ପନ୍ନ ବ୍ୟକ୍ତିଙ୍କର ପ୍ରଭାବ ରହିଛି । ଗାଁ ଗହଳିରେ ମଙ୍ଗରାଜ, କୁବେର ସାହୁ ପରି କେତେକ ଧନ ଲୋଭୀ, ପର ଧନ ଅପହରଣ କରି ଅଛନ୍ତି । ଗୋବିନ୍ଦା ପରି ଶଠ, ଲୁଣ୍ଠନ ବିଶ୍ୱାସୀ କେତେକ ମଧ୍ୟବର୍ତ୍ତୀ ଦେଖାଯାନ୍ତି । ପଲ୍ଲୀରେ ଚମ୍ପା ଭଳି କେତେ 'ଘର ଭାଙ୍ଗିବା ବ୍ୟକ୍ତି' ସ୍ୱାର୍ଥ ସିଦ୍ଧି ଯୋଜନା କରନ୍ତି । କେତେ ଟାଉଟର ଗ୍ରାମାଞ୍ଚଳରେ ମାୟାଜାଲ ବିଛେଇ ନିଜକୁ ପ୍ରଭୁତୁଲ୍ୟ ପ୍ରସ୍ତୁତ କରନ୍ତି । ଆଜିର ଗ୍ରାମ୍ୟ ଜୀବନ ଏମାନଙ୍କର ଉପସ୍ଥିତି ଯୋଗୁଁ କଳୁଷିତ ହୋଇପଡୁଛି । ଗାଁରେ ବସ୍ତୁତଃ ଶାନ୍ତି ନାହିଁ ବୋଲି ଲୋକେ ହୃଦୟଙ୍ଗମ କରୁଛନ୍ତି । ଅତୀତର ଶାନ୍ତ, କାନ୍ତ, କୋମଳ ବାତାବରଣ ପଲ୍ଲୀରେ ନାହିଁ । ଈର୍ଷା, ପରଶ୍ରୀକାତରତା, ଶୋଷଣ, ଲୁଣ୍ଠନ, ମିଥ୍ୟା, ଫମ୍ପା ଆବାଜ, ବ୍ୟକ୍ତି ପୂଜା, କୁତ୍ସାରଟନା, ସ୍ୱାର୍ଥପରତା ପ୍ରଭୃତି ପଲ୍ଲୀ ପ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରୁଛି । ଲୋକେ ସହରାଭିମୁଖୀ ହୋଇ ପଡ଼ିଛନ୍ତି । ଗ୍ରାମ୍ୟ କୁଟୀର ଶିଳ୍ପ, କୃଷି ବିପର୍ଯ୍ୟସ୍ତ ହୋଇପଡୁଛି । ଦାରିଦ୍ର୍ୟ, ବୈଷମ୍ୟ, ବେକାରୀ ଦେଖାଯାଉଛି । ସଂସ୍କାରବାଦୀ କବି ଫକୀର ମୋହନ ଚଳିତ ଶତାବ୍ଦୀ ପ୍ରାରମ୍ଭରୁ ଆମ୍ଭମାନଙ୍କୁ ଏ ସମସ୍ତ ସମ୍ପର୍କରେ ତାଙ୍କ ରଚନା ମାଧ୍ୟମରେ ଧାରଣା ଦେଇଛନ୍ତି । ବ୍ୟାସକବି ନିଜର ପ୍ରତ୍ୟେକ ରଚନାରେ ବ୍ୟକ୍ତିଗତ, ସାମାଜିକ, ଧର୍ମଗତ, ଅର୍ଥଗତ ତ୍ରୁଟିର ସଂସ୍କାର ପାଇଁ ଆଭାସ ଦେଇଛନ୍ତି । କବି ପ୍ରତ୍ୟେକ ନଷ୍ଟ ଚରିତ୍ରର ନିର୍ମାଣ କରି ତା'ର ପତନ ସାଧନ କରିଛନ୍ତି । ଚରିତ୍ର ନିର୍ମାଣ, ପତନ ସାଧନ ଓ ପରିଣାମ ମାଧ୍ୟମରେ ସେ ସମାଜର ବ୍ୟାପକ ସଂସ୍କାର ଚାହିଁଛନ୍ତି ।

---

ଅର୍ଥନୀତି ବିଭାଗ,
ଗୁଣପୁର ମହାବିଦ୍ୟାଳୟ, ଗୁଣପୁର-୭୬୫୦୨୨ ।



ପୁରୀ ଜିଲ୍ଲା ନରସିଂହପୁରରେ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତି ଏକ ଗୃହ ନିର୍ମାଣ କେନ୍ଦ୍ର ଉଦ୍‌ଘାଟନ କରୁଛନ୍ତି । ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ, ରାଜ୍ୟମନ୍ତ୍ରୀ ଶ୍ରୀ କିରଣ ଚନ୍ଦ୍ର ସିଂହଦେଓ ଉପସ୍ଥିତ ଅଛନ୍ତି ।

# ସ୍ୱତନ୍ତ୍ର ପ୍ରଦେଶ ଗଠନରେ ଶଶିଭୂଷଣ

● ଶିବ ପ୍ରସାଦ ତ୍ରିପାଠୀ

ପ୍ରଖ୍ୟାତଯଶା ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ, ଓଡ଼ିଆ ଆନ୍ଦୋଳନର ପ୍ରବକ୍ତା, ଓଡ଼ିଶାର ପ୍ରଥମ ଦୈନିକ ସମ୍ବାଦ ପତ୍ରର ପ୍ରତିଷ୍ଠାତା ତଥା ଉତ୍କଳ ସମ୍ମିଳନୀର ପ୍ରାଣ ପ୍ରତିଷ୍ଠାତା ସ୍ୱର୍ଗୀୟ ଶଶିଭୂଷଣ ରଥ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ସାଧାରଣ ଜନଜୀବନ ସହ ସେ ଗଭୀର ଭାବରେ ଜଡ଼ିତ ଥିଲେ । "ଆଶା"ର ସମ୍ପାଦକ ଭାବରେ ସେ ବହୁ ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ନିରାକରଣରେ ବ୍ରତୀ ହୋଇଥିଲେ ।

ବୟସରେ ସେ ଥିବା ସମୟରେ ସୁବିଖ୍ୟାତ ଦେଶପ୍ରେମୀ ତଥା ଉତ୍କଳ-ଗୌରବ ମଧୁସୂଦନ ଦାସଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା । ଏହାପରେ ସେ ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ତଥା ବୃହତ୍ତର ଓଡ଼ିଶା ପ୍ରଦେଶ ଗଠନ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଯେଉଁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମୂହ ଅନ୍ୟାନ୍ୟ ରାଜ୍ୟରେ ସାମିଲ ହୋଇଥିଲା ସେଗୁଡ଼ିକୁ ଓଡ଼ିଶା ପ୍ରଦେଶରେ ମିଶାଇବା ଲକ୍ଷ୍ୟରେ ସେ ଉତ୍କଳ ସମ୍ମିଳନୀ ଗଠନ କରି ଓଡ଼ିଆ ଆନ୍ଦୋଳନର ନେତୃତ୍ୱ ନେଇଥିଲେ

୧୮୦୩ ଡିସେମ୍ବର ୧୭ ତାରିଖରେ କମ୍ପାନୀ ସରକାର ଓ ନାଗପୁର ଭୋଁସଲାଙ୍କ ମଧ୍ୟରେ ହୋଇଥିବା ଚୁକ୍ତି ବଳରେ ଯେଉଁ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା ସେଥିରେ କେବଳ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ରହିଥିଲା । ପ୍ରାଚୀନ ଉତ୍କଳ ସାମ୍ରାଜ୍ୟର ଏହି କ୍ଷୁଦ୍ର ଅଂଶଟି ବଙ୍ଗ ପ୍ରଦେଶର ଏକ ଡିଭିଜନ୍ ଭାବରେ ସ୍ୱୀକୃତ ହୋଇଥିଲା । ୧୮୬୮ରେ ଓଡ଼ିଶା କମିଶନର ହେନେରି ରିକ୍‌ଟସ ମତ ପ୍ରକାଶ କରିଥିଲେଯେ ସମ୍ବଲପୁର, ପାଟଣାଗଡ଼, ଖଡ଼ିଆଳ, ବିନ୍ଦ୍ରା ନୂଆଗଡ଼ ଓ ସାରଙ୍ଗ ଗଡ଼ ପ୍ରଭୃତି ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଓଡ଼ିଶାରେ ମିଶିବା ଉଚିତ ।

ବିହାର, ମଧ୍ୟପ୍ରଦେଶ, ବଙ୍ଗ ପ୍ରଦେଶ ତଥା ଆନ୍ଧ୍ର ପ୍ରଦେଶରେ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ରହିଥିଲା । ସେହି ଅଞ୍ଚଳ ସମୂହରେ ଓଡ଼ିଆ ଭାଷାଭାଷୀ ଲୋକେ ବ୍ୟାପକ ଭାବରେ ନିର୍ଯ୍ୟାତୀତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ସଂସ୍କୃତି ତଥା ବର୍ଣ୍ଣୀ ବାଧାପ୍ରାପ୍ତ ହେଲା । ସମ୍ବଲପୁର ଅଞ୍ଚଳ ତତ୍କାଳୀନ ସେଣ୍ଟ୍ରାଲ ପ୍ରଭିନ୍‌ସ ଶାସନାଧୀନ ଥିଲା । ୧୮୯୫ ଜାନୁଆରୀ ପହିଲାରୁ ଏ ଅଞ୍ଚଳର କୋର୍ଟ କଚେରୀରେ ଜୋର ଜବରଦସ୍ତ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ଭାଷାର ପ୍ରଚଳନ ଲାଗି ଚିଫ୍ କମିଶନରଙ୍କ ଆଦେଶ ଲାଗୁ ହେଲା । ମଦନ ମୋହନ ମିଶ୍ର ଓ ଚନ୍ଦ୍ର ଶେଖର ବେହେରାଙ୍କ ଉଦ୍ୟମରେ ଚିଫ୍ କମିଶନର ଆଣ୍ଡ୍ରିଉ ଫ୍ରେଜର ପୁନରାୟ ଓଡ଼ିଆ ଭାଷାର ପ୍ରଚଳନ ଲାଗି ସୁପାରିଶ କରିଥିଲେ । ଜନଗଣନା ରିପୋର୍ଟ ଏହାର ସହାୟକ ହେଲା । ୧୯୦୩ ରେ ସମ୍ବଲପୁରରେ ଓଡ଼ିଆ ଭାଷା ପୁନଃ ପ୍ରଚଳିତ ହୋଇଥିଲା । ୧୯୦୫ ରେ ବଙ୍ଗ ବିଭାଜନ ଓ ପ୍ରାଦେଶିକ ପୁନର୍ଗଠନ ସମୟରେ ସମ୍ବଲପୁର ଓଡ଼ିଶା ଡିଭିଜନ ସହ ସାମିଲ ହେଲା । ଚନ୍ଦ୍ର ଶେଖର ବେହେରା ଏବଂ ସମ୍ବଲପୁରର ପଞ୍ଚସଖା ଏ ଦିଗରେ ପ୍ରମୁଖ ଭୂମିକା ତୁଲାଇଥିଲେ । ଗଞ୍ଜାମ ପ୍ରଭୃତି ଦକ୍ଷିଣାଞ୍ଚଳରେ ତେଲୁଗୁ ଭାଷାର ପ୍ରାଧାନ୍ୟ ରକ୍ଷା ଲାଗି ଉଦ୍ୟମ ହୋଇଥିଲା । ତେଲୁଗୁ ଭାଷାର ବ୍ୟବହାର ଲାଗି ସରକାରୀ ଆଦେଶ ଜାରି ହେଲା । ପରେ ବ୍ୟାପକ ଜନ ଅସନ୍ତୋଷ ପରିପ୍ରେକ୍ଷୀରେ ସରକାରଙ୍କ ପକ୍ଷରୁ ଘୋଷଣା କରାଗଲା ଯେ ଓଡ଼ିଆ ଭାଷାରେ ଦରଖାସ୍ତ ଆଦି ଲେଖାଯାଇ ପାରିବ କିନ୍ତୁ ସରକାରୀ କାର୍ଯ୍ୟାନୁଷ୍ଠାନ ବିଳମ୍ବ ହେବ । ଇଂରାଜୀ ଏବଂ ତେଲୁଗୁ ଭାଷାକୁ ଅଧିକ ଗୁରୁତ୍ୱ ଦିଆଗଲା । ବିହାର ପ୍ରଦେଶ ଅଧୀନରେ ରହିଥିବା ଅଞ୍ଚଳ ସମୂହରେ ହିନ୍ଦୀ ଭାଷାକୁ ଜୋର ଜବରଦସ୍ତ ଲଦି ଦିଆଗଲା ।ବଙ୍ଗ ପ୍ରଦେଶ ଅଧୀନସ୍ଥ ଅଞ୍ଚଳରେ ବଙ୍ଗଳା ଭାଷାକୁ ପ୍ରାଧାନ୍ୟ ଦିଆଗଲା ।

୧୮୭୨ରେ ବଙ୍ଗ ପ୍ରଦେଶର ତତ୍କାଳୀନ ଗଭର୍ଣ୍ଣର ଜି: କ୍ୟାମ୍ପବେଲ୍ ଓଡ଼ିଆ, ବଙ୍ଗଳା ଏବଂ ଅସମୀୟା ଭାଷାକୁ ସ୍ୱତନ୍ତ୍ର ବୋଲି ଘୋଷଣା କଲେ । ପୂର୍ବରୁ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ପ୍ରଚାର କରାଯାଉଥିଲା । ଏହି ସବୁ କାରଣରୁ ଓଡ଼ିଆ ଆନ୍ଦୋଳନ ଗଢ଼ି ଉଠିଥିଲା ।

୧୯୦୩ ରେ 'ଉତ୍କଳ ସମ୍ମିଳନୀ' ଗଠିତ ହେବା ପର୍ଯ୍ୟନ୍ତ ଓଡ଼ିଆ ଆନ୍ଦୋଳନ ଆପତ୍ତି ଅଭିଯୋଗ ଉପସ୍ଥାପନରେ ସୀମିତ ରହିଥିଲା । ଉତ୍କଳ ସମ୍ମିଳନୀ ଓଡ଼ିଆ ପ୍ରାଣରେ ଏକ ନୂତନ ଉନ୍ମାଦନା ଖେଳାଇ ଦେଇଥିଲା । ପ୍ରାକ୍ତନ ଗଞ୍ଜାମ ସଭା ଏହାର ମୂଳଦୁଆ ପକାଇଥିଲା । ବ୍ରହ୍ମପୁର, ପାରଳାଖେମୁଣ୍ଡି ତଥା ରସୁଲକୋଣ୍ଡା (ଅଧୁନା ଭଞ୍ଜନଗର) ପ୍ରଭୃତି ସ୍ଥାନରେ ବିଭିନ୍ନ ସମୟରେ ସଭାସମିତି ଆୟୋଜିତ ହୋଇଥିଲା ଓ ଓଡ଼ିଆ ଆନ୍ଦୋଳନ କ୍ରମେ ବଳିଷ୍ଠ ହୋଇଥିଲା ।

୧୯୧୪ରେ ଧରାକୋଟ ରାଜା ଶ୍ରୀ ମଦନ ମୋହନ ସିଂହଦେଓ ମାନ୍ଦ୍ରାଜ ଆସେମ୍ବ୍ଲିରେ ଦେଶ ମିଶ୍ରଣ ପ୍ରସଙ୍ଗରେ ଦୃଢ଼ ଯୁକ୍ତି ଉପସ୍ଥାପନ କରି ଗଞ୍ଜାମ ତଥା ଦକ୍ଷିଣାଞ୍ଚଳର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶାରେ ମିଶାଇବା ଲାଗି ଦାବୀ କରିଥିଲେ । ଏହି ସମୟରେ ଶଶିଭୂଷଣ ଓଡ଼ିଆ ଆନ୍ଦୋଳନରେ ସମ୍ପୂର୍ଣ୍ଣ ଭାବରେ ମଜ୍ଜି ଯାଇଥିଲେ । ସେ ଅନ୍ୟ କେତେକ ସହକର୍ମୀଙ୍କ ସହ "The Oriya Movement"ନାମକ ଏକ ପୁସ୍ତକ ପ୍ରକାଶ କରି ଆନ୍ଦୋଳନ ସପକ୍ଷରେ ଜନମତକୁ ସଙ୍ଗଠିତ କରିଥିଲେ ।

୧୯୨୧ରେ ଶଶିଭୂଷଣ ମାନ୍ଦ୍ରାଜ ବ୍ୟବସ୍ଥା ସଭାର ସଦସ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ଏହି ସମୟରେ ଓଡ଼ିଆ ଆନ୍ଦୋଳନକୁ ଶକ୍ତିଶାଳୀ କରିବା ଲାଗି ତାଙ୍କୁ ଯଥେଷ୍ଟ ସୁଯୋଗ ମିଳିଥିଲା ।

୧୯୨୨ରେ ମହାତ୍ମା ଗାନ୍ଧୀ ବ୍ରହ୍ମପୁର ଆସିଥିଲେ। ତାଙ୍କର ଗସ୍ତ କାଳରେ ପରେ ଗଞ୍ଜାମ ଅଞ୍ଚଳରେ ଜାତୀୟତାବୋଧ ଉଦ୍ବୋଧନା ଓ ବିପୁଳ ଉତ୍ସାହର ସହ ପରିଲକ୍ଷିତ ହୋଇଥିଲା। ୧୯୨୩ରେ କଞ୍ଚଦେବୁ ଦାସଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ବିଫଳତା ଓଡ଼ିଆ ପ୍ରେମୀ ଜନସାଧାରଣରେ ଗଭୀର ନୈରାଶ୍ୟ ସୃଷ୍ଟି କରିଥିଲା। ଶଶିଭୂଷଣ ଓ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରମୁଖ ଉତ୍କଳ ସମ୍ମିଳନୀର ପୁନରୁଦ୍ଧାର ଦିଗରେ ମନୋନିବେଶ କଲେ। ଉତ୍କଳ ସମ୍ମିଳନୀରେ ଭାଷା ସୂତ୍ରରେ ପ୍ରଦେଶ ଗଠନ ଲାଗି ଦୃଢ଼ ଦାବୀପ୍ରକାଶ ପାଇଲା।

୧୯୨୨ରେ ପାଟଣା କଂଗ୍ରେସ ଅଧିବେଶନରେ ମଧ୍ୟ ଗୋପବନ୍ଧୁ ଏହି ଯୁକ୍ତି ଉପସ୍ଥାପନ କରି ଭାଷାସୂତ୍ରରେ ପ୍ରଦେଶ ଗଠନ ଦାବୀକୁ ଅଧିକ ମଜବୁତ କଲେ। ୧୯୨୪ରେ ବିହାର ବ୍ୟବସ୍ଥାପକ ସଭାରେ ମଧ୍ୟ ଦେଶ ମିଶ୍ରଣ ସମ୍ପର୍କରେ ପ୍ରଭାବଶାଳୀ ତର୍କ ବିତର୍କ ଚାଲିଲା। ମାନ୍ଦ୍ରାଜ ଅଧୀନରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଦେଶ ମିଶ୍ରଣ ସପକ୍ଷବାଦୀ ଆନ୍ଦୋଳନର ବ୍ୟାପକତା କେନ୍ଦ୍ର ସରକାରଙ୍କ ଦ୍ୱାରା ଅନୁଭୂତ ହେଲା। ମଣ୍ଟେଗୁ ଚେମସ୍‌ଫୋର୍ଡଙ୍କ ସୁପାରିଶ କ୍ରମେ "ଫିଲିପ୍‌-ଡଫ" କମିଟି ଗଠିତ ହେଲା। ମାନ୍ଦ୍ରାଜ ଅଧୀନରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକେ ପ୍ରକୃତରେ ଓଡ଼ିଶା ସହ ମିଶିବାକୁ ଆଗ୍ରହୀ କି ନୁହନ୍ତି ତାହା ଅନୁଧ୍ୟାନ କରିବା ଏହି କମିଟିର ଲକ୍ଷ୍ୟ ଥିଲା। ଦୀର୍ଘକାଳ ଧରି ଓଡ଼ିଶାରେ ବିଭିନ୍ନ ପ୍ରଶାସନିକ ପଦରେ ରହିଥିବା ସି.ଏଲ୍. ଫିଲିପ୍‌ ଏବଂ ବିଶାଖାପାଟଣାର ଜିଲ୍ଲା କଲେକ୍ଟର ଏ.ଜି.ଡଫ୍‌ ଏହି କମିଟିର ସଦସ୍ୟ ଥିଲେ। ତେଣୁ ଏହି କମିଟିକୁ ସଂକ୍ଷେପରେ "ଫିଲିପ୍‌-ଡଫ୍‌" କମିଟି କୁହାଯାଉଥିଲା। ଓଡ଼ିଶା ଏବଂ ମାନ୍ଦ୍ରାଜର ସୀମା ନିର୍ଦ୍ଧାରଣ ମଧ୍ୟ ଏହି କମିଟିର ଦାୟିତ୍ୱ ପରିସରଭୁକ୍ତ ଥିଲା। ଏହି କମିଟି ସହ ଆଲୋଚନାର ପନ୍ଥା ନିରୂପଣ ଲାଗି ଉତ୍କଳ ସମ୍ମିଳନୀର ଏକ ସ୍ୱତନ୍ତ୍ର ଅଧିବେଶନ ଅନୁଷ୍ଠିତ ହୋଇଥିଲା।

ଏହି କମିଟି ବିଭିନ୍ନ ଅଞ୍ଚଳ ଗସ୍ତ କରି ଲୋକପ୍ରତିନିଧି ତଥା ଜନସାଧାରଣଙ୍କ ମତାମତ ଗ୍ରହଣ କରିଥିଲେ। ଶଶିଭୂଷଣ ରଥ, ନିରଞ୍ଜନ ପାଣିଗ୍ରାହୀ, ହରିହର ପଣ୍ଡା ଓ ସତ୍ୟନାରାୟଣ ରାଜଗୁରୁ ପ୍ରମୁଖ ସହଯୋଗ କ୍ରମେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଆ ଆନ୍ଦୋଳନକୁ ସଫଳ କରିବା ଦିଗରେ ଅଗ୍ରସର ହୋଇ ପାରିଥିଲେ। ରାମଚନ୍ଦ୍ର ମର୍ଦ୍ଦରାଜ ମଧ୍ୟ କମିଟି ନିକଟରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଉପସ୍ଥାପନ କରିଥିଲେ। ଭାଷାଭିତ୍ତିକ ପ୍ରଦେଶ ଗଠନ ଲାଗି ଏହା ସର୍ବଭାରତୀୟ ସ୍ତରର ପ୍ରଥମ କମିଟି। ଏହି କମିଟି ଗଠନ ଫଳରେ ମାନ୍ଦ୍ରାଜ ଅଧୀନରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଚେତନା ଜାଗ୍ରତ କରିଥିଲା। କେବଳ ଏହି ଅଞ୍ଚଳ ଲାଗି ଏହି କମିଟି ଗଠିତ ହୋଇଥିବାରୁ ଆନ୍ଦୋଳନର ଗୁରୁତ୍ୱ ମଧ୍ୟ ବୃଦ୍ଧି ପାଇଥିଲା।

୧୯୩୧ ଜାନୁଆରୀ ୧୨ରେ ଲଣ୍ଡନରେ ଅନୁଷ୍ଠିତ ପ୍ରଥମ ଗୋଲଟେବୁଲ ବୈଠକରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦର୍ଶାଇଥିଲେ ଯେ ଓଡ଼ିଆ ଭାଷାଭାଷୀମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶ ଗଠନ ବିନା ଭାରତର ଶାସନ ସଂସ୍କାର ସମ୍ଭବ ନୁହେଁ। ୧୯୩୨ ସେପ୍ଟେମ୍ବର ୧୯ ତାରିଖ ଏସ୍. ପି. ଓଡୋନେଲଙ୍କ ଅଧ୍ୟକ୍ଷତା ସୀମା ନିର୍ଦ୍ଧାରଣ କମିଟି ଗଠିତ ହେଲା। ଏହା ଓଡୋନେଲ୍‌ କମିଟି ନାମରେ ପରିଚିତ। ଲର୍ଡ଼ କର୍ଜନଙ୍କୁ ମଧୁବାବୁ ଯେଉଁ ତଥ୍ୟାବଳୀ ପ୍ରଦାନ କରିଥିଲେ, ତାହାକୁ ଭିତ୍ତିକରି ଭାରତ ସରକାରଙ୍କ ଘରୋଇ ବିଭାଗରୁ ଏକ "ରିସେଲ ସର୍କୁଲାର" ପ୍ରକାଶିତ ହୋଇଥିଲା। ସେଥିରେ ବିଭିନ୍ନ ତଥ୍ୟାବଳୀ ଭିତ୍ତିରେ ସୁପାରିଶ କରାଯାଇଥିଲା ଯେ ମାନ୍ଦ୍ରାଜ ଅଧୀନରେ ଥିବା ଗଞ୍ଜାମ ଜିଲ୍ଲା, ଗଞ୍ଜାମ ଏଜେନ୍‌ସି ଅଞ୍ଚଳ ଓ ବିଶାଖାପାଟଣା ଏଜେନ୍‌ସି ଅଞ୍ଚଳକୁ ଓଡ଼ିଶା ଡିଭିଜନରେ ସାମିଲ କରାଯିବା ଯଥାର୍ଥ।

ଓଡୋନେଲ କମିଟିର ରିପୋର୍ଟ ପ୍ରକାଶ ପାଇଲା। ପାରଳା ଓ ଜୟପୁରକୁ ଓଡ଼ିଶା ଡିଭିଜନରେ ମିଶାଇବା ଲାଗି କମିଟି ସୁପାରିଶ କରି ନଥିବାରୁ ପୁଣି ବ୍ୟାପକ ଆନ୍ଦୋଳନ ହେଲା। ଶଶିଭୂଷଣ ଏହି ଆନ୍ଦୋଳନର ନେତୃତ୍ୱ ନେଲେ। ତାଙ୍କ ନେତୃତ୍ୱରେ ଏକ ପ୍ରତିନିଧିଦଳ ଜିଲ୍ଲା କଲେକ୍ଟରଙ୍କୁ ସାକ୍ଷାତ କରି ଏହାର ଦୃଢ଼ ପ୍ରତିବାଦ କଲେ। ଉତ୍କଳ ସମିତି, ଏଜେନ୍‌ସି ଉତ୍କଳ ୟୁନିୟନ କନ୍‌ଫରେନ୍‌ସ, ମାନ୍ଦ୍ରାଜ ଜମିଦାର ଆସୋସିଏସନ୍‌ ଏବଂ ଗଞ୍ଜାମ 'ୟୁଥ୍‌ ଆସୋସିଏସନ୍‌' ଜରିଆରେ ତୀବ୍ର ଆନ୍ଦୋଳନ ହେଲା। ଫଳରେ ୧୯୩୫ ନଭେମ୍ବର ୨୬ରେ ନିର୍ଦ୍ଦେଶନାମା ପ୍ରକାଶ ପାଇଲା ଯେ ପାରଳା ଓ ଜୟପୁର ଓଡ଼ିଶା ଡିଭିଜନ୍‌ରେ ମିଶିବ। ୧୯୩୬ ଏପ୍ରିଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲେ ମଧ୍ୟ ଅନେକ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମଧ୍ୟପ୍ରଦେଶ, ବିହାର ଏବଂ ଆନ୍ଧ୍ର ପ୍ରଦେଶରେ ରହିଗଲା।

ସୁଦୀର୍ଘ ଭାଷା ଆନ୍ଦୋଳନର ଇତିହାସରେ ଶଶିଭୂଷଣ ଓ "ଆଶା"ର ନାମ ସ୍ୱର୍ଣ୍ଣାକ୍ଷରରେ ଆଦି ଅନନ୍ତ କାଳ ପର୍ଯ୍ୟନ୍ତ ଝଂକୃତ ହେବ। ବ୍ରହ୍ମପୁରରୁ ସାପ୍ତାହିକ ଆଶା ୧୯୧୩ ମହାବିଷୁବ ସଂକ୍ରାନ୍ତିରେ ଆତ୍ମପ୍ରକାଶ କରିଥିଲା। ୧୯୨୮ ରେ ଏହା ଏକ ଦୈନିକ ସମ୍ବାଦପତ୍ରରେ ପରିଣତ ହୋଇଥିଲା ତଥା ସୁପ୍ରତିଷ୍ଠିତ ହୋଇଥିଲା। ଶଶିଭୂଷଣଙ୍କ ପ୍ରଗାଢ଼ ଉଦ୍ୟମ ଓ ନିଷ୍ଠାପ୍ରତି ଉତ୍କଳମଣି ଗୋପବନ୍ଧୁ ଦାସ ଏବଂ ପଣ୍ଡିତ ନୀଳକଣ୍ଠ ଦାସ ସାପ୍ତାହିକ "ଆଶା"ର ସମ୍ପାଦନା କାର୍ଯ୍ୟରେ ସହଯୋଗ କରୁଥିଲେ। ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର କାଳରେ "ଆଶା"ରେ ପ୍ରକାଶିତ ସମ୍ବାଦ, ଅଭିମତ ଓ ଅଗ୍ରଲେଖ ସମୂହ ଗାନ୍ଧିଜୀଙ୍କ ଆଦର୍ଶର ପ୍ରସାର ଦିଗରେ ସହାୟକ ହେଉଥିଲା। ଜଣେ ସତ୍ୟାଗ୍ରହୀ ଭାବରେ ସୁପରିଚିତ ଶଶିଭୂଷଣ ବ୍ରିଟିଶ ସରକାରଙ୍କ ଦ୍ୱାରା କାରାରୁଦ୍ଧ ହେଲେ। "ଦୈନିକ ଆଶା" ଉପରେ ସରକାରଙ୍କ ଦମନଲୀଳା ସ୍ୱରୂପ ବହୁ କଟକଣା ଜାରି କରାଗଲା। ଏହି କଟକଣାର ପ୍ରତିବାଦରେ ସମ୍ପାଦକୀୟ ସ୍ତମ୍ଭ ବର୍ଜନ କରାଯାଉଥିଲା। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଦୈନିକ ଆଶାର ସହଯୋଗୀ ସମ୍ବାଦପତ୍ର ଭାବରେ କେ: ଏନ୍: ଆଶ୍ୱରୀଙ୍କ ସମ୍ପାଦନାରେ ପ୍ରକାଶ ପାଉଥିଲା "ନିଉ ଓଡ଼ିଶା"। ପରେ ଉଭୟ ସମ୍ବାଦପତ୍ରର ପ୍ରକାଶନ ସ୍ଥଳ କଟକକୁ ସ୍ଥାନାନ୍ତରିତ ହୋଇଥିଲା। ଶଶିଭୂଷଣଙ୍କ ଏକମାତ୍ର କନ୍ୟାର ନାମାନୁସାରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ସମ୍ବାଦପତ୍ରର ନାମ ରଖାଯାଇଥିଲା "ଆଶା"। ବାସ୍ତବରେ "ଆଶା" ଓଡ଼ିଶାକୁ ନୂତନ ଆଶାର ଆଲୋକ ଦେଖାଇଥିଲା। ଏହା ଓଡ଼ିଆ ଆନ୍ଦୋଳନର ମୁଖପତ୍ର ଭାବରେ ଉଲ୍ଲେଖନୀୟ ସଫଳତା ହାସଲ କରିଥିଲା।

ଓଡିଆ ଆନ୍ଦୋଳନର ସ୍ମୃତିଚାରଣ କରି ଡକ୍ଟର ସତ୍ୟ ନାରାୟଣ ରାଜଗୁରୁ ଲେଖିଛନ୍ତି, "ସବୁ ସ୍ଥାନରେ ଆମ କାର୍ଯ୍ୟ ପ୍ରତି ଲୋକଙ୍କ ପୂର୍ଣ୍ଣ ସହାନୁଭୂତି ଓ ସହଯୋଗ ମିଳିଲା । ସେତେବେଳେ ଦୈନିକ ଆଶା ଓ ନିଉ ଓଡିଶା ସମେତ ସମାଜ ଇତ୍ୟାଦି ପତ୍ରିକାରେ ମୁଁ ଦକ୍ଷିଣ ଓଡିଶା ଜାତିମାନଙ୍କ ସମ୍ବନ୍ଧରେ ଧାରାବାହିକ ଭାବେ ଆଲୋଚନାମୂଳକ ପ୍ରବନ୍ଧମାନ ଲେଖିବାକୁ ଲାଗିଲି । ୧୯୩୧ ଓ ୩୨ ସାଲର ସେଇ ପତ୍ରିକାମାନଙ୍କରୁ ଏହାର ନିଦର୍ଶନ ମିଳିବ । ଆମର ବିପକ୍ଷରେ ଆନ୍ଧ୍ରବାସୀମାନଙ୍କର ମଧ୍ୟ ପ୍ରତିକୂଳ ଚେଷ୍ଟା ଚାଲିଥାଏ । ସେତେବେଳେ ମାନ୍ଦ୍ରାଜର କେତୋଟି ଇଂରାଜୀ ପତ୍ରିକାରେ ସେମାନେ ଓଡ଼ିଆ ବିରୋଧୀ ପ୍ରବନ୍ଧ ପ୍ରକାଶ କରୁଥାନ୍ତି । ପାରଳାଖେମୁଣ୍ଡିରେ ଜି: ସୀତାପତି ଓ ଜି: ସତ୍ୟନାରାୟଣା (ଜଣେ ଆନ୍ଧ୍ର ଓକିଲ) ଆମର ପ୍ରତିକୂଳ ଅବସ୍ଥା ସୃଷ୍ଟି କରୁଥାନ୍ତି । ଶ୍ରୀକାକୁଲମଠାରେ ମଧ୍ୟ ଜି: ଲକ୍ଷ୍ମଣ ରାଓ ପ୍ରଭୃତି ଆନ୍ଧ୍ର ନେତାଙ୍କ ଚେଷ୍ଟାରେ ତାଙ୍କ ପକ୍ଷରୁ ଗୋଟିଏ ସଂଘ ମଧ୍ୟ ଗଢ଼ା ହୋଇଥାଏ । ସେହିପରି ବ୍ରହ୍ମପୁରରେ ବରାହଗିରୀ ଯୋଗେଶ୍ୱ। ପାନ୍ତୁଲୁଙ୍କ ନେତୃତ୍ୱରେ ଆନ୍ଧ୍ରମାନଙ୍କ ଗୋଟିଏ ଅନୁଷ୍ଠାନ ଗଢ଼ା ହୋଇଥିଲା । କିନ୍ତୁ ଗଞ୍ଜାମର ଦକ୍ଷିଣରେ ପାରଳାଖେମୁଣ୍ଡି ମହାରାଜା ଏବଂ ଉତ୍ତରରେ ଖଲ୍ଲିକୋଟର ରାଜା ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ହେତୁ ଓ ସର୍ବୋପରି ଆଶାର ସମ୍ପାଦକ ଶଶିଭୂଷଣ ରଥଙ୍କ ନେତୃତ୍ୱ ଯୋଗୁଁ ଓଡ଼ିଆମାନଙ୍କର ସ୍ୱାର୍ଥରେ ବେଶୀ କିଛି ବ୍ୟାଘାତ ସେମାନେ ସୃଷ୍ଟି କରିପାରି ନ ଥିଲେ ।"

ଗଞ୍ଜାମରେ ଓଡ଼ିଆ ଆନ୍ଦୋଳନର ଅଗ୍ରଗମନ ହୋଇଥିଲା ବୋଲି କୁହାଯାଇପାରେ । ଖଲ୍ଲିକୋଟ ରାଜାଙ୍କ ରମ୍ଭା ରାଜପ୍ରସାଦ ସମ୍ମୁଖରେ ୧୯୦୨ରେ ଜାତୀୟ ସମ୍ମିଳନୀ ଆୟୋଜନ ଏବଂ ସେଥିରେ ଉତ୍କଳ ଗୌରବ ମଧୁସୂଦନ ଦାସ, ବାଗ୍ମୀ ବିଶ୍ୱନାଥ କର, ଗୋପାଳଚନ୍ଦ୍ର ପ୍ରହରାଜ, ନନ୍ଦ କିଶୋର ବଳ,ଉତ୍କଳମଣି ଗୋପବନ୍ଧୁ ଦାସ ଓ ବ୍ୟାସକବି ଫକୀର ମୋହନ ସେନାପତି ପ୍ରମୁଖଙ୍କ ଯୋଗଦାନ ସମଗ୍ର ରାଜ୍ୟରେ ଓଡ଼ିଆ ଆନ୍ଦୋଳନକୁ ଉତ୍ସାହିତ କରିଥିଲା । ଏହି ସମ୍ମିଳନୀରେ ମଧୁସୂଦନ କହିଥିଲେ ଯେ "ଏହି ସମ୍ମିଳନୀରେ ପ୍ରାକୃତିକ ଓଡିଶାର ସବୁ ଅଞ୍ଚଳରୁ ପ୍ରତିନିଧି ଯୋଗ ଦେଇଛନ୍ତି, ତେଣୁ ଏହା ଉତ୍କଳ ସମ୍ମିଳନୀ ବୋଲାଇବ ।"

ପୁନଶ୍ଚ ୧୯୦୩ରେ ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିରେ ଗଞ୍ଜାମ ଜିଲ୍ଲାର ପ୍ରଥମ ଗ୍ରାଜୁଏଟ୍ ପାରଳାଖେମୁଣ୍ଡିର ଶ୍ୟାମସୁନ୍ଦର ରାଜଗୁରୁ ଅଧ୍ୟକ୍ଷତା କରିଥିଲେ । ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଜୟପୁର ମହାରାଜା ବିକ୍ରମ ଦେବ ବର୍ମାଙ୍କ ଅଧ୍ୟକ୍ଷତାରେ ପାରଳାଖେମୁଣ୍ଡିରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀ ମହାରାଜା କୃଷ୍ଣ ଚନ୍ଦ୍ର ଗଜପତିଙ୍କୁ ଅନୁପ୍ରାଣିତ କରିଥିଲା ତଥା ଓଡ଼ିଆ ଆନ୍ଦୋଳନରେ ସେ ସମ୍ପୂର୍ଣ୍ଣଭାବରେ ନିଜକୁ ସାମିଲ କରିଥିଲେ । ପୂର୍ବରୁ ୧୮୭୦ରେ ଅନୁଷ୍ଠିତ ରସୁଲକୋଣ୍ଡା ସମାବେଶରେ ଗଞ୍ଜାମ ତଥା ଦକ୍ଷିଣାଞ୍ଚଳକୁ ଓଡ଼ିଶାରେ ମିଶାଇବାଲାଗି ଦାବି ହୋଇଥିଲା ଏବଂ ଏହିଠାରୁ ଗଞ୍ଜାମରେ ଓଡ଼ିଆ ଆନ୍ଦୋଳନ କ୍ରମଶଃ ସଙ୍ଗଠିତ ହୋଇଥିଲା ।

ରସୁଲକୋଣ୍ଡା ସଭାଠାରୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପର୍ଯ୍ୟନ୍ତ ସୁଦୀର୍ଘ ଆନ୍ଦୋଳନ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନର ପରବର୍ତ୍ତୀ କାଳରେ ୧୯୫୬ ପର୍ଯ୍ୟନ୍ତ ଭାଷା ଆନ୍ଦୋଳନକୁ ଗଞ୍ଜାମ ଜିଲ୍ଲା ଆଲୋକର ପଥ ଦେଖାଇଥିଲା । ଶଶିଭୂଷଣଙ୍କ କାର୍ଯ୍ୟାବଳୀ ଏହି ଆନ୍ଦୋଳନ ଲାଗି ପ୍ରେରଣାର ଉତ୍ସ ଥିଲା ।

ବାସ୍ତବରେ ଶଶିଭୂଷଣ ଜଣେ ନେତା ନ ଥିଲେ, ଥିଲେ କର୍ମୀ । ବୃକ୍ଷରେ ନୂତନ ଡାଳ, ପତ୍ର, ଫୁଲ ଓ ଫଳ ଦେଖାଯାଏ । କିନ୍ତୁ ଶେଷ ପର୍ଯ୍ୟନ୍ତ ବଞ୍ଚିରହିଥାଏ ମୂଳ । ଶଶିଭୂଷଣ ଏହି ମୂଳ ଶ୍ରେଣୀର ଜାଗ୍ରତ ପ୍ରହରୀଥିଲେ । ଓଡ଼ିଆ ଆନ୍ଦୋଳନରେ ଗଞ୍ଜାମ ଜିଲ୍ଲାର ଭୂମିକା ସମ୍ପର୍କରେ ଏକ ସ୍ୱତନ୍ତ୍ର ବିସ୍ତୃତ ଗ୍ରନ୍ଥ ପ୍ରକାଶ ପାଇଲେ ଅନେକ ତଥ୍ୟ ଜଣାପଡ଼ିବ ।

---

ବଡ଼ ବଜାର, ସମ୍ବଲପୁର-୩ ।

■ କୌଣସି ପ୍ରକାର ହିଂସାତ୍ମକ କାର୍ଯ୍ୟକଳାପକୁ ତୁରନ୍ତ ଲକ୍ଷ୍ୟ ହାସଲର ପନ୍ଥା ସ୍ୱରୂପ ଗ୍ରହଣ କରିବାରେ ମୁଁ ଆଦୌ ବିଶ୍ୱାସ କରେ ନାହିଁ । ଉଦ୍ଦେଶ୍ୟ ଯେତେ ମହତ୍ ହେଲେ ସୁଦ୍ଧା ଏବଂ ସେଥିପ୍ରତି ମୋର ସବୁପ୍ରକାର ସହାନୁଭୂତି ରହିଥିଲେ ମଧ୍ୟ ସେହି ମହତ୍ ଉଦ୍ଦେଶ୍ୟ ସାଧନ ନିମନ୍ତେ ହିଂସାତ୍ମକ ପଦ୍ଧତି ଅବଲମ୍ବନ ମୁଁ ବରଦାସ୍ତ କରିପାରିବି ନାହିଁ ।

—ଗାନ୍ଧିଜୀ

# ଓଡ଼ିଆ ଆନ୍ଦୋଳନର ସାରଥୀ ଶଶିଭୂଷଣ ରଥ

• ଡ଼ଃ ସୂର୍ଯ୍ୟନାରାୟଣ ଦାସ

ଏବେ ଗଞ୍ଜାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଉତ୍କଳ ଭୂଖଣ୍ଡ ଯେତେବେଳେ କାଳର କୁଟିଳ ଗତିରେ ମୁକୁନ୍ଦ ଦେବଙ୍କ ପରେ ଖୋର୍ଦ୍ଧା, ଘୁମୁସର, ମୟୂରଭଞ୍ଜ ଓ ସମ୍ବଲପୁରରେ ରାଜନ୍ୟବର୍ଗଙ୍କ ମଧ୍ୟରେ ଭାଗ ଭାଗ ହୋଇଗଲା, ମରହଟ୍ଟା ବା ମୋଗଲ ଶକ୍ତି ତା'ର ଏକାଗ୍ରତା ରକ୍ଷା ଦିଗରେ ଆଉ ସମର୍ଥ ହୋଇ ପାରି ନଥିଲା । ବ୍ରିଟିଶ ଆଧିପତ୍ୟ ବିସ୍ତାର ପରେ ୧୮୦୪ ମସିହା ବେଳକୁ ଉତ୍କଳଭୂମି ବହୁଧା ଖଣ୍ଡ ବିଖଣ୍ଡିତ ହୋଇ ପଡ଼ିଲା ଏବଂ ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଲୋପ ପାଇବାକୁ ବସିଲା । କିନ୍ତୁ ଠିକ୍ ସେତିକିବେଳେ ଓଡ଼ିଆ ଭାଷୀ ଅଞ୍ଚଳର ଏକତ୍ରିକରଣ ଲାଗି ଦୁର୍ବାର ଅଭିଯାନ ବି ଆରମ୍ଭ ହେଲା । ଖୋର୍ଦ୍ଧା ରାଜାଙ୍କ ସେନାପତି ବକ୍ସି ଜଗବନ୍ଧୁଙ୍କଠାରୁ ଆରମ୍ଭ କରି ଘୁମୁସର ପ୍ରଜା ଆନ୍ଦୋଳନର କର୍ଣ୍ଣଧାର ଦୋହରା ବିଶୋୟୀ ଓ ଚକରା ବିଶୋୟୀ, କଳାହାଣ୍ଡିର କନ୍ଧ ସର୍ଦ୍ଦାର ରେଣ୍ଡ ମାଝି, ସମ୍ବଲପୁରର ବିପ୍ଳବୀ ବୀର ସୁରେନ୍ଦ୍ର ସାଏ ଓ କେନ୍ଦୁଝର ପ୍ରଜା ଆନ୍ଦୋଳନର ସଙ୍ଗଠକ ଧରଣୀଧର ଭୂୟାଁ ପ୍ରମୁଖଙ୍କ ପ୍ରଗାଢ଼ ଉଦ୍ୟମ ଫଳରେ ବିପ୍ଳବାଗ୍ନି ପ୍ରଜ୍ଜ୍ୱଳିତ ରହିଥିଲା ଏବଂ ୧୮୬୬ର ନ'ଅଙ୍କ ଦୁର୍ଭିକ୍ଷ ପରେ ତାହା ନିର୍ଦ୍ଦିଷ୍ଟ ରୂପ ନେବାକୁ ଆରମ୍ଭ କଲା । ଲକ୍ଷାଧିକ ଓଡ଼ିଆଙ୍କ ଅଭିଳାଷକୁ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ନିକଟରେ ପେଶ୍ କରିବା ଦିଗରେ ଅଗ୍ରଣୀ ଭୂମିକା ନେଲେ ବାଲେଶ୍ୱର ରାଜା ବୈକୁଣ୍ଠ ନାଥ ଦେ । କଲିକତାରୁ ଫେରି ମଧୁସୂଦନ ଦାସ ଲିଙ୍ଗୀପୁର ଜମିଦାର ଚୌଧୁରୀ କାଶୀନାଥ ଦାସ ଓ ଗୌରୀ ଶଙ୍କର ରାୟଙ୍କୁ ନେଇ ୧୮୮୨ ମସିହାରେ ଏକ 'ଉତ୍କଳ ସଭା' ଗଠନ କରି ବାରମ୍ବାର ସ୍ମାରକ ପତ୍ର ପ୍ରଦାନ ପୂର୍ବକ ଓଡ଼ିଆମାନଙ୍କର ଦାବୀ ଉପସ୍ଥାପନ କରିଥିଲେ । ୧୯୦୨ରେ ରମ୍ଭା ସମ୍ମିଳନୀ ଓ ୧୯୦୩ରେ ଗଞ୍ଜାମ ସମ୍ମିଳନୀ ଆହୂତ ହେବା ପରେ ସେ ବର୍ଷ ଡିସେମ୍ବର ମାସରେ ଗଠିତ ହୋଇଥିଲା ବିଖ୍ୟାତ 'ଉତ୍କଳ ସମ୍ମିଳନୀ' ଯାହା ମାଧ୍ୟମରେ ଏ ଆନ୍ଦୋଳନ ଅଧିକ ଶକ୍ତିଶାଳୀ ହୋଇ ପାରିଥିଲା ।

ଏହି ପରିପ୍ରେକ୍ଷୀରେ ରାଜନୈତିକ ସଙ୍ଗଠନ ସାଙ୍ଗକୁ ସାହିତ୍ୟିକ ପ୍ରେରଣା ତଥା ମସୀ–ସଂଗ୍ରାମର ଆବଶ୍ୟକତା ଉପଲବ୍ଧି କରି ସରସ୍ୱତୀ ଫକୀର ମୋହନ ସେନାପତି 'ସମ୍ବାଦ ବାହିକା' ଓ କର୍ମବୀର ଗୌରୀ ଶଙ୍କର 'ଉତ୍କଳ ଦୀପିକା' ପ୍ରକାଶ କରିଥିଲେ ଏବଂ ପରେ ୧୯୧୯ରେ ନିରଞ୍ଜନ ପଟ୍ଟନାୟକ ଓ ଚମ୍ପାଣି ପ୍ରଧାନଙ୍କ ଉଦ୍ୟମରେ The Oriya Movement ନାମକ ଏକ ପୁସ୍ତକ ମଧ୍ୟ ପ୍ରକାଶିତ ହୋଇଥିଲା । ସେ ସମୟରେ ଶଶି ଭୂଷଣ ନିଜର କର୍ମକ୍ଷେତ୍ର କଲିକତା ତ୍ୟାଗ କରି ଗଞ୍ଜାମକୁ ଫେରିଥିଲେ ଏବଂ ଗଞ୍ଜାମରୁ ଗୋଟିଏ ଓଡ଼ିଆ ପତ୍ରିକା ପ୍ରକାଶ ନପାଇଲେ ଗଞ୍ଜାମ ବାସୀଙ୍କ ମଧ୍ୟରେ ଜାତୀୟତାବୋଧର ଉଦ୍ରେକ ହୋଇ ପାରିବ ନାହିଁ ବୋଲି ଅନୁଭବ କରି ଏ ସମ୍ପର୍କରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ଗଞ୍ଜାମର ଶ୍ରୀବତ୍ସ ପଣ୍ଡା ପ୍ରମୁଖଙ୍କ ସହ ଆଲୋଚନା କଲାପରେ ୧୯୧୩ ମସିହା ମେଷ ସଂକ୍ରାନ୍ତି (ଏପ୍ରିଲ୍ ୧୩) ଠାରୁ ସାପ୍ତାହିକ 'ଆଶା' ବ୍ରହ୍ମପୁରରୁ ନିଜ ସମ୍ପାଦନାରେ ପ୍ରକାଶ କରିଥିଲେ । ପ୍ରଥମାବସ୍ଥାରେ ସେ ନିଜେ ହିଁ ଏହି ପତ୍ରିକାଟି କମ୍ପୋଜ କରୁଥିଲେ ଏବଂ ପରେ ବିଭିନ୍ନ ଜାତୀୟପ୍ରେମୀ ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟରେ ଏହା ପ୍ରସାର ଲାଭ କରି ୧୯୨୮ ମସିହା ଏପ୍ରିଲ୍ ୧୪ ବେଳକୁ ଦୈନିକ ପତ୍ର ରୂପେ ଆତ୍ମପ୍ରକାଶ କରିବାର ସୌଭାଗ୍ୟ ଅର୍ଜନ କରି ପାରିଲା । ଘୋର ଆର୍ଥିକ ଦୁସ୍ଥିତି ମଧ୍ୟରେ ଓଡ଼ିଶା ଭଳି ଏକ ଅନଗ୍ରସର ରାଜ୍ୟରେ ସେତେବେଳେ ଗୋଟିଏ ଦୈନିକ ପତ୍ରିକା ପ୍ରକାଶ ପାଇବା ଯେଉଁମାନେ ସ୍ୱପ୍ନରେ ସୁଦ୍ଧା ବିଶ୍ୱାସ କରିପାରୁ ନଥିଲେ, ଦୈନିକ 'ଆଶା'ର ସାଫଲ୍ୟରେ ସେମାନେ ବିସ୍ମିତ ହୋଇ ପଡ଼ିଥିଲେ । 'ଆଶା' ବେଳୁ ବେଳ ଅଧିକ ଲୋକପ୍ରିୟ ହୋଇ ଉଠିଥିଲା ଏବଂ ଓଡ଼ିଆ ଚେତନା ଜାଗ୍ରତ କରିବା ଦିଗରେ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲା । କହିବା ବାହୁଲ୍ୟ ଯେ ଏହା ଫଳରେ ଦକ୍ଷିଣ ଓଡ଼ିଶାରୁ କ୍ରମଶଃ ଅଣଓଡ଼ିଆଙ୍କ ପ୍ରଭାବ ବହୁ ମାତ୍ରାରେ କମି ଯାଇଥିଲା । ଶଶିଭୂଷଣ ନିଜର ବ୍ୟକ୍ତିତ୍ୱ ବଳରେ ୧୯୨୦ ମସିହାରେ ମାଡ୍ରାସ ସରକାରଙ୍କ କାଉନ୍‌ସିଲ୍‌କୁ ଜଣେ ସଭ୍ୟ ଭାବରେ ନିର୍ବାଚିତ ହୋଇ ପାରିଥିଲେ ଏବଂ ଗଞ୍ଜାମବାସୀ ଓଡ଼ିଆମାନଙ୍କର ଅଭାବ ଅସୁବିଧା ଉପସ୍ଥାପନ କରିବା ଦିଗରେ ସଫଳ ଉଦ୍ୟମ କରିଥିଲେ । ସେ ସମୟରେ ଲବଣ ସତ୍ୟାଗ୍ରହରେ ଅଂଶଗ୍ରହଣ କରି ତାଙ୍କୁ କାରାବରଣ ମଧ୍ୟ କରିବାକୁ ପଡ଼ିଥିଲା । ଓଡ଼ିଶା ସହିତ ଗଞ୍ଜାମର ସମ୍ମିଶ୍ରଣ ଓ ଓଡ଼ିଆ ଭାଷାର ଉନ୍ନତି ସାଧନ–ଏହି ଯୁଗ୍ମ ଲକ୍ଷ୍ୟ ହାସଲ ନିମନ୍ତେ ସେ ସମସ୍ତ ପ୍ରକାର ଆର୍ଥିକ, କାୟିକ ଓ ମାନସିକ ତ୍ୟାଗ ସ୍ୱୀକାର କରିବାକୁ ଆଦୌ କୁଣ୍ଠିତ ନଥିଲେ ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ 'ଆଶା' ପତ୍ରିକା ସହିତ ସେତେବେଳେ ଯେଉଁମାନେ ଘନିଷ୍ଠ ଭାବରେ ସଂଶ୍ଲିଷ୍ଟ ଥିଲେ ସେମାନଙ୍କ ମଧ୍ୟରେ ବ୍ୟାସକବି ଫକୀର ମୋହନ, ଭାଷାତତ୍ତ୍ୱବିଦ୍ ଗୋପାଳ ଚନ୍ଦ୍ର ପ୍ରହରାଜ, ପ୍ରତ୍ନତତ୍ତ୍ୱବିତ ଅନନ୍ତ ମିଶ୍ର, ଡାକ୍ତର ରାଧାଚରଣ ପଣ୍ଡା, ନିରଞ୍ଜନ ପଟ୍ଟନାୟକ, ରାମଚନ୍ଦ୍ର ଆଚାର୍ଯ୍ୟ, ଲକ୍ଷ୍ମୀ ନାରାୟଣ ସାହୁ, ଲକ୍ଷ୍ମୀଧର ମହାନ୍ତି, ବ୍ରଜବନ୍ଧୁ ଦାସ, ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ ଓ ସତ୍ୟବାଦୀ ବନବିଦ୍ୟାଳୟର ସାହିତ୍ୟିକ ଗୋଷ୍ଠୀଙ୍କ ଅବଦାନ ଏକାନ୍ତ ସ୍ମରଣୀୟ । ପୁନଶ୍ଚ, ଯେଉଁ କୃତୀ ସାହିତ୍ୟ ସାଧକବୃନ୍ଦ ଶଶି ବାବୁଙ୍କ ସହ 'ଆଶା' ପତ୍ରିକାରେ ସମ୍ପୃକ୍ତ ରହିବା ଫଳରେ ପରବର୍ତ୍ତୀ ଜୀବନରେ ସାମ୍ବାଦିକତା କ୍ଷେତ୍ରରେ ସୁନାମ ଓ ସାଫଲ୍ୟର ଅଧିକାରୀ ହୋଇ ପାରିଥିଲେ ସେମାନଙ୍କ ମଧ୍ୟରେ 'ନିର୍ଘଣ୍ଟ'ର ପ୍ରତିଷ୍ଠାତା ସମ୍ପାଦକ ଗୋଦାବରୀଶ ମହାପାତ୍ର, 'ନବଜୀବନ'ର ପ୍ରତିଷ୍ଠାତା ସମ୍ପାଦକ ଚିନ୍ତାମଣି ମିଶ୍ର ଏବଂ ସ୍ୱନାମଧନ୍ୟ ସମ୍ପାଦକ ଶ୍ରୀହର୍ଷ ମିଶ୍ରଙ୍କ ନାମ ନିତାନ୍ତ ଉଲ୍ଲେଖ ଯୋଗ୍ୟ ।

କିନ୍ତୁ ଏହା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଯେ ଆଶା ପତ୍ରିକାର ଉଲ୍ଲେଖନୀୟ ପ୍ରସାର ଓ ପ୍ରଭାବ ସତ୍ତ୍ୱେ ଶଶିବାବୁ ଆତ୍ମ ସନ୍ତୋଷ

ଲାଭ କରି ନଥିଲେ । ସେ ହୃଦୟଙ୍ଗମ କରିଥିଲେ ଯେ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା ଅନ୍ୟାନ୍ୟ ଭାଷାଭାଷୀଙ୍କ ଆଗରେ ଯଥାର୍ଥ ରୂପେ ପରିବେଷଣ କରା ନଗଲେ ଓଡ଼ିଆ ଜାତିର ସର୍ବାଙ୍ଗୀନ ଉନ୍ନତି ଆଦୌ ସମ୍ଭବ ନୁହେଁ । ଏହି କାରଣରୁ, ଆର୍ଥିକ ଅଭାବ ପ୍ରତି ଭ୍ରୁକ୍ଷେପ ନକରି, ୧୯୩୩ ମସିହା ମଇ ୬ ତାରିଖରୁ 'ନିଉ ଓଡ଼ିଶା' ନାମକ ଏକ ଇଂରାଜୀ ଦୈନିକ ପତ୍ରିକା ପ୍ରକାଶ କରି ସେ ୧୯୩୯ ମସିହା ପର୍ଯ୍ୟନ୍ତ ବହୁ କଷ୍ଟରେ ଦୁଇଟିଯାକ ଦୈନିକ ପତ୍ରିକାର ସମସ୍ତ ଦାୟିତ୍ୱ ବହନ କରିଥିଲେ ।

କେବଳ ପତ୍ରିକା ସମ୍ପାଦକ ବା ଲବଣ ସତ୍ୟାଗ୍ରହୀ ରୂପେ ସେ ଓଡ଼ିଆ ଆନ୍ଦୋଳନର କର୍ଣ୍ଣଧାର ଥିଲେ ସେତିକି ନୁହେଁ, ଓଡ଼ିଆ ଜାତିର ସୁନାମ ବଜାୟ ରଖିବା ଉଦ୍ଦେଶ୍ୟରେ ୧୯୦୬ ମସିହାରେ ୨୦ ବର୍ଷ ବୟସରେ ଶଶିଭୂଷଣ ମଧୁବାବୁଙ୍କ 'ଉତ୍କଳ ଟ୍ୟାନେରୀ' ଆଦର୍ଶରେ ବମ୍ବେଠାରେ 'ରଥ ଆଣ୍ଡ କୋଃ' ନାମକ ଏକ ଚମଡ଼ା କାରଖାନା ଆରମ୍ଭ କରି ସମଗ୍ର ବମ୍ବେ ମହାନଗରୀରେ ନିଜ କମ୍ପାନୀର ଉତ୍କୃଷ୍ଟ ଜୋତା ପାଇଁ ବେଶ୍ ସୁଖ୍ୟାତି ଅର୍ଜନ କରିଥିଲେ । ଏକ ଘରୋଇ ସଂସ୍ଥାର ପରିଚାଳକ ଭାବରେ କଲିକତାଠାରେ ଅବସ୍ଥାନ କାଳରେ ଶଶିବାବୁ ସେଠାକାର ଓଡ଼ିଆମାନଙ୍କୁ ସଙ୍ଗଠିତ କରିବା ଦିଗରେ ପ୍ରମୁଖ ଭୂମିକା ନେଇଥିଲେ । ନିଜର ଖ୍ୟାତି ଓ କ୍ଷେତ୍ରକୁ ସେ ସଂକୀର୍ଣ୍ଣ ଓ ସଙ୍କୁଚିତ ମନେକରି ହିଁ ଜନସେବା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ସେ ନିଜେ ଲେଖିଥିଲେ—"ପ୍ରଭୁ! ଜଗତ ମୋତେ ଲୋଭନୀୟ ଲାଗୁନାହିଁ । କର୍ମକ୍ଷେତ୍ର ଯାହା ଅଛି, ତାହା ସଙ୍କୁଚିତ ଓ ସଂକୀର୍ଣ୍ଣ ବୋଧ ହେଉଅଛି । ମୋତେ ଅବସର ଦିଅ ପ୍ରଭୁ! ଦେଶସେବା ଓ ଲୋକ ସେବା କରିବି । ଭୋଗ ରାଗ ମୋର ଲୋଡ଼ା ନାହିଁ । ମୋର ଲୋଡ଼ା ସତ୍ୟ ଓ ସେବା"।

ସତ୍ୟପ୍ରିୟ ଓ ସେବାବ୍ରତୀ ଶଶିଭୂଷଣ ଈଶ୍ୱର ବିଶ୍ୱାସୀ ଓ ଧର୍ମ ପରାୟଣ ଥିଲେ ହେଁ ହିନ୍ଦୁ ଧର୍ମର ବିଭିନ୍ନ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ପସନ୍ଦ କରୁ ନଥିଲେ । ଏହି କାରଣରୁ ପତ୍ନୀ ଅନ୍ନପୂର୍ଣ୍ଣାଙ୍କ ସହ ଅନେକବାର ମନାନ୍ତର ବି ଘଟୁଥିଲା । ସେ ଥିଲେ ନିଛକ ମାନବବାଦୀ, ଜନସେବୀ ଓ ଜନ୍ମଭୂମିର ସାଧକ । ତାଙ୍କ ପାଇଁ ନରସେବା ଥିଲା ନାରାୟଣ ସେବା, ଜନ୍ମଭୂମିର ସେବା ଥିଲା ଜନନୀର ସେବା । ୧୯୩୬ ଏପ୍ରିଲ୍ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ପରେ ବି ସେ ସମ୍ପୂର୍ଣ୍ଣ ଆତ୍ମସନ୍ତୋଷ ପାଇ ପାରି ନଥିଲେ । ସେହି ଅବସରରେ 'ଆଶା'ରେ ନିଜର ମନୋଭାବ ବ୍ୟକ୍ତ କରିବାକୁ ଯାଇ ସେ ଲେଖିଥିଲେ—"ଆଜି ୧୯୩୬ରେ ଯେଉଁ ପ୍ରଦେଶ ଗଠନ ହେଲା, ସେଥିରେ ଦକ୍ଷିଣର ପାରଳାରୁ ଖଣ୍ଡେ, ଟିକିଲି, ଜଳନ୍ତର, ବୁଢ଼ାରସିଂ ଉଦ୍ୟାନ, ଇଚ୍ଛାପୁର ଇତ୍ୟାଦି ଖଣ୍ଡର ଓଡ଼ିଆମାନେ ରହିଗଲେ । ସେମାନଙ୍କୁ କେବେ ପୁଣି ଓଡ଼ିଶାରେ ସ୍ଥାନ ମିଳିବ କିଏ କହିପାରେ ? କିନ୍ତୁ ଆଜି ସେ ସବୁ ଅଞ୍ଚଳର ଓଡ଼ିଆମାନଙ୍କୁ କହି ରଖୁଛୁ, ନିରାଶ ହୁଅ ନାହିଁ । ଓଡ଼ିଆ ଭାଷାକୁ ଜୀବିତ ରଖିପାରିଥିଲେ, ଓଡ଼ିଶାରେ ନମିଶିଲେ ମଧ୍ୟ କ୍ଷତି ନାହିଁ ।"

ଓଡ଼ିଆ ଆନ୍ଦୋଳନର ଏହି ପ୍ରମୁଖ ସାରଥି ଓଡ଼ିଆ ସୁରକ୍ଷା ଓ ବିକାଶ ପ୍ରତି ଯେଉଁଭଳି ଉଦ୍‌ଗ୍ରୀବ ଓ ବ୍ୟାକୁଳିତ ଥିଲେ, ଓଡ଼ିଶା ତଥା ପ୍ରବାସୀ ଓଡ଼ିଆମାନଙ୍କ ମନରେ ଆଜି ସେତିକି ସ୍ପୃହା ଓ ଆଗ୍ରହ ଥିଲେ ଓଡ଼ିଆ ଭାଷା ଆଜି ଯେଉଁଠି ରହିଛି, ସେହିଠାରେ ରହି ଥାଆନ୍ତା କି ? ଏ ପ୍ରଶ୍ନ ପ୍ରତ୍ୟେକ ଓଡ଼ିଆ ଭାଷା ଭାଷୀ ଗଭୀର ମନଯୋଗ ସହକାରେ ବିଚାର କରିବା ଲାଗି ବର୍ତ୍ତମାନ ହିଁ ପ୍ରକୃଷ୍ଟ ସମୟ ଭଳି ମନେହୁଏ । ଅନ୍ୟଥା, ଅନ୍ୟାନ୍ୟ ଭାଷାର ଉତ୍ତରୋତ୍ତର ଅଭିବୃଦ୍ଧି ଘଟୁଥିଲା ବେଳେ ଓଡ଼ିଆ ଭାଷା ଓଡ଼ିଶାର ଗୋଟିଏ କୋଣରେ ପଡ଼ି ରହିଥିବ ।



ଖଣ୍ଡଗିରିଠାରେ ମନ୍ତ୍ରୀ ଶ୍ରୀ ଅନଙ୍ଗ ଉଦୟ ସିଂହଦେଓଙ୍କ ଦ୍ୱାରା 'ପାନ୍ଥିକା'ର ଭୂମିପୂଜା ସମାହିତ ।

# ସ୍ମରଣୀୟ ପ୍ରତିଭା – ଶଶିଭୂଷଣ

• ପଣ୍ଡିତ ଚନ୍ଦ୍ରଶେଖର ମହାପାତ୍ର

ପ୍ରତି ବର୍ଷର ପ୍ରଥମ ଦିନ ଜାନୁଆରୀ ମାସର ପହିଲା ତାରିଖ ଏକ ସ୍ମରଣୀୟ ଦିବସ। ଶହେ ଆଠ ବର୍ଷ ପୂର୍ବେ ୦୧-୧-୧୮୮୫ରେ ଉତ୍କଳ ପ୍ରଦେଶ ଆନ୍ଦୋଳନର ପୁରୋଧା, ଓଡ଼ିଶାରେ ସାମ୍ବାଦିକତାର ପ୍ରଥମ ପ୍ରବର୍ତ୍ତକ ଦୈନିକ ଆଶା ଓ ନିଉ ଓଡ଼ିଶାର ସମ୍ପାଦକ ଶଶିଭୂଷଣ ରଥ ଜନ୍ମ ଲାଭ କରିଥିଲେ। ଆଜି ତାଙ୍କର ଅଷ୍ଟୋତ୍ତର ଶତବାର୍ଷିକ। ଜନ୍ମ ଜୟନ୍ତୀ।

ଉନବିଂଶ ଶତାବ୍ଦୀର ଆରମ୍ଭରେ ପ୍ରାକୃତିକ ଉତ୍କଳରେ ଓଡ଼ିଆ ଜାତିର ସମସ୍ୟା କିପରି ଦୟନୀୟ ଥିଲା, ତାହା ସେ କାଳର ଜୀବିତ ଥିବା ଅନୁଭୂତି ସଂପନ୍ନ ଲୋକେ ନିଶ୍ଚିତ ଭାବେ ହୃଦୟଙ୍ଗମ କରିବେ। ସେତେବେଳେ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଥିଲା। ଗଞ୍ଜାମରେ ଥିବା ସରକାରୀ ଉଚ୍ଚ ପଦସ୍ଥ କର୍ମଚାରୀମାନଙ୍କ ମଧ୍ୟରେ ଜଣେ ମଧ୍ୟ ଓଡ଼ିଆ ନଥିଲେ। ଫଳରେ ଏ ଜାତିର ଆବେଦନ ନିବେଦନ, ଆପତ୍ତି ଅଭିଯୋଗ ପ୍ରତି କେହି କର୍ଣ୍ଣପାତ କରୁ ନଥିଲେ। ଏପରିକି ନିଜ ଭାଷାରେ କଥାଭାଷା ହେବାର ସାହାସ ମଧ୍ୟ ଓଡ଼ିଆ ମାନଙ୍କର ନଥିଲା।

ଏପରି ଦୟନୀୟ ଅବସ୍ଥାରୁ ଏ ଜାତିକୁ ଉନ୍ନତ କରିବା ଦିଗରେ ଯେଉଁ ଓଡ଼ିଆ ବୁଦ୍ଧିଜୀବୀମାନେ ଆପ୍ରାଣ ଉଦ୍ୟମ କରିଥିଲେ ସେମାନଙ୍କ ମଧ୍ୟରୁ ସ୍ୱର୍ଗତ ଶଶିଭୂଷଣ ରଥ ଅନ୍ୟତମ।

ଶଶିଭୂଷଣ ଗଞ୍ଜାମର ଏକ ଛୋଟ ସହର ସୋରଡ଼ାରେ, ମହାପାତ୍ର ବଂଶରେ ଜନ୍ମ ହୋଇ ଭୂମ୍ପୁରର ମଦ୍ଧୁଲିଆ ଗ୍ରାମର ଦିଗପତି ରଥଙ୍କୁ ପୋଷ୍ୟ ପୁତ୍ର ରୂପେ ପ୍ରଦତ୍ତ ହୋଇଥିଲେ। ଫଳରେ ତାଙ୍କର ପ୍ରାଥମିକ ଶିକ୍ଷା ଭୂମ୍ପୁର ମଦ୍ଧୁଲିଆରେ ଓ ମାଧ୍ୟମିକ ତଥା ଉଚ୍ଚଶିକ୍ଷା ମାତୃଭୂମି ସୋରଡ଼ାରେ ସମ୍ପନ୍ନ ହୋଇଥିଲା। ମିସନାରୀ ଇଂରେଜୀ ବିଦ୍ୟାଳୟରେ ଏବେ ଯାହା ଶଶିଭୂଷଣ ଉଚ୍ଚ ଇଂରାଜୀ ବିଦ୍ୟାଳୟ ନାମରେ ନାମିତ ହୋଇଛି।

ଶଶିଭୂଷଣ ଆଠ ବର୍ଷରେ ବ୍ରତ ହେବାପରେ ଉକ୍ତ ବିଦ୍ୟାଳୟର ଛାତ୍ର ଥିବା ଅବସ୍ଥାରେ ବଡ଼ବଡ଼ ମଦ୍ଧୁଲିଆରେ ବିବାହ କରିଥିଲେ। କିନ୍ତୁ ବିଦ୍ୟାବେଷ ଶିକ୍ଷା ପାଇଁ ପିତା ଦିଗପତି ରଥଙ୍କ ଅନିଚ୍ଛା ଜାଣି ସେ ପାରଳା ମହାବିଦ୍ୟାଳୟରେ ପ୍ରବେଶ କଲେ। ପାରଳା ମହାବିଦ୍ୟାଳୟରେ ଛାତ୍ର ମାନଙ୍କ ନେତୃତ୍ୱ ନେବା ଯୋଗୁଁ ଅଧ୍ୟକ୍ଷଙ୍କ ଅସନ୍ତୋଷ ଏବଂ ସମକଙ୍କ ଅଭାବରେ ଦେଶତ୍ୟାଗୀ ହେଲେ।

ପାରଳାଖେମୁଣ୍ଡି ପରିତ୍ୟାଗ କରି ଶଶିଭୂଷଣ ବସେ ବଜାରରେ [illegible] ବୁଲୁଥିବା ବେଳେ ଜଣେ ମହିଷ୍ଣୁରୀ ମହିଳାଙ୍କ [illegible] ଘରେ ଅବସ୍ଥାନ କଲେ ଓ ତାଙ୍କ ଘରରେ [illegible] ଜୋତା କାରଖାନାରେ କର୍ମ ସଂସ୍ଥାନର ବ୍ୟବସ୍ଥା ହୋଇ [illegible]। କୌଣସି ଏକ ବିଶେଷ କାରଣରେ କାରଖାନା ମାଲିକଙ୍କ ସହିତ ମନାନ୍ତର ହେତୁ ସେ ଗୁଡ଼ିକି ପରିତ୍ୟାଗ କରି Ruth & Co. (ରଥ୍ ଏଣ୍ଡ୍ କୋ) ନାମରେ ଗୋଟିଏ ଜୋତା ଦୋକାନ ପ୍ରତିଷ୍ଠା କଲେ। ସେ ଅବସରରେ ଓଡ଼ିଶାର ଅବିସମ୍ବାଦିତ ନେତା ତଥା ଓକିଲ ମଧୁସୂଦନ ଦାସଙ୍କ ସହିତ ବମ୍ବେଠାରେ ତାଙ୍କର ସାକ୍ଷାତ ହୋଇଥିଲା।

କଟକରେ ଉତ୍କଳ ଟ୍ୟାନେରୀ ନାମରେ ମଧୁ ବାବୁଙ୍କର ବିଖ୍ୟାତ ଚମଡ଼ା କାରଖାନା ଥିଲା। ମଧୁ ବାବୁଙ୍କ ନିମନ୍ତ୍ରଣ କ୍ରମେ ଶଶିବାବୁ ତାଂର ପରିଚାଳକ ରୂପେ କଟକରେ ଅବସ୍ଥାନ କଲେ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନହେଲେ ଓଡ଼ିଆ ଜାତିର ଉନ୍ନତି ସମ୍ଭବ ନୁହେଁ।ଏ ଭାବନା ତାଙ୍କ ହୃଦୟରେ ବଦ୍ଧମୂଳ ହୋଇଥିଲା। ଏଣୁ ସେ ଦେଶସେବା ଉଦ୍ଦେଶ୍ୟରେ କଟକ ଛାଡ଼ି ୧୯୦୨ ସାଲରେ ବ୍ରହ୍ମପୁରରେ ପଦାର୍ପଣ କଲେ।

ସେତେବେଳେ ଓଡ଼ିଶାରେ ଗୋଟିଏ ମଧ୍ୟ ଖବର କାଗଜ ନଥିଲା। ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଚେଷ୍ଟାରେ ଅନିୟମିତ ଭାବେ ପାକ୍ଷିକ "ଗୁଣ ଦର୍ପଣ" ବଡ଼ଖେମଣ୍ଡୀ ରାଜବାଟୀରୁ ପ୍ରକାଶ ପାଉଥିଲା। ରଥେ ପତ୍ରିକା ପ୍ରକାଶନରେ ତାଙ୍କର ଆଗ୍ରହ ପ୍ରଥମେ ନୀଳମଣି ବିଦ୍ୟାରତ୍ନଙ୍କୁ କହିଥିଲେ। ବିଦ୍ୟାରତ୍ନଙ୍କ ପ୍ରଚେଷ୍ଟାରେ ବଡ଼ଖେମଣ୍ଡୀ ରାଜା କୃପାମୟ ଦେବ ସାହାଯ୍ୟ ସ୍ୱରୂପ ତାଙ୍କୁ ପାଞ୍ଚଶହ ଟଙ୍କା ଦେଇଥିଲେ। ତାହାଥିଲା ଦେଶ ଓ ଜାତି ପ୍ରାଣ ଶଶିଭୂଷଣ ରଥଙ୍କର, ଜାତୀୟ ଉନ୍ନତି କାର୍ଯ୍ୟରେ ପ୍ରଥମ ପାଥେୟ। ଫଳରେ ୧୩-୪-୧୯୦୩ ବିଷୁବ ସଂକ୍ରାନ୍ତି ଦିନ ସାପ୍ତାହିକ ଆଶା ପ୍ରଥମେ ପ୍ରକାଶ ପାଇଲା ଗଞ୍ଜାମର ପ୍ରଧାନ ସହର ବ୍ରହ୍ମପୁର ସହରରେ।

ଶଶିଭୂଷଣ ରଥେ ସେତେବେଳକୁ ଏକମାତ୍ର କନ୍ୟାର ଜନକ ହୋଇଥିଲେ। ଆଶା ନାମ୍ନି ସେ କନ୍ୟାର ନାମରେ ସାପ୍ତାହିକର ନାମ ରଖା ଯାଇଥିଲା "ଆଶା"।

ସାପ୍ତାହିକ ଆଶାର ପ୍ରକାଶନ ପରେ ଗଞ୍ଜାମରେ ଓଡ଼ିଆମାନଙ୍କ ଅବସ୍ଥା ଉନ୍ନତ ହେଲା। ସରକାରୀ ସ୍ତରରେ ଓଡ଼ିଆମାନେ ଶାସକଙ୍କ ଠାରୁ ଆପତ୍ତି ଅଭିଯୋଗରେ ସୁବିଚାର ଲାଭକଲେ। ଗୋରା ସରକାରଙ୍କୁ ଅବିହିତ କରିବାପାଇଁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦାବୀକୁ ବଳବତ୍ତର କରିବା ଉଦ୍ଦେଶ୍ୟରେ ଓ ଜାତୀୟ ଉନ୍ନତି କାମନାରେ ୧୯୨୮ ଏପ୍ରିଲ୍ ୧୩ ତାରିଖରେ ଶଶିବାବୁ ଦୈନିକ ଆଶା ପ୍ରକାଶ କଲେ ଏବଂ ପରେ ଦେଶବାସୀଙ୍କ ପ୍ରେରଣାରେ ୧୯୩୪ ସାଲ ମେ ୫ ତାରିଖରେ ନିଉ ଓଡ଼ିଶା ନାମକ ଇଂରେଜୀ ଦୈନିକ ଖବର କାଗଜ ତାଙ୍କ ସମ୍ପାଦନତ୍ୱରେ ପ୍ରକାଶ ପାଇଲା। ଏ କାର୍ଯ୍ୟରେ ଦେଶବାସୀ ୬ ହଜାର ଟଙ୍କାର ଏକ ଥଳୀ ଉପହାର ଦେଇ ରଥଙ୍କୁ ସମ୍ବର୍ଦ୍ଧିତ କରିଥିଲେ।

୧୯୧୩ ...ାରୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଘୋଷଣା ୧-୪-୧୯୩୬ ପର୍ଯ୍ୟନ୍ତ ପ୍ରଦେଶ ଗଠନ ପାଇଁ ଯେଉଁ ସମସ୍ତ କାର୍ଯ୍ୟ ହୋଇଥିଲା, ସେ ସବୁ କାର୍ଯ୍ୟରେ ସ୍ୱର୍ଗତ ରଥେ ଅଗ୍ରଣୀ ଥିଲେ । ସାପ୍ତାହିକ ଆଶା, ଦୈନିକ ଆଶା, ନିଉ ଓଡ଼ିଶାର ସାହାଯ୍ୟରେ ସ୍ୱତନ୍ତ୍ର ପ୍ରଦେଶର ଆବଶ୍ୟକତା ନିମନ୍ତେ ଆବେଦନ, ମାନ୍ଦ୍ରାଜ ବ୍ୟବସ୍ଥା ସଭାର ସଭ୍ୟ ଭାବେ ପ୍ରଦେଶ ଗଠନ ଦାବୀକୁ ତ୍ୱରାନ୍ୱିତ କରିବା, ଓଡ଼ନେଲ କମିଟି, ସାଇମେନ କମିସନ୍, ଡ଼ପପିଲିପ୍ ନିକଟରେ ଓଡ଼ିଶା ପ୍ରଦେଶ ଗଠନ ସପକ୍ଷରେ ସାକ୍ଷ୍ୟ ପ୍ରଦାନ ଇତ୍ୟାଦି କାର୍ଯ୍ୟରେ ଶଶି ରଥେ ଅଗ୍ରଣୀ ଥିଲେ । ଫଳରେ ଓଡ଼ିଶା ପ୍ରଦେଶ ଗଠନ କାର୍ଯ୍ୟ ତ୍ୱରାନ୍ୱିତ ହୋଇ ପାରି ଥିଲା । ଓଡ଼ିଶା ପ୍ରଦେଶ ଘୋଷଣା ପୂର୍ବରୁ ନିଉ ଓଡ଼ିଶାର ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ ପାଇଥିଲା ଓ ତା'ପରେ ତାଙ୍କର ଆପ୍ରାଣ ଚେଷ୍ଟା ଫଳବତୀ ହୋଇଛି ବୋଲି ସେ ଆଶ୍ୱାସନା ଲାଭ କରି ଥିଲେ ।

ଶଶି ବାବୁଙ୍କର ଆଧ୍ୟାତ୍ମିକତା, ସାହସିକତା, ଦେଶ ଓ ଜାତି ପ୍ରୀତି ଉତ୍କଳ ଭାଷାର ଉନ୍ନତି କାମନା ଅନନ୍ୟ ସାଧାରଣ ।

ଗଞ୍ଜାମର ଦଣ୍ଡାରି ଜାତି ପ୍ରତି ସରକାର ଜାରି କରିଥିବା ଦାଗୀ ଜାତି ଆଇନରୁ ଦଣ୍ଡାରି ଜାତିର ମୁକ୍ତି, ଯୋରଡ଼ା, ବାଙ୍କେଶ୍ୱରୀ ଓ ତାରା-ତାରେଣୀ ପୀଠରେ ଆବହମାନ କାଳରୁ ପ୍ରଚଳିତ ଛାଗବଳି ପ୍ରଥାର ଉଚ୍ଛେଦ ରେଙ୍ଗୁନରେ ଥିବା ଓଡ଼ିଆ ଶ୍ରମିକଙ୍କ ସମସ୍ୟାର ସମାଧାନ ଜାତି ପ୍ରୀତି, ପରୋପକାର ସାହସିକତା ଇତ୍ୟାଦି ତା'ର ପରି ସୂଚକ । ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦାନ କରି ଭାରତ ସ୍ୱାଧୀନତା ସଂଗ୍ରାମରେ ଜଣେ ଶ୍ରେଷ୍ଠ ଯୋଦ୍ଧା ରୂପେ ସେ ଜେଲ୍ ବରଣ କରିବା ଓ ସେଠାରେ ଗାନ୍ଧୀ ଭାଷାର ରଚନା, ଲବଣ ଆନ୍ଦୋଳନରେ ନେତୃତ୍ୱ ଇତ୍ୟାଦି ତାଙ୍କର ମହନୀୟ ଗୁଣାବଳୀ ଅବିସ୍ମରଣୀୟ । ୧୯୩୬ରେ ଓଡ଼ିଶା ପ୍ରଦେଶ ଗଠନ ପରେ ପ୍ରଦେଶର ରାଜଧାନୀ ପାଇଁ ସ୍ଥାନ ନିର୍ବାଚନ ସଂକ୍ରାନ୍ତରେ ରମ୍ଭା-ଲୁଣ୍ଡା ପାଇଁ ତାଙ୍କ ପ୍ରସ୍ତାବ ନିର୍ବାଚନ କମିଟିରେ ପ୍ରଥମ ସ୍ଥାନ ପାଇଥିଲେ ମଧ୍ୟ ତାହା କାର୍ଯ୍ୟକାରୀ ହୋଇ ନଥିବା ଯୋଗୁଁ ରଥବାବୁ ବହୁତ କଷ୍ଟ ଅନୁଭବ କରିଥିଲେ । ଏପରି ବହୁ ଭାବରେ ଦେଶ କାର୍ଯ୍ୟରେ ନିୟୋଜିତ ତାଙ୍କର ଜୀବନ ଦୀପ ନିର୍ବାପିତ ହୋଇଥିଲା ୧୯୪୩ ସାଲ ମାର୍ଚ୍ଚ ୨୦ ତାରିଖରେ ।

ତାଙ୍କ ମୃତ୍ୟୁ ପରେ ଦୈନିକ ଆଶା ପ୍ରକାଶନ ବନ୍ଦ ହେଲା । ୧୯୬୪ରେ ତାଙ୍କର ପ୍ରତିମୂର୍ତ୍ତୀ ବ୍ରହ୍ମପୁରର ପୁରୁଣା ବସ୍‌ଷ୍ଟାଣ୍ଡ-ବାରବର୍ ପାଖରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ସଦାଶିବ ତ୍ରିପାଠୀଙ୍କ ଦ୍ୱାରା ସ୍ଥାପିତ ହୋଇଛି ଓ ଦୀର୍ଘ ୪୦ବର୍ଷ ପରେ ୧୯୮୨ ସାଲରେ ଦେଶପ୍ରାଣ କର୍ମବୀର ବୃନ୍ଦାବନ ନାୟକଙ୍କ ଦ୍ୱାରା ଦୈନିକ ଆଶା ପୁନର୍ଜୀବନ ଲାଭ କରିଛି ।

ତାଙ୍କ ଜୀବଦ୍ଦଶାରେ-ଶଶିବାବୁ ଯେଉଁ ଔଦାର୍ଯ୍ୟ ପ୍ରଦର୍ଶନ କରିଛନ୍ତି ତାହା ଦ୍ୱରା ନିମ୍ନୋକ୍ତ ନୀତିବାକ୍ୟ ସାର୍ଥକତା ଲାଭ କରିଛି ।

"ଚମ୍ପକେଷୁ ଯଥା ଗନ୍ଧଃ କାଞ୍ଚମୁକ୍ତା ଫଳେଷୁଚ
ଯତେଷ୍ଟୁଦଣ୍ଡେ ମାଧୁର୍ଯ୍ୟ ଔଦାର୍ଯ୍ୟଂ ସହ ଜଂତଥା ।

---

**ବଡ଼ଖେମୁଣ୍ଡି ସାହି**
**ବ୍ରହ୍ମପୁର, ଗଞ୍ଜାମ ।**




*ସୂଚନା ଭବନଠାରେ ଆୟୋଜିତ 'ଶିଳ୍ପ କାରଖାନାରେ ରାସାୟନିକ ନିରାପତ୍ତା' ଶୀର୍ଷକ ଏକ ଆଲୋଚନା ଚକ୍ରରେ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲଙ୍କ ଉଦ୍‌ବୋଧନ ।*

# ଗାଁ ଗୀତ

● ରାଜୁ ବଡ଼ାଇ

ଏ ଗାଁଟିର
ଟିକି ନଈ
ଯେମିତି କି ସେମିତି,
ଅସୁଖ ତା'
ଗତି ପଥେ/
ଚିହ୍ନ କିଛି
ଛାଡ଼ି ନାହିଁ ।(୧)

କେତେ ଦିନୁ
ଗୁଲି ଗଲେଣି
ନାରଦ/ବୁଢ଼ିଆ,
ତାରା ନାନୀ ଓ
ବୁଢ଼ା ଗଉଡ଼ିଆ,
ଆଖି କିଆରୀରେ
କଣ୍ଢୁଳି ଭଳି
ଝୁଲିଟା ବୁଢ଼ା,
ସପନ ଏବେ
ଗାଁଟିକୁ ସତେ,
ପାଳ କରିଛି ତା' ।(୨)

ସଂଧ୍ୟା ତାରା
ଉଙ୍କିବା ଚା
ମନା ଏବେ......
ଆକାଶକୁ
ଶାଗୁଣର
ତାଗିଦ୍ ଯେଣୁ......
ନିତି ସଞ୍ଜେ
ସଞ୍ଜ ବତୀ/ଦୀପ
ଅକାଶକୁ ଚାହିଁ ।(୩)

ଆଦର୍ଶକୁ
ଚୋରି କରି,
ଚବିତ ଚର୍ବଣ ଆଖ୍ୟାରେ
ଭାଗବତ
ବୁଢ଼ୀଙ୍କୁ ଯେ......
ଗାଳି ଦିଆଗଲା
ନଥି ପୋଥି/
ବହି ଯେତେ
ଟିକି ନଈ ସ୍ରୁଅ ମଧ୍ୟେ
ଫିଙ୍ଗି ଦିଆଗଲା
ଅଥଚ......
ଟିକି ନଈ/
ଗୁଣୀ ହୋଇ
ସବୁ ସହି ରହିଛି ।(୪)

ବସା ବସା/
ପକ୍ଷୀର ଶାବକ,
ଉଡ଼ି ଯାଉଛି,
ଦିଗ୍‌ବଳୟେ/କାହିଁ......?
ଫେରି ନାହିଁ/
କୁନା ସ୍ରୁଅ
ଧୂଳି ଦେହ/
ଝାଡ଼ି ହେବା ପାଇଁ,
ତଥାପି......
ଟିକି ନଈ
ଯେମିତିକି ସେମିତି,
ଝଡ଼ ଝଞ୍ଜା
ତା' ପାଦକୁ
ବାନ୍ଧି ଦେବେ/
ରୋକି ନାହିଁ ।(୫)

---

ବନ କାର୍ଯ୍ୟାଳୟ,
ବଲାଙ୍ଗୀର-୭୬୭୦୦୧ ।

OGP-MP-PTS (I &PR) 52-10,000-18-1-1993





ସଚିବାଳୟଠାରେ ଅନୁଷ୍ଠିତ ଏକ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।



ସଚିବାଳୟଠାରେ ଅନୁଷ୍ଠିତ ଆଦିବାସୀ ଉପଦେଷ୍ଟା ପରିଷଦ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।

VOL. XLVIII No. 6 UTKAL PRASANGA Regd. No. 0-05/93
Licence No. C.R.N.P. 5—Licensed to post without Pre-Payment



କଟକଠାରେ ଅନୁଷ୍ଠିତ ବିଶ୍ୱ ଓଡ଼ିଆ ସମ୍ମିଳନୀକୁ ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ପ୍ରଦୀପ ଜାଳି ଉଦ୍‌ଘାଟନ କରୁଛନ୍ତି ।



ପୁରୀ ଭବନଠାରେ ଆୟୋଜିତ ଏକ ପୁଷ୍ପ ପ୍ରଦର୍ଶନୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।

PRINTED AT ORISSA GOVERNMENT PRESS

